କଟକର ରେଭେନ୍ସା କଲେଜ୍ ଓ ଶାନ୍ତିନିକେତନର ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଶିକ୍ଷା ଲାଭ କରିଥିବା ଗଗନେନ୍ଦ୍ର ନାଥ ଦାଶ (ଜନ୍ମ ୧୯୪୦) ତାଙ୍କର ବୈପ୍ଲବିକ ଦୃଷ୍ଟିକୋଣପାଇଁ ବିଭିନ୍ନ ସମୟରେ ଓଡ଼ିଶାର ଶିକ୍ଷା, ସାହିତ୍ୟ ଓ ସାଂସ୍କୃତିକ ଜଗତରେ ସୃଷ୍ଟି କରିପାରିଛନ୍ତି ଆଲୋଡନ। ଓଡ଼ିଆ ଭାଷାର ଅନୁଶୀଳନ, ଓଡ଼ିଆ ସାହିତ୍ୟ ସମାଲୋଚନା ଓ ଓଡ଼ିଶାର ସାଂସ୍କୃତିକ ଇତିହାସର ଚର୍ଚ୍ଚା - ଏ ପ୍ରତ୍ୟେକଟି କ୍ଷେତ୍ରରେ ସେ ଶୁଣିଛନ୍ତି ନବ ଦିଗନ୍ତର ଆହ୍ୱାନ ଓ ଅକୁତୋଭୟରେ ବାହାରିପଡିଛନ୍ତି ସେଇ ନବ ଦିଗନ୍ତର ସନ୍ଧାନରେ।

ଆଧୁନିକ ଭାଷାବିଜ୍ଞାନରେ ତାଲିମ୍ ନେଇ ଅର୍ଥକୁ ପରିହାର କରି ଓଡ଼ିଆ ଭାଷାର ଆଧୁନିକ ଭାଷାବିଜ୍ଞାନସମ୍ମତ ରୂପଭିତ୍ତିକ ବ୍ୟାକରଣ ରଚନା କ୍ଷେତ୍ରରେ ସେ ଅନ୍ୟତମ ଅଗ୍ରସୂରୀ । ଉଭୟ ମଧ୍ୟ-ଯୁଗୀୟ ଓ ଆଧୁନିକ ଓଡ଼ିଆ ସାହିତ୍ୟର ପରିବେଶ-କୈନ୍ଦ୍ରିକ ସମାଲୋଚନା ପ୍ରସଙ୍ଗରେ ଇତିହାସ, ନୃତତ୍ତ୍ୱ ଓ ଭାଷାବିଜ୍ଞାନର ସଫଳ ଉପଯୋଗ ମାଧ୍ୟମରେ ସେ କରିଛନ୍ତି ନୂତନ ଦୃଷ୍ଟିକୋଣର ସୂଚନା । ଆଞ୍ଚଳିକ ପରମ୍ପରାର ଅନୁଶୀଳନ ପ୍ରସଙ୍ଗରେ ଓଡ଼ିଶା ଇତିହାସର କେତେକ ଅନ୍ଧକାରାବୃତ୍ତ କୋଣ, ଅନୁକୋଣ ଉପରେ ଆଲୋକପାତ କରିବା ସହ ଜନଶ୍ରୁତି ବିଶ୍ଳେଷଣର ଏକ ଅଭିନବ ପଦ୍ଧତି ପ୍ରଚଳନ କରି ସେ ଦେଇଛନ୍ତି ନୂତନ ଦିଗଦର୍ଶନ । ଓଡ଼ିଆ ଅସ୍ମିତାର ସଂରଚନା ବିଷୟକ ତାଙ୍କର ଅନୁଧ୍ୟାନ ଗଭୀର ଅନ୍ତର୍ଦୃଷ୍ଟିସମ୍ପନ୍ନ ଓ ସେ କ୍ଷେତ୍ରରେ ତାଙ୍କ ଅଗ୍ରଗାମୀତ୍ୱ ଜାତୀୟ ତଥା ଆନ୍ତର୍ଜାତିକ କ୍ଷେତ୍ରରେ ସ୍ୱୀକୃତ ।

ତାହା ବ୍ୟତୀତ ଓଡ଼ିଶା ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କିତ ଉପାଦାନର ସଂଗ୍ରହ ଓ ପଞ୍ଜୀକରଣ ତଥା ତାଳପତ୍ର ପୋଥି ସମ୍ପାଦନାରେ ମଧ୍ୟ ରହିଛି ତାଙ୍କ କୃତିତ୍ୱର ସ୍ୱାକ୍ଷର ।

ଉତ୍କଳ, ବିଶ୍ୱଭାରତୀ ଓ ବ୍ରହ୍ମପୁର ବିଶ୍ୱ-ବିଦ୍ୟାଳୟର ଓଡ଼ିଆ ଓ ଭାଷାବିଜ୍ଞାନ ବିଭାଗରେ କୃତିତ୍ୱର ସହ ଅଧ୍ୟାପନା କରିବା ସହ ହାର୍ଭାର୍ଡ-ଭୁବନେଶ୍ୱର ପ୍ରୋଜେକ୍ଟର ସହଯୋଗୀ ଓ ଜର୍ମାନ ରିସର୍ଚ୍ଚ ପ୍ରୋଜେକ୍ଟରେ ସଦସ୍ୟ ତଥା କିଛି କାଳପାଇଁ କ୍ଷେତ୍ରନିର୍ଦ୍ଦେଶକ ଭାବରେ କାମ କରି ସେ ଦେଇଛନ୍ତି ଦକ୍ଷତାର ପରିଚୟ ତଥା ପାଖାପାଖି ଅର୍ଦ୍ଧଶତାବ୍ଦୀ ଧରି ପାଶ୍ଚାତ୍ୟ ଦେଶ ଓ ଓଡ଼ିଶା ମଧ୍ୟରେ ସେ ନିର୍ବାହ କରିଆସିଛନ୍ତି ଏକ ସାଂସ୍କୃତିକ-ସେତୁର ଭୂମିକା ।

ଅଜଣା ପଥ ଯେ ଡାକେ

**ଲେଖକ:** ଗଗନେନ୍ଦ୍ର ନାଥ ଦାଶ ♦ **ପ୍ରକାଶିକା ଓ ସ୍ୱତ୍ତ୍ୱାଧିକାରିଣୀ:** ରମାଦେବୀ, ୩୨୪- ଶ୍ରୀରାମ ନଗର, ଭୁବନେଶ୍ୱର-୭୫୧୦୦୨ ♦ **ମୁଦ୍ରଣ:** ଗୋପୀନାଥ ଅଫ୍‌ସେଟ୍, ରସୁଲଗଡ଼, ଭୁବନେଶ୍ୱର ♦ **ବିତରକ:** ଶିକ୍ଷାସନ୍ଧାନ, ଏନ୍.ଡି-୭, ଭି.ଆଇ.ପି. ଏରିଆ, ଆଇ.ଆର୍.ସି. ଭିଲେଜ୍, ଭୁବନେଶ୍ୱର-୭୫୧୦୧୫ ♦ **ପ୍ରଚ୍ଛଦ ଓ ଅଳଙ୍କରଣ:** କବିତା ♦ **ପ୍ରଥମ ପ୍ରକାଶ:** ଅପ୍ରେଲ ୨୦୧୬ ♦ **ମୂଲ୍ୟ:** ଟ. ୨୩୦.୦୦

***Ajanaa Patha je Daake***

**By:** Gaganendra Nath Dash © **& Publisher:** Rama Devi, 324, Sri Ram Nagar, Bhubaneswar- 751002 **Printed at:** Gopinath Offset, Rasulgarh, Bhubaneswar **Distributor:** Sikshasandhan, N.D-7, VIP Area, IRC Village, Bhubaneswar-751015 **Cover & Layout:** Kabita **First Edition**: April 2016 **Price**: Rs. 230/-

**ISBN 978-93-5265-017-0**

ମୋର ଗବେଷକ ଜୀବନର ଅନ୍ୟତମ ପ୍ରେରଣାର ଉତ୍ସ

ଓ

୧୮୯୪ର 'ଉତ୍କଳ ଦୀପିକା'ରେ ଏକ ପତ୍ର ମାଧ୍ୟମରେ
'ମାଦଳାପାଞ୍ଜି' ଅନ୍ତର୍ଗତ 'ରାଜଭୋଗ ଇତିହାସ'ର ଐତିହାସିକ
ପ୍ରାମାଣିକତା ଉପରେ ପ୍ରଶ୍ନ ଉଠାଇଥିବା ମୋର ମାତାମହ
ପୁଣ୍ୟଶ୍ଳୋକ ଆର୍ତ୍ତତ୍ରାଣ ମିଶ୍ରଙ୍କ
ପବିତ୍ର ସ୍ମୃତିରେ

# ସୂଚୀ





# ପୂର୍ବ-ପୀଠିକା

"ଯେ ନାମ କେଚିଦିହଃ ନଃ ପ୍ରଥୟନ୍ତ୍ୟବଜ୍ଞାଂ,
ଜାନାନ୍ତୁତେ କିମପିତାନ୍ ପ୍ରତି ନୈବ ଯତ୍ନଃ ।"

ଭବଭୂତି

(୧)

ଅଜଣା ପଥ ତ ମତେ ବାରମ୍ବାର ହାତ ଠାରି ଡାକେ, ଗବେଷଣା ପ୍ରସଙ୍ଗରେ । ଅଜଣା ପଥରେ ହୁଏତ ଖାଲଖମା ଥାଏ; ଥାଏ ବି କଣ୍ଟାଝଣ୍ଟା; ଥାଏ ବାଧାବିଘ୍ନ । ତେଣୁ ସେ ପଥରେ ଚାଲୁ ଚାଲୁ ବେଳେ ବେଳେ ଝୁଣ୍ଟି ପଡିବାକୁ ପଡେ ଓ କ୍ଷତବିକ୍ଷତ ବି ହେବାକୁ ପଡେ । ପୁଣି ସେଇ ଅଜଣା ପଥରେ ଯାଉଁ ଯାଉଁ ବିପଦର ବି ସାମ୍ନା କରିବାପାଇଁ ପଡେ ବେଳେ ବେଳେ, ଆଉ ଅତ୍ୟନ୍ତ ଅପ୍ରତ୍ୟାଶିତ ଭାବରେ । ତା ସହ ସେ ପଥରେ ପଥିକ ହେବାବେଳେ ବାଟବଣା ହେବାର ଆଶଙ୍କା ମଧ୍ୟ କମ୍ ନ ଥାଏ । ସେ ସବୁ ମୋ କ୍ଷେତ୍ରରେ ବି ଘିଟିଛି; ଥରେ ଅଧେ ନୁହେଁ, ବାରମ୍ବାର । ତା ସତ୍ତ୍ୱେ ଗବେଷଣା ପ୍ରସଙ୍ଗରେ ଅଜଣା ପଥର ଆକର୍ଷଣ ତ ଦୁର୍ବାର, ଅନ୍ତତଃ ମୋପାଇଁ । ତାହାର ଡାକକୁ, ସେହି ଆହ୍ୱାନକୁ, ସେହି ଆମନ୍ତ୍ରଣକୁ ଏଡାଇଦେବା ତ ସହଜ ନୁହେଁ । କାରଣ ଅଜଣା ପଥ ତ କମ୍ ରୋମାଞ୍ଚକର ବି ନୁହେଁ । ତା କେତେ ରୋମାଞ୍ଚକର ହୋଇପାରେ କେବଳ ସେ ପଥର ପଥିକମାନେ ହିଁ ସେ କଥା ଜାଣନ୍ତି । ପରିଶେଷରେ ଅଜଣା ପଥରେ ଯାତ୍ରାର ଫଳଶ୍ରୁତି ତ ଅତ୍ୟନ୍ତ ଆନନ୍ଦଦାୟକ ହୋଇଥାଏ ।

ଗବେଷଣା ପ୍ରସଙ୍ଗରେ ସେଇ ଅଜଣା ପଥରେ ମୋର ଯାତ୍ରାର ଫଳଶ୍ରୁତି ଏ ସଙ୍କଳନରେ ଅନ୍ତର୍ଭୁକ୍ତ ପ୍ରବନ୍ଧ କେତୋଟିରେ ରହିଛି ।

(୨)

୧୯୬୧ରୁ ଆରମ୍ଭ କରି ୨୦୦୪ ମଧ୍ୟରେ ପ୍ରକାଶିତ ହୋଇଥିବା ବିଭିନ୍ନ ସ୍ୱାଦର ମୋର ବାରଗୋଟି ଓଡିଆ ଓ ଗୋଟିଏ ଇଂରାଜୀ ପ୍ରବନ୍ଧ ଏଇ ସଙ୍କଳନର ଅନ୍ତର୍ଭୁକ୍ତ ।

ତେବେ 'ଶତାବ୍ଦୀର ସୂର୍ଯ୍ୟ' ଉପରେ ପ୍ରକାଶିତ ମୋର ଦୁଇଗୋଟି ଓଡିଆ ପ୍ରବନ୍ଧକୁ ଏ ସଙ୍କଳନରେ ଗୋଟିଏ ପ୍ରବନ୍ଧରେ ପରିଣତ କରାଯାଇଥିବାରୁ 'ସୂଚିପତ୍ର'ରେ ଏଗାରଗୋଟି ଓଡ଼ିଆ ପ୍ରବନ୍ଧର ନାମ ରହିଛି । ପୁନଶ୍ଚ ଏଇ ସଙ୍କଳନରେ ଅନ୍ତର୍ଭୁକ୍ତ 'ମାଦଳାପାଞ୍ଜିର ଐତିହାସିକ ପ୍ରାମାଣିକତା' ଶୀର୍ଷକ ପ୍ରବନ୍ଧ ପରବର୍ତ୍ତୀ କାଳରେ କିଛି ପରିମାଣରେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇ ଇଂରାଜୀରେ ଲିଖିତ ଓ ପ୍ରକାଶିତ ବି ହୋଇଥିଲା । ତେଣୁ ତାହାକୁ ପରିଶିଷ୍ଟ-୧ ଭାବରେ ଏଇ ସଙ୍କଳନରେ ସ୍ଥାନିତ କରାଯାଇଛି । ସେ ସମୟରେ ସେଥିରେ କିଛି ନୂଆ କଥା କୁହାଯାଉଛି ବିଶ୍ୱାସରୁ ଏ ସମସ୍ତ ପ୍ରବନ୍ଧ ଲିଖିତ ଓ ପ୍ରକାଶିତ ହୋଇଥିଲା । ଏହିସବୁ ପ୍ରବନ୍ଧ ପୂର୍ବରୁ ମୋର କୌଣସି ପୁସ୍ତକରେ ପ୍ରକାଶ ପାଇନାହିଁ । ଆଉ ସେଥିରେ କୁହାଯାଇଥିବା ନୂଆ କଥା ଏବେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ପୁରୁଣା ହୋଇଯାଇନାହିଁ ଓ/ବା କିଛି ନ ହେଲେ ବି ସେସବୁର କିଛି ଐତିହାସିକ ମୂଲ୍ୟ ଅଛି ଏପରି ବିଶ୍ୱାସରୁ ପରିକଳ୍ପନା କରାଯାଇଛି ଏ ସଙ୍କଳନର ।

(୩)

ଏ ସଙ୍କଳନର ପ୍ରଥମ ଓ ଦ୍ୱିତୀୟ ପ୍ରବନ୍ଧ, (ଅର୍ଥାତ୍ 'ମାଦଳାପାଞ୍ଜି : ଏକ ଟିପ୍ପଣୀ' ଓ 'ମାଦଳାପାଞ୍ଜିର ଐତିହାସିକ ପ୍ରାମାଣିକତା')୧୯୬୧ରେ ମୋର ଛାତ୍ରାବସ୍ଥାରେ ଓ ଅସୁସ୍ଥାବସ୍ଥାରେ ବିଶ୍ୱଭାରତୀ (ଶାନ୍ତିନିକେତନ) ହସ୍ପିଟାଲ୍‌ର ରୋଗଶଯ୍ୟାରେ ଶୋଇରହିଥିବା ସମୟରେ ଲିଖିତ ଓ ପ୍ରକାଶିତ ହୋଇଥିଲା । ସେ ଦୁଇଟି ଯଥାକ୍ରମେ ମୋର ଦ୍ୱିତୀୟ ଓ ତୃତୀୟ ପ୍ରକାଶିତ ପ୍ରବନ୍ଧ । (ମୋର ପ୍ରଥମ ପ୍ରକାଶିତ ପ୍ରବନ୍ଧ,'ସମରତରଙ୍ଗ ବର୍ଣ୍ଣିତ ଢେଙ୍କାନାଳ ଯୁଦ୍ଧର ସମୟ ନିରୂପଣ' ବି ସେଇ ୧୯୬୧ରେ ପ୍ରକାଶ ପାଇଥିଲା । ଏଥି ପୂର୍ବେ ତାହା ୧୯୮୪ରେ ପ୍ରକାଶିତ ମୋର 'ଖଦ୍ୟୋତର ଦ୍ୟୁତି' ପ୍ରବନ୍ଧ ସଙ୍କଳନର ଅନ୍ତର୍ଗତ ହୋଇଛି ।) ଓଡିଆରେ ଲେଖାଯାଉଥିବା ଗବେଷଣାତ୍ମକ ପୁସ୍ତକ ଓ ପ୍ରବନ୍ଧରେ ସେତେବେଳେ କ୍ୱଚିତ୍ ବୈଜ୍ଞାନିକତାର ସ୍ପର୍ଶ ଲାଗୁଥିଲା ଓ ସେ କାରଣରୁ 'ମାଦଳାପାଞ୍ଜି' ଉପରେ ଲିଖିତ ସେ ପ୍ରବନ୍ଧ ଦୁଇଟିରେ ବ୍ୟବହୃତ ପୁସ୍ତକ ଓ ଗବେଷଣା-ପତ୍ରର ପ୍ରକାଶନ କାଳ କ୍ୱଚିତ ସୂଚିତ ହୋଇଥିଲା । ଅବଶ୍ୟ ସେ ପର୍ଯ୍ୟନ୍ତ ସେଥିରେ ବ୍ୟବହୃତ ପୁସ୍ତକଗୁଡିକର କେବଳ ପ୍ରଥମ ସଂସ୍କରଣ ହିଁ ପ୍ରକାଶ ପାଇଥିବାରୁ ତଥା ଗବେଷଣା-ପତ୍ରର ଭାଗ ଓ ସଂଖ୍ୟା ସୂଚିତ ହୋଇଥିବାରୁ ପାଠକ ପକ୍ଷରେ ତାହା ବିଶେଷ ସମସ୍ୟା ସୃଷ୍ଟି କରିବାର ସମ୍ଭାବନା ହିଁ ନ ଥିଲା । ଏବେ ପ୍ରଥମ ପ୍ରବନ୍ଧଟିରେ ପ୍ରକାଶନ-କାଳ ଯୋଗ କରାଯାଇଛି । ପୁଣି ସେଥିରେ ପାଦଟୀକା '୧୪(କ)'ରେ

କୁଞ୍ଜବିହାରୀ ତ୍ରିପାଠୀଙ୍କ ସୂଚିତ ପ୍ରବନ୍ଧ ପରିବର୍ତ୍ତେ ଅସାବଧାନତାବଶତଃ ଅନ୍ୟ ଏକ ଇଂରାଜୀ ପ୍ରବନ୍ଧର ସୂଚନା ଦିଆଯାଇଥିଲା, ଯାହା ବର୍ତ୍ତମାନ ସଜାଡିଦିଆଯାଇଛି । ତା ବ୍ୟତୀତ, ପ୍ରବନ୍ଧଟି ପ୍ରଥମେ ଯେଉଁ ରୂପରେ ପ୍ରକାଶ ପାଇଥିଲା, ଏବେ ଠିକ୍ ସେହି ରୂପରେ ହିଁ ପ୍ରକାଶ କରାଯାଉଛି । ଦ୍ୱିତୀୟ ପ୍ରବନ୍ଧଟି ଇଂରାଜୀରେ ରୂପାନ୍ତରିତ ଓ ପରିବର୍ଦ୍ଧିତ ହୋଇ 'ପରିଶିଷ୍ଟ-୧'ରେ ପରିଣତ ହୋଇଛି ଓ ସେଥିରେ ବ୍ୟବହୃତ ପୁସ୍ତକଗୁଡିକର ତଥା ଗବେଷଣା-ପତ୍ରଗୁଡିକର ପ୍ରକାଶନ କାଳ ସୂଚିତ ହୋଇଥିବାରୁ ତାହା ଆଉ ତାର ପୂର୍ବ ରୂପ ଓଡିଆ ପ୍ରବନ୍ଧରେ ଦିଆଯାଇନାହିଁ ଓ ଓଡିଆ ପ୍ରବନ୍ଧଟିକୁ ପ୍ରାୟ ଅପରିବର୍ତ୍ତିତ ରୂପରେ ପ୍ରକାଶ କରାଯାଇଛି ।

ଏ ସଙ୍କଳନର ଦ୍ୱିତୀୟ (ଓ ମୋର ଛାତ୍ରାବସ୍ଥାରେ ଲିଖିତ ତୃତୀୟ) ପ୍ରବନ୍ଧର ଭିତ୍ତିଭୂମି ଉପରେ ଠିଆହୋଇଥିବା ଓ ଏ ସଙ୍କଳନରେ 'ପରିଶିଷ୍ଟ-୧'ରେ ଦିଆଯାଇଥିବା ଇଂରାଜୀ ପ୍ରବନ୍ଧ ମୋ ଗବେଷକ ଜୀବନରେ ଏକ ଉଜ୍ଜ୍ୱଳ ଭୂମିକା ଗ୍ରହଣ କରିଥିଲା । ମୋର ଯାହା ମନେପଡୁଛି, ତାହା ଲିଖିତ ହୋଇଥିଲା ୧୯୬୪ରେ । ତା ପରେ ମୁଁ ତାହାକୁ ଓଡିଶା ରାଜ୍ୟ ଅଭିଲେଖାଗାର ଦାୟିତ୍ୱରେ ଥିବା ସୁଶୀଲ ଚନ୍ଦ୍ର ଦେ' ମହାଶୟଙ୍କୁ ପଢିବାପାଇଁ ଦେଇଥିଲି । ତେବେ ତା ଉପରେ ତାଙ୍କର ଅଭିମତ ବିଶେଷ ଅନୁକୂଳାତ୍ମକ ନ ଥିଲା । ତା ପରେ ସେଇ କୋଠାରେ ବସୁଥିବା ରାଜ୍ୟ ଗେଜେଟିଆରର ତତ୍କାଳୀନ ସମ୍ପାଦକ ତଥା Orissa Historical Research Journalର ମୁଖ୍ୟ-ସମ୍ପାଦକ ଡକ୍ଟର ନବୀନ କୁମାର ସାହୁଙ୍କୁ ବି ତାହାକୁ ପଢିବାପାଇଁ ଦେଇଥିଲି । ତାହା ଉପରେ ତାଙ୍କର ଅଭିମତ ବିଶେଷ ଅନୁକୂଳାତ୍ମକ ଥିଲା ଓ ସେ ତାହାକୁ Orissa Historical Research Journalରେ ପ୍ରକାଶ କରିଦେବେ ବୋଲି କହିଥିଲେ । କେବଳ ସେତିକି ନୁହେଁ, ତା ପରେ ସେ ମତେ Persian Sources of Orissan History ବିଷୟରେ ଗବେଷଣା କରିବାପାଇଁ ପରାମର୍ଶ ବି ଦେଇଥିଲେ । ତାଙ୍କ ପରାମର୍ଶ ଅନୁଯାୟୀ ମୁଁ କିଛି ଦିନ ରାଜ୍ୟ ସଂଗ୍ରହାଳୟ ପାଠାଗାରରେ ପାର୍ଶୀ ଭାଷାରୁ ଇଂରାଜୀରେ ଅନୁଦିତ କେତେକ ଇତିହାସ ପୁସ୍ତକରୁ ଓଡିଶା ବିଷୟକ ବିବରଣୀ ଖୋଜି କିଛି ନୋଟ୍ ବି କରିଥିଲି । କିନ୍ତୁ ୧୯୬୫ରେ ମୁଁ ପୁନା (ବର୍ତ୍ତମାନର ପୁଣେ) ଗଲି । ସେଇ ପୁନାରେ ଥିବା ସମୟରେ ମୋ ପ୍ରବନ୍ଧ O. H. R. J.ରେ ପ୍ରକାଶ ପାଇଲା କି ନାହିଁ ଜାଣିବାପାଇଁ ନବୀନବାବୁଙ୍କୁ ଗୋଟିଏ ଚିଠି ଲେଖି ବି ଥିଲି । ନବୀନବାବୁ ୧୯୬୫ର ନଭେମ୍ବର ୧୧ ତାରିଖରେ ମୋ ଚିଠିର ଉତ୍ତର ଦେଇଥିଲେ । ପ୍ରାୟ ଛ'ସାତ ମାସ ପୂର୍ବେ ହୋଇଥିବା ସମ୍ପାଦକ-ମଣ୍ଡଳୀର ବୈଠକରେ ସୁଶୀଲବାବୁ କିଛି 'ଆପତ୍ତି' ଉଠାଇବା ("raised certain points")

କାରଣରୁ ପ୍ରବନ୍ଧଟି ପ୍ରେସକୁ ଯାଇପାରିନଥିଲା ବୋଲି ମତେ ଜଣାଇ ପରବର୍ତ୍ତୀ ବୈଠକରେ ତାହା ସୁବିଚାର ପାଇବ ବୋଲି ସେ ଆଶା ପ୍ରକାଶ କରିଥିଲେ । (ସେ ଚିଠି ଏବେ ବି ମୋ ନିକଟରେ ରହିଛି । ସେତେବେଳର ଜଣେ ଯୁବକ ଓଡ଼ିଆ ଅଧ୍ୟାପକଙ୍କର ଚିଠିର ଉତ୍ତରଟିଏ ଦେବା ଭିତରଦେଇ ପ୍ରବୀଣ ଓ ପଦସ୍ଥ ନବୀନବାବୁ ଯଥାର୍ଥରେ ସହୃଦୟତାର ପରିଚୟ ଦେଇଥିଲେ ।) ତେବେ ମତେ ଜଣାନଥିବା କୌଣସି କାରଣରୁ ପ୍ରବନ୍ଧଟି ପରବର୍ତ୍ତୀ କାଳରେ ଆଉ O. H. R. J. ରେ ପ୍ରକାଶ ପାଇନଥିଲା କି ସେ ବିଷୟରେ ନବୀନବାବୁଙ୍କ ସହ ଆଉ କୌଣସି ଯୋଗାଯୋଗ କରିବାପାଇଁ ମୋର ଆଗ୍ରହ ହୋଇନଥିଲା । ମୋଟଉପରେ ମୋର ସେ ସମ୍ପର୍କୀୟ ଉତ୍ସାହରେ ଭଟ୍ଟା ପଡ଼ିଲା ତଥା ଓଡ଼ିଆ ଭାଷା ଉପରେ ଭାଷାବିଜ୍ଞାନସମ୍ମତ ଗବେଷଣାରେ ମୁଁ ମାତିଗଲି । ୧୯୭୦ରେ ଯେତେବେଳେ ଜର୍ମାନ୍ ଗବେଷଣା ପ୍ରୋଜେକ୍ଟ (Orissa Research Project I) ଓଡ଼ିଶାରେ ଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ିଉଠିଥିବା ଆଞ୍ଚଳିକ ପରମ୍ପରାର ଉନ୍ମେଷ ଓ ବିକାଶ ଉପରେ ଗବେଷଣା ଆରମ୍ଭ କଲା ସେତେବେଳେ ତାହାର ଅନ୍ୟତମ ସଦସ୍ୟ ଡକ୍ଟର Heinrich von Stietencreonଙ୍କୁ ମୁଁ ସେହି ତଥାପି ଅପ୍ରକାଶିତ ଥିବା ପ୍ରବନ୍ଧଟି ପଢ଼ିବାପାଇଁ ଦେଇଥିଲି । ସେ ତାହା ପଢ଼ି ସେ ସମ୍ପର୍କରେ ଅନୁକୂଳାତ୍ମକ ଅଭିମତ ଦେଲେ ଓ ତାଙ୍କ ମାଧ୍ୟମରେ ପ୍ରୋଜେକ୍ଟର ଅନ୍ୟାନ୍ୟ ସଦସ୍ୟ ମଧ୍ୟ ତାହାକୁ ପଢ଼ିଲେ । କଥା ପ୍ରସଙ୍ଗରେ ମୁଁ 'ମାଦଳାପାଞ୍ଜି' ଉପରେ ଓଡ଼ିଆରେ ଆଉ ଦୁଇଟି ପ୍ରବନ୍ଧ ଲେଖିଥିବାର ମଧ୍ୟ ସେମାନଙ୍କୁ କହିଥିଲି । ତା ପରେ ସେମାନେ ମତେ 'ମାଦଳାପାଞ୍ଜି' ଉପରେ ଏକ ବକ୍ତୃତା ଦେବାପାଇଁ ଆମନ୍ତ୍ରଣ କଲେ । ସେହି ବକ୍ତୃତା କାର୍ଯ୍ୟକ୍ରମ ପରେ ସେମାନେ ସ୍ୱତଃପ୍ରବୃତ୍ତ ଭାବରେ ମତେ ପ୍ରୋଜେକ୍ଟର ଅନ୍ୟତମ ସଦସ୍ୟ ଭାବରେ ଗବେଷଣା କରିବାର ଏକ ଦୁର୍ଲଭ ସୁଯୋଗ ବି ଦେଇଥିଲେ । ତା ଫଳରେ ମୋ ଗବେଷକ-ଜୀବନର ଏକ ନୂତନ ଅଧ୍ୟାୟ ଆରମ୍ଭ ହୋଇଥିଲା । ପ୍ରବନ୍ଧଟି କିନ୍ତୁ ତାହାର ବହୁ ପରେ ୧୯୭୯ରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଗବେଷଣା-ପତ୍ରରେ ପ୍ରକାଶ ପାଇଥିଲା ।

ପ୍ରୋଜେକ୍ଟର ସଦସ୍ୟ ଭାବରେ ଯୋଗ ଦେବା ପରେ ତାହାର ମଧ୍ୟବର୍ତ୍ତୀ କାଳୀନ ରିପୋର୍ଟ ଭାବରେ ମୁଁ ଯାହା ଲେଖିଥିଲି ତାହା ବି ଥିଲା ସେହି 'ମାଦଳାପାଞ୍ଜି' ବିଷୟକ । ୧୯୭୩ରେ ପ୍ରୋଜେକ୍ଟର ମଧ୍ୟବର୍ତ୍ତୀ କାଳୀନ ୨ୟ ରିପୋର୍ଟରେ ତାହା ସଙ୍କଳିତ ହୋଇଥିଲା । ଏ ସଙ୍କଳନରେ ତାହା ହିଁ 'ପରିଶିଷ୍ଟ-୨' ଭାବରେ ଉପସ୍ଥାପିତ ହୋଇଛି । (ତେବେ ମୁଁ ବିଳମ୍ବରେ ପ୍ରୋଜେକ୍ଟରେ ଯୋଗ ଦେଇଥିବାରୁ ମଧ୍ୟବର୍ତ୍ତୀକାଳୀନ

୧ମ ରିପୋର୍ଟପାଇଁ କିଛି ଲେଖି ନ ଥିଲି । ପ୍ରୋଜେକ୍ଟର ଦୁଇଟିଯାକ ମଧ୍ୟବର୍ତ୍ତୀ କାଳୀନ ରିପୋର୍ଟ ଜାତୀୟ ଅଭିଲେଖାଗାରର ଭୁବନେଶ୍ୱରସ୍ଥ ରେକର୍ଡ ସେଣ୍ଟରରେ ଉପଲବ୍ଧ ।)

(୪)

ଯେଉଁମାନେ ପ୍ରବନ୍ଧଗୁଡିକ ଲେଖିବାରେ, ଯଥା ତଥ୍ୟସଂଗ୍ରହରେ ଓ ଅନ୍ୟଭାବରେ, ମତେ ସାହାଯ୍ୟ କରିଛନ୍ତି; ଯେଉଁମାନେ ମତେ ବିଭିନ୍ନ ଅନୁଷ୍ଠାନରେ/ ଅବକାଶରେ ପ୍ରବନ୍ଧ ପାଠକରିବାପାଇଁ ଆମନ୍ତ୍ରଣ କରି ପ୍ରବନ୍ଧ ଲେଖିବାର କାରକ ହୋଇଛନ୍ତି; ଯେଉଁ ସାହିତ୍ୟପତ୍ର ବା ସଙ୍କଳନର ସମ୍ପାଦକ/ସଙ୍କଳୟିତା ପ୍ରଥମେ ପ୍ରବନ୍ଧଟିକୁ ଆଲୋକକୁ ଆଣିଛନ୍ତି ଓ ଯେଉଁ ଆଗ୍ରହୀ ଓ ସହୃଦୟ ପାଠକମାନେ ସମୟ ଦେଇ ଓ ଶ୍ରମ ସ୍ୱୀକାର କରି ପ୍ରବନ୍ଧ ପଢ଼ିଛନ୍ତି ତଥା ବିଶେଷ ଭାବରେ ସେମାନଙ୍କ ମଧ୍ୟରୁ ଯେଉଁମାନେ ବ୍ୟକ୍ତିଗତଭାବରେ ପତ୍ରଯୋଗେ, ଦୂରଭାଷଯୋଗେ ବା ଅନ୍ୟଭାବରେ ମତେ ସେମାନଙ୍କର ଅଭିମତ ଜଣାଇ ଉତ୍ସାହିତ ଓ ଅନୁପ୍ରେରିତ କରିଛନ୍ତି ସେ ସମସ୍ତଙ୍କୁ ଜ୍ଞାପନ କରୁଛି ହୃଦୟର ଆନ୍ତରିକ କୃତଜ୍ଞତା । (ଏଇଠି କହିରଖେ, ମୋର ପ୍ରଥମ ପ୍ରକାଶିତ ତିନୋଟିଯାକ ପ୍ରବନ୍ଧ 'ଡଗର' ମାସିକ ପତ୍ରରେ ପ୍ରକାଶ ପାଇଥିଲା ଓ ସେତେବେଳେ ବସ୍ତୁତଃ ତାହାର ସମ୍ପାଦନା ଦାୟିତ୍ୱରେ ଥିଲେ ଭାବଗ୍ରାହୀ ମିଶ୍ର ଓରଫ ଆଜିର ଆଚାର୍ଯ୍ୟ ଭାବାନନ୍ଦ ।)

ଏହି ସଙ୍କଳନର ଏକମାତ୍ର ପରିବେଷକ ହେବାକୁ ସମ୍ମତ ହୋଇଥିବା ଶିକ୍ଷାସନ୍ଧାନ ଅନୁଷ୍ଠାନ ଓ ବିଶେଷ ଭାବରେ ତାହାର ସଭାପତି ପ୍ରଫେସର ଯତୀନ୍ଦ୍ର କୁମାର ନାୟକ ଓ ସମ୍ପାଦକ ଶ୍ରୀ ଅନୀଲ ପ୍ରଧାନଙ୍କୁ ମଧ୍ୟ ଏହି ଅବସରରେ କୃତଜ୍ଞତା ଜଣାଉଛି ।

ପୁସ୍ତକଟିର ଡି.ଟି.ପି. ତଥା ପ୍ରଚ୍ଛଦପଟ ପ୍ରସ୍ତୁତ କରିଥିବା କୁମାରୀ କବିତା ବେହେରାଙ୍କୁ ବି ଧନ୍ୟବାଦ ।

ଗଗନେନ୍ଦ୍ର ନାଥ ଦାଶ
ଡିସେମ୍ବର ୨୦୧୫
ଶ୍ରୀରାମ ନଗର, ଭୁବନେଶ୍ୱର - ୨

# ମାଦଳା ପାଞ୍ଜି: ଏକ ଟିପ୍ପଣୀ

ଓଡ଼ିଶାର ରାଜନୀତି, ସାହିତ୍ୟ ଓ ଭାଷା ସମ୍ବନ୍ଧୀୟ ଐତିହାସିକ ଆଲୋଚନାରେ 'ମାଦଳା ପାଞ୍ଜି' ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ସେଥିପାଇଁ କେବେଠାରୁ ଧାରାବାହିକ ଭାବେ 'ମାଦଳା ପାଞ୍ଜି' ଲେଖା ଆରମ୍ଭ ହେଲା, ତା' ଜାଣିବାର ଆବଶ୍ୟକତା ରହିଛି । ତେଣୁ ଏ ସମ୍ବନ୍ଧରେ ନାନା ଆଲୋଚନା ହୋଇଛି, ବଳିଷ୍ଠ ଯୁକ୍ତି-ଭିତ୍ତିରେ ନାନା ମତ ମଧ୍ୟ ଦିଆହୋଇଛି । ସେ ଦୃଷ୍ଟିରୁ ଏଠାରେ ଏକ ସ୍ୱୟଂସମ୍ପୂର୍ଣ୍ଣ ଆଲୋଚନା କରା ନ ଯାଇ କ୍ଷୁଦ୍ର ଏକ ଟିପ୍ପଣୀ ଦିଆଯାଉଛି ମାତ୍ର । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଏ ସମ୍ବନ୍ଧୀୟ ଏକ ସମସ୍ୟାର ସମାଧାନପାଇଁ ପାଠକ ଓ ଆଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରିବା ।

ବର୍ତ୍ତମାନ ଯେଉଁ 'ମାଦଳା ପାଞ୍ଜି' ଦୃଷ୍ଟିଗୋଚରକୁ ଆସେ ତାହା ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କଦ୍ୱାରା ସମ୍ପାଦିତ ଓ 'ପ୍ରାଚୀ ସମିତି'ଦ୍ୱାରା ପ୍ରକାଶିତ । ସେଥିରେ ତିନୋଟି ପାଠ (version) ଅଛି । ଏହି ପାଠତ୍ରୟକୁ ଯଥାକ୍ରମେ ୧ମ ପାଞ୍ଜି, ୨ୟ ପାଞ୍ଜି ଓ ୩ୟ ପାଞ୍ଜି ବୋଲି 'ପ୍ରାଚୀ' ସଂସ୍କରଣରେ ଚିହ୍ନିତ କରାଯାଇଛି । ପାଞ୍ଜିର ତିନୋଟିଯାକ ପାଠ ବିଭିନ୍ନ, ଏପରିକି ସମୟ ସମୟରେ ପରସ୍ପର ବିରୋଧି ମଧ୍ୟ । ୧ମ ପାଞ୍ଜି (ପାଠ)ରେ କେଉଁ ରାଜା କେତେ ବର୍ଷ ଭୋଗ କଲେ ତାହା ସୂଚିତ ହୋଇଅଛି (କେତେକ ସ୍ଥଳରେ ଅଙ୍କର ବ୍ୟବହାର ମଧ୍ୟ ହୋଇଛି) । ୨ୟ ପାଞ୍ଜିରେ ଏହି ଭୋଗକାଳ ଅଙ୍କ ବ୍ୟବହାର ଦ୍ୱାରା ସୂଚିତ କରାଯାଇଛି । ୩ୟ ପାଞ୍ଜିରେ ଏହି ଭୋଗକାଳ ଶକାବ୍ଦ ସହ ଦିଆଯାଇଛି ।

ଏହି ଅଙ୍କ ଗଣନା ଓ ଶକାବ୍ଦ ଗଣନା ଆଦିକୁ ଭିତ୍ତିକରି ଐତିହାସିକ ଶ୍ରୀଯୁକ୍ତ ଦିନେଶଚନ୍ଦ୍ର ସରକାର ମତ ଦିଅନ୍ତି ଯେ ୧ମ ପାଞ୍ଜି ୨ୟ ପାଞ୍ଜିର ଓ ୨ୟ ପାଞ୍ଜି ୩ୟ ପାଞ୍ଜିର ପୂର୍ବବର୍ତ୍ତୀ । ଅର୍ଥାତ୍ ୧ମ ପାଞ୍ଜି ଲିଖିତ ହେବାପରେ ୨ୟ ପାଞ୍ଜି ଓ ୨ୟ ପାଞ୍ଜି ଲିଖିତ ହେବା ପରେ ଶେଷରେ ୩ୟ ପାଞ୍ଜି ଲିଖିତ ହୋଇଅଛି ।[୧] ତେଣୁ ମାଦଳା ପାଞ୍ଜି ('ପ୍ରାଚୀ' ସଂସ୍କରଣ)ର ପାଠତ୍ରୟ ମଧ୍ୟରୁ ୧ମ ପାଞ୍ଜିର ପାଠ ସର୍ବପ୍ରାଚୀନ ତଥା

ଅଧିକ ଐତିହାସିକ ପ୍ରମାଣିକତା ପ୍ରଯୁକ୍ତ । ୨ୟ ଓ ୩ୟ ପାଞ୍ଜିର ପାଠ କ୍ରମାନ୍ୱୟରେ ଏହାର ପରବର୍ତ୍ତୀ କାଳର ଓ ଏହା ତୁଳନାରେ କମ୍ ଐତିହାସିକ ପ୍ରମାଣିକତାଯୁକ୍ତ । ପ୍ରାଚୀ ସମିତି ପ୍ରକାଶିତ 'ମାଦଳା ପାଞ୍ଜି'ର ତୁଳନାତ୍ମକ ଭାବେ ଅଧିକ ପ୍ରାଚୀନ ତଥା ପ୍ରାମାଣିକ ପାଠ, ଏହି ୧ମ ପାଞ୍ଜିର ପାଠରେ ଅନଙ୍ଗଭୀମ ଦେବଙ୍କ ରାଜତ୍ୱ ବର୍ଣ୍ଣନା ପ୍ରସଙ୍ଗରେ 'ଭଟ୍ଟମିଶ୍ର' ଶବ୍ଦ ବ୍ୟବହୃତ ହୋଇଅଛି ।[୨] ଭୋଇ ବଂଶର ରାଜା ରାମଚନ୍ଦ୍ର ଦେବ(୧ମ)ଙ୍କ ରାଜତ୍ୱ ବର୍ଣ୍ଣନା ପ୍ରସଙ୍ଗରେ ମଧ୍ୟ ଏହି 'ଭଟ୍ଟମିଶ୍ର' ଶବ୍ଦର ପ୍ରୟୋଗ ହୋଇଛି । ଯଦିଓ ସେଠାରେ ଉକ୍ତ ବର୍ଣ୍ଣନା, ପାଠତ୍ରୟ ମଧ୍ୟରୁ କେଉଁ ପାଠର ଅନ୍ତର୍ଗତ ତା ସ୍ପଷ୍ଟ ଭାବରେ ଉଲ୍ଲେଖ କରାହୋଇନାହିଁ । ତଥାପି ତାହା ୧ମ ପାଞ୍ଜିର ପାଠ ବୋଲି ଅନୁମିତ ହୁଏ ।[୩]

ପୁନଶ୍ଚ ତୁଳନାତ୍ମକ ଭାବରେ ୧ମ ପାଞ୍ଜିର ପାଠ ଅପେକ୍ଷା କମ୍ ଓ ୩ୟ ପାଞ୍ଜିର ପାଠ ଅପେକ୍ଷା ଅଧିକ ପ୍ରାମାଣିକ ପାଠ ୨ୟ ପାଞ୍ଜିର ପାଠରେ ମଧ୍ୟ ଅନଙ୍ଗଭୀମ ଦେବଙ୍କ ରାଜତ୍ୱ ବର୍ଣ୍ଣନା ପ୍ରସଙ୍ଗରେ ଉକ୍ତ 'ଭଟ୍ଟମିଶ୍ର' ଶବ୍ଦ ବ୍ୟବହୃତ ହୋଇଅଛି ।[୪]

କିନ୍ତୁ ଅନ୍ୟପକ୍ଷରେ ଏହି 'ଭଟ୍ଟମିଶ୍ର' ଶବ୍ଦର ସୃଷ୍ଟି ସମ୍ବନ୍ଧରେ ପଣ୍ଡିତ ନୀଳକଣ୍ଠ କହନ୍ତି- "ତା ପୁଣି ପୁରୀ ଶାସନମାନଙ୍କରେ ସାମନ୍ତ ଭଟ୍ଟମିଶ୍ର ସୃଷ୍ଟିପରେ, ଅର୍ଥାତ୍ ଖ୍ରୀ ୧୬୩୦ ପରେ । ଭଟ୍ଟ ଥିଲେ, ମିଶ୍ର ଥିଲେ; କିନ୍ତୁ ଭଟ୍ଟମିଶ୍ର ନଥିଲେ । ଭୋଇବଂଶ ନରସିଂହ ଦେବ ପ୍ରଥମେ ଭଟ୍ଟମିଶ୍ର ଶବ୍ଦ ସୃଷ୍ଟି କରିଥିଲେ । ସେ ଶବ୍ଦ ଏବେ ବି ପୁରୀଜିଲ୍ଲା ଓ କେତେକ ଗଡ଼ଜାତ ଛଡ଼ା ଅନ୍ୟତ୍ର ଚଳେ ନାଇ । ସର୍ବତ୍ର ଲୋକେ ହୁଏତ ଏହାର ଅର୍ଥ ଜାଣନ୍ତି ନାଇ ।"[୫] ସେ ଅନ୍ୟତ୍ର ମଧ୍ୟ ଏହି ଶବ୍ଦ ସୃଷ୍ଟିର ଇଙ୍ଗିତ ଓ ଇତିହାସ ଦେଇଅଛନ୍ତି ।[୬]

ଡକ୍ଟର ହରେକୃଷ୍ଣ ମହତାବ ସ୍ପଷ୍ଟଭାବରେ ନହେଲେ ମଧ୍ୟ ପ୍ରକାରାନ୍ତରରେ ଏ ବିଷୟର ସମର୍ଥନ କରିଛନ୍ତି । ଭୋଇବଂଶର ରାଜା ନରସିଂହ ଦେବଙ୍କ ସମ୍ବନ୍ଧରେ ସେ ଲେଖିଛନ୍ତି, "ନରସିଂହ ଦେବ କୌଳିନ୍ୟ ପ୍ରଥା ସୃଷ୍ଟି କରିଥିଲେ । ସେହି ପ୍ରଥାନୁସାରେ ସେ ପୁରୀ ନିକଟରେ- ବୀର ନରସିଂହପୁର ଶାସନ ବସାଇଥିଲେ । ତାଙ୍କର ସମୟରେ ବ୍ରାହ୍ମଣ ସମାଜରେ 'ସାମନ୍ତ', 'ଭଟ୍ଟମିଶ୍ର' ଓ 'ବୈଦିକ' ନାମରେ ତିନିଶ୍ରେଣୀ ସୃଷ୍ଟି ହେଲା ।"[୭]

'ଭଟ୍ଟମିଶ୍ର' ଶବ୍ଦ ଯଦି ଭୋଇବଂଶର ନରସିଂହ ଦେବଙ୍କ ସମୟରେ ସୃଷ୍ଟି ହୋଇଥାଏ ତାହେଲେ ତା ପୂର୍ବରୁ ସେହି ଶବ୍ଦ ବ୍ୟବହାରର ପ୍ରଶ୍ନ ନ ଉଠିପାରେ । ତେଣୁ 'ମାଦଳା ପାଞ୍ଜି'ର ଯଥାକ୍ରମେ ପ୍ରାଚୀନ ଓ ପ୍ରାମାଣିକ ପାଠଦ୍ୱୟ ୧ମ ପାଞ୍ଜି ଓ

୨ୟ ପାଞ୍ଜିର ଯେଉଁ ଯେଉଁ ଅଂଶରେ ଏ ଶବ୍ଦଟି ବ୍ୟବହୃତ ସେ ସବୁ ଅଂଶ ଭୋଇବଂଶର ନରସିଂହ ଦେବଙ୍କ ସମୟରେ ବା ପରେ ଲିଖିତ ହୋଇଥିବ । ଅର୍ଥାତ୍ 'ମାଦଳା ପାଞ୍ଜି'ର ପ୍ରାଚୀନ ଓ ପ୍ରାମାଣିକ ପାଠଦ୍ୱୟର ଅନଙ୍ଗଭୀମ ଦେବଙ୍କଠାରୁ ଆରମ୍ଭ କରି ପରବର୍ତ୍ତୀ ଅଂଶ, ଭଙ୍ଗମିଶ୍ର ଶବ୍ଦର ସୃଷ୍ଟିକର୍ତ୍ତା ଭୋଇବଂଶର ନରସିଂହ ଦେବଙ୍କ ସମୟରେ ବା ପରେ ଲିଖିତ ହୋଇଥିବାର ଧରି ନିଆଯାଇପାରେ । ପୁନଶ୍ଚ ଅନଙ୍ଗ ଭୀମ ଦେବଙ୍କଠାରୁ ଆରମ୍ଭ କରି 'ମାଦଳାପାଞ୍ଜି'ର ପରବର୍ତ୍ତୀ ଅଂଶ ଅନଙ୍ଗଭୀମ ଦେବଙ୍କ ପୂର୍ବବର୍ତ୍ତୀ ରାଜାମାନଙ୍କ ରାଜତ୍ୱକାଳ ବର୍ଣ୍ଣିତ ହୋଇଥିବା ଅଂଶ ତୁଳନାରେ ଯଥେଷ୍ଟ ଐତିହାସିକ ପ୍ରାମାଣିକତା-ସମ୍ପନ୍ନ ବୋଲି ସର୍ବସାଧାରଣରେ ସ୍ୱୀକୃତ ।[୮] (ଏ ସ୍ଥଳରେ ତୁଳନାତ୍ମକ ଭାବରେ ଆଧୁନିକ ୩ୟ ପାଞ୍ଜିର ପାଠ ସମ୍ବନ୍ଧରେ ପ୍ରଶ୍ନ ନ ଉଠାଇବା ହିଁ ଭଲ) । ସୁତରାଂ ପ୍ରାଚୀ ସମିତି ପ୍ରକାଶିତ 'ମାଦଳା ପାଞ୍ଜି'ଟି ସମ୍ପୂର୍ଣ୍ଣ ଭାବେ ଭୋଇବଂଶର ରାଜା ନରସିଂହ ଦେବଙ୍କ ସମୟରେ ବା ପରେ ଲିଖିତ ହୋଇଥିବାର ଧରିନିଆଯାଇପାରେ ।

କୁହାଯାଇପାରେ, 'ମାଦଳା ପାଞ୍ଜି' ପୂର୍ବରୁ ଧାରାବାହିକ ଭାବେ ଲିଖିତ ହେଉଥିଲା । ମାତ୍ର ତାଳପତ୍ରଗୁଡ଼ିକ ଜୀର୍ଣ୍ଣ ହୋଇଯିବାରୁ ପରବର୍ତ୍ତୀ କାଳରେ (ଅର୍ଥାତ୍ ଭୋଇବଂଶର ନରସିଂହ ଦେବଙ୍କଦ୍ୱାରା 'ଭଙ୍ଗମିଶ୍ର' ସୃଷ୍ଟି ପରେ) ତାହାର ନୂତନ ସଂସ୍କରଣ ସମୟରେ ବା ତାକୁ ଆଉଥରେ ଉତାରିବା ସମୟରେ 'ଭଙ୍ଗମିଶ୍ର' ଶବ୍ଦଟି ନାନା ସ୍ଥାନରେ ପ୍ରକ୍ଷିପ୍ତ ହୋଇଯାଇଛି ।

କିନ୍ତୁ ଏହା ସ୍ୱୀକାର କରାଗଲେ ମଧ୍ୟ 'ମାଦଳା ପାଞ୍ଜି'ର ଐତିହାସିକ ମୂଲ୍ୟ ଯଥେଷ୍ଟ କ୍ଷୁଣ୍ଣ ହେଉଛି । କାରଣ 'ଭଙ୍ଗମିଶ୍ର' ଶବ୍ଦ ଯେଉଁପରି ଭାବରେ ପ୍ରକ୍ଷିପ୍ତ ହୋଇଛି ସେହିପରି ଭାବରେ ଅନ୍ୟାନ୍ୟ ଅନେକ କିଛି ମଧ୍ୟ ପ୍ରକ୍ଷିପ୍ତ ହୋଇଥିବାର ସମ୍ଭାବନା ଅଛି । (କେବଳ ଯୁକ୍ତି ଛଳରେ ଏ କଥା କୁହାଗଲେ ମଧ୍ୟ 'ଭଙ୍ଗମିଶ୍ର' ଶବ୍ଦ ଯେ ନିଶ୍ଚିତରୂପେ ପ୍ରକ୍ଷିପ୍ତ ତାହାର ସନ୍ତୋଷଜନକ ପ୍ରମାଣ ନାହିଁ) ।

ପୁନଶ୍ଚ ଯୁକ୍ତି କରାଯାଇପାରେ, 'ମାଦଳା ପାଞ୍ଜି'ରେ 'ଭଙ୍ଗମିଶ୍ର' ଶବ୍ଦର ବ୍ୟବହାର ହୋଇନାହିଁ । ଅସଲରେ ତାହା 'ଭଙ୍ଗ' ଶବ୍ଦ ଓ 'ମିଶ୍ର' ଶବ୍ଦ, ଏହିପରି ଦୁଇଟି ସ୍ୱତନ୍ତ୍ର ଶବ୍ଦ ମାତ୍ର; କିନ୍ତୁ 'ଭଙ୍ଗ' ଓ 'ମିଶ୍ର' ଦୁଇଟି ସ୍ୱତନ୍ତ୍ର ଶବ୍ଦ ହୋଇଥିଲେ ହେଁ ପାଖାପାଖି ଲେଖା ହୋଇଥିବାରୁ ଗୋଟିଏ ଶବ୍ଦ ବୋଲି ଭ୍ରମ ହେଉଛି । ପ୍ରାଚୀ ସଂସ୍କରଣରେ ମଧ୍ୟ 'ଭଙ୍ଗମିଶ୍ର'କୁ 'ଭଙ୍ଗ' ଓ 'ମିଶ୍ର' ଏହିପରି ଦୁଇଟି ସ୍ୱତନ୍ତ୍ର ଶବ୍ଦ ବୋଲି ଗ୍ରହଣ କରାଯାଇ ଉଭୟଙ୍କ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରଖାଯାଇଛି । ଫଳରେ

ତାହା ଦୁଇଟି ଶବ୍ଦ ବୋଲି ସାଧାରଣତଃ ଧାରଣା ହୋଇଥାଏ । କିନ୍ତୁ ଏ ସମ୍ପର୍କରେ ନିମ୍ନଲିଖିତ ଦୁଇଟି କଥା ବିଚାର୍ଯ୍ୟ:

କ- 'ମାଦଳା ପାଞ୍ଜି'ରେ ଭଞ୍ଜ ଶବ୍ଦର ଠିକ ପରେ ପ୍ରତ୍ୟେକ ସ୍ଥଳରେ ମିଶ୍ର ଶବ୍ଦ ବ୍ୟବହୃତ । କୌଣସି ସ୍ଥଳରେ ଏହାର ବ୍ୟତିକ୍ରମ ହୋଇନାହିଁ । କୌଣସି ସ୍ଥଳରେ ଭଞ୍ଜ ଶବ୍ଦ ପୂର୍ବରୁ ମିଶ୍ର ଶବ୍ଦ ବ୍ୟବହୃତ ହୋଇନାହିଁ ବା ଭଞ୍ଜ ଶବ୍ଦ ପରେ ଅନ୍ୟ କୌଣସି ଶବ୍ଦ ବ୍ୟବହୃତ ହୋଇନାହିଁ । ଭଞ୍ଜ ଓ ମିଶ୍ର ବୋଲି ଦୁଇଟି ସ୍ୱତନ୍ତ୍ର ଶବ୍ଦ ବ୍ୟବହୃତ ହେଉଥିଲେ ଏ ନିୟମର ବ୍ୟତିକ୍ରମ ଅନ୍ତତଃ ଥରେ ହେଲେ ଦେଖା ହୁଅନ୍ତା ନାହିଁ କି ?

ଖ- ଏହି 'ଭଞ୍ଜ ମିଶ୍ର' ଶବ୍ଦ (ଗୋଟିଏ ଶବ୍ଦ ହେଉ ବା ଦୁଇଟି ହେଉ)ର ଠିକ୍ ପୂର୍ବରୁ ମାଦଳା ପାଞ୍ଜିରେ ଗୋଟିଏ ସ୍ଥାନରେ 'ସାମନ୍ତ' ଓ ଆଉ ଗୋଟିଏ ସ୍ଥାନରେ 'ସାଆନ୍ତ' ଶବ୍ଦ ବ୍ୟବହୃତ ହୋଇଅଛି ।[୯] ଅନ୍ୟ ଏକ ସ୍ଥଳରେ 'ସମସ୍ତ' ଶବ୍ଦ ବ୍ୟବହୃତ ହୋଇଥିବାର ଆର୍ତ୍ତବାବୁଙ୍କ ପାଠ(Reading)ରୁ ଧାରଣା ହୁଏ[୧୦] । ମାତ୍ର ପୂର୍ବାପର ସଙ୍ଗତି ସହ ବିଚାରକଲେ ଏହା 'ସମସ୍ତ' ନୁହଁ, 'ସାମନ୍ତ' ହୋଇଥିବ ବୋଲି ଅନୁମିତ ହୁଏ । ସେ ସମ୍ବନ୍ଧରେ ଆର୍ତ୍ତବାବୁଙ୍କ ପାଠ ବୋଧହୁଏ ଭ୍ରମାତ୍ମକ । ଏହାଦ୍ୱାରା ଭୋଇବଂଶର ନରସିଂହ ଦେବଙ୍କଦ୍ୱାରା 'ସାମନ୍ତ ଭଞ୍ଜମିଶ୍ର' ସୃଷ୍ଟିର ଇଙ୍ଗିତ ମିଳେ ନାହିଁ କି ?

ସୁତରାଂ ସିଦ୍ଧାନ୍ତ କରାଯାଇପାରେ ଯେ ମାଦଳା ପାଞ୍ଜିରେ ଭଞ୍ଜ ଓ ମିଶ୍ର ବୋଲି ଦୁଇଟି ସ୍ୱତନ୍ତ୍ର ଶବ୍ଦ ବ୍ୟବହୃତ ହୋଇନାହିଁ, କିନ୍ତୁ ଭୋଇବଂଶର ରାଜା ନରସିଂହ ଦେବଙ୍କ ସୃଷ୍ଟ 'ଭଞ୍ଜମିଶ୍ର' ଶବ୍ଦଟି କେବଳ କେତେଥର ବ୍ୟବହୃତ ହୋଇଛି ମାତ୍ର ।

ମୋଟଉପରେ ଭୋଇବଂଶର ରାଜା ନରସିଂହ ଦେବଙ୍କ ପୂର୍ବର ଐତିହାସିକ ପ୍ରାମାଣିକତା 'ମାଦଳା ପାଞ୍ଜି'ଠାରେ ଆରୋପିତ ହୋଇ ନ ପାରେ । (ନରସିଂହ ଦେବଙ୍କ ରାଜତ୍ୱ କାଳ ନେଇ ମତାନ୍ତର ଅଛି, କିନ୍ତୁ ତାହା ଏଠାରେ ବିଚାର୍ଯ୍ୟ ନୁହେଁ) । କେବଳ ଆର୍ତ୍ତବାବୁଙ୍କ ସମ୍ପାଦିତ ଓ ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ 'ମାଦଳା ପାଞ୍ଜି'ର ପାଠଗୁଡ଼ିକ ପ୍ରତି ଏ ମନ୍ତବ୍ୟ ପ୍ରଯୁଜ୍ୟ ।

'ମାଦଳାପାଞ୍ଜି'ର ଅନ୍ୟ କେତେକ ପାଠ (version) ଅଛି ବା ଥିଲା । ଡକ୍ଟର ରମାପ୍ରସାଦ ଚନ୍ଦଙ୍କ ଏକ ପ୍ରବନ୍ଧରୁ[୧୧], ସ୍ୱର୍ଗୀୟ ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ'ରୁ[୧୨] ଓ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଏକ ପ୍ରବନ୍ଧ[୧୩] ଆଦିରୁ ଏ ଧାରଣା ଦୃଢ଼ୀଭୂତ ହୁଏ । କିନ୍ତୁ ସେ ସବୁ ହୁଏତ ନଷ୍ଟ ହୋଇଯାଇଛି । ନଷ୍ଟ ହୋଇ ନଥିଲେ ମଧ୍ୟ ସେ ସବୁ ଅଦ୍ୟାପି ଅପ୍ରକାଶିତ ଥିବାରୁ ସେ ସମ୍ବନ୍ଧୀୟ କୌଣସି ଆଲୋଚନା କରିବା ଓ ମନ୍ତବ୍ୟ ପ୍ରକାଶ କରିବା ସମ୍ଭବପର ନୁହେଁ ।

ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କ ଦୁଇଟି ସନ୍ଦର୍ଭରୁ ଜଣାଯାଏ ଯେ ସେ ତାଙ୍କ ସନ୍ଦର୍ଭ ଦୁଇଟିପାଇଁ 'ମାଦଳା ପାଞ୍ଜି'ର ଯେଉଁ ପାଠ ବ୍ୟବହାର କରିଛନ୍ତି ତାହା ପ୍ରାଚୀ ସମିତି ପ୍ରକାଶିତ 'ମାଦଳା ପାଞ୍ଜି'ର ପାଠଗୁଡ଼ିକଠାରୁ (ଅର୍ଥାତ୍ ୩ଟି ଯାକ ପାଠରୁ) ଯଥେଷ୍ଟ ଭିନ୍ନ।[୧୪] ସେହି ପାଠ ମଧ୍ୟ ଅଦ୍ୟାପି ଅପ୍ରକାଶିତ। (କେତେକ କାରଣରୁ ଉକ୍ତ ପାଠର ପ୍ରମାଣିକତା ସମ୍ବନ୍ଧରେ ମଧ୍ୟ ସନ୍ଦେହ ହୁଏ।) ତେଣୁ ଉପରୋକ୍ତ ମନ୍ତବ୍ୟ 'ମାଦଳା ପାଞ୍ଜି'ର ଏହି ଅପ୍ରକାଶିତ ପାଠ ପ୍ରତି ମଧ୍ୟ ପ୍ରଯୁଜ୍ୟ ନୁହେଁ। (ଡକ୍ଟର ତ୍ରିପାଠୀଙ୍କ ଲେଖାରୁ ଜଣାଯାଏ ଏହି ପାଠ ଉତ୍କଳ ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟରେ ରକ୍ଷିତ)।

ଏଥିରୁ ଏହି ସିଦ୍ଧାନ୍ତରେ ଉପନୀତ ହେଉ ଯେ ପ୍ରାଚୀସମିତି ପ୍ରକାଶିତ 'ମାଦଳା ପାଞ୍ଜି'ର ସମୟ ଖ୍ରୀ.୧୬୩୦ଅ.ର ପରେ ଅର୍ଥାତ୍ ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରେ। 'ମାଦଳା ପାଞ୍ଜି'ର ଏକ ଶୁଦ୍ଧ ସଂସ୍କରଣ ହେଲେ ଏ ବିଷୟରେ ଅଧିକ ଆଲୋକପାତ କରିହେବ।

## ସଙ୍କେତ:

୧. The Journal of Indian History (J.I.H) Vol. XXXI, Part III 'Madala Panji and Pre-Suryavamsi History of Orissa' by D. C. Sircar.
୨. 'ମାଦଳା ପାଞ୍ଜି' (ପ୍ରାଚୀ), ୧୯୪୦, ପୃ.୩୧।
୩. 'ମାଦଳା ପାଞ୍ଜି' (ପ୍ରାଚୀ) ପୃ. ୬୩।
୪. ତତ୍ରୈବ ପୃ. ୩୨-୩୪।
୫. ଓଡ଼ିଆ ସାହିତ୍ୟର କ୍ରମପରିଣାମ, ୨ୟ ଭାଗ, ୧୯୫୩, ପୃ. ୩୬୮।
୬. ତତ୍ରୈବ ପୃ. ୨୨୧।
୭. ଓଡ଼ିଶା ଇତିହାସ, ୧ମ ସଂସ୍କରଣ, ୧୯୪୮, ପୃ. ୩୮୬୯।
୮. (କ) J.I.H., Vol XXXI, Part III- Madalapanji and Pre-Suryavamsi history of Orissa by D. C. Sircar.
(ଖ) ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ (ପ୍ରାଚୀ), ୧୯୩୨, ମୁଖବନ୍ଧ, ପୃ.୨।
(ଗ) 'ମାଦଳାପାଞ୍ଜି' (ପ୍ରାଚୀ) ମୁଖବନ୍ଧ, ପୃ.୨। ଇତ୍ୟାଦି
୯. 'ମାଦଳା ପାଞ୍ଜି' (ପ୍ରାଚୀ) ପୃ. ୩୪ ଓ ୬୩।

୧୦. 'ମାଦଳା ପାଞ୍ଜି' (ପ୍ରାଚୀ) ପୃ. ୬୩ ।

୧୧. Journal of Bihar and Orissa Research Society, Vol XIII Part I, pp.10-17.

୧୨. (କ) ପ୍ରାଚୀନ ଉତ୍କଳ, ୧୯୨୯, ଜଗବନ୍ଧୁ ସିଂହ ।
(ଖ) 'ମାଦଳା ପାଞ୍ଜି' (ପ୍ରାଚୀ), ମୁଖବନ୍ଧ, ପୃ.୩ ।

୧୩. କେଶରୀ ରାଜବଂଶର ବିଶ୍ଳେଷଣ । ଝଙ୍କାର, ୬ଷ୍ଠ ବର୍ଷ, ୧ମ ସଂଖ୍ୟା ।

୧୪. (କ). Jagannath Temple Chronicle. (Proceedings Indian History Congress, 1957)
(ଖ). ଗଜପତି କପିଳେଶ୍ୱର ଦେବଙ୍କ କୌଳିନ୍ୟ । ଝଙ୍କାର, ୧୦ମ ବର୍ଷ, ୩ୟ ସଂଖ୍ୟା ।

[ପ୍ରଥମ ପ୍ରକାଶ, ୧୯୬୧, ଜୁନ୍, 'ଡଗର' ୨୪/୧୨ ସଂଖ୍ୟା ।]



# ମାଦଳାପାଞ୍ଜିର ଐତିହାସିକ ପ୍ରାମାଣିକତା

ଓଡ଼ିଶାର ରାଜନୀତିକ ଇତିହାସର ସଙ୍କଳନରେ ସାଧାରଣତଃ ଅନ୍ୟାନ୍ୟ ଉପାଦାନ ଭିତ୍ତିରେ ସଂଗୃହୀତ ତଥ୍ୟ ଯେତେବେଳେ 'ମାଦଳାପାଞ୍ଜି' ବର୍ଣ୍ଣିତ ବିବରଣର ବିରୋଧ କରେ ସେତେବେଳେ 'ମାଦଳାପାଞ୍ଜି'କୁ ଅପେକ୍ଷାକୃତ କମ୍ ଐତିହାସିକ ପ୍ରାମାଣିକତା ପ୍ରଯୁକ୍ତ ବୋଲି ଧରାଯାଏ ବା 'ମାଦଳାପାଞ୍ଜି' ପରିବେଷିତ ତଥ୍ୟ ସମ୍ପୂର୍ଣ୍ଣରୂପେ ଭ୍ରମମୂଳକ ବୋଲି ଧରାଯାଏ । ଗତ ସଂଖ୍ୟା 'ଡଗର'ରେ (୨୪ବର୍ଷ ୧୨ଶ ସଂଖ୍ୟା) ଲେଖକର ପ୍ରାଚୀ ପ୍ରକାଶିତ 'ମାଦଳାପାଞ୍ଜି'ର 'ରାଜଭୋଗ ଇତିହାସ' ସମ୍ପର୍କୀୟ ଟିପ୍ପଣୀରେ ପ୍ରକାଶିତ "ଭୋଇବଂଶର ନରସିଂହ ଦେବଙ୍କ ପୂର୍ବର ଐତିହାସିକ ପ୍ରାମାଣିକତା ମାଦଳାପାଞ୍ଜିଠାରେ ଆରୋପିତ ହୋଇନପାରେ" ମନ୍ତବ୍ୟକୁ କେହି କେହି ସେହି ଦୃଷ୍ଟିକୋଣର ଓ ମତବାଦର ସମର୍ଥକ ବା ପରିପୋଷକ ରୂପେ ଗ୍ରହଣ କରିଛନ୍ତି । କେବଳ ସେଥିପାଇଁ ହିଁ ଏ ପ୍ରବନ୍ଧର ଅବତାରଣା । କାରଣ ପରୀକ୍ଷା କରି ଦେଖିଲେ ଜଣାଯିବ ଯେ ସମୟ ସମୟରେ 'ମାଦଳାପାଞ୍ଜି' ବର୍ଣ୍ଣିତ ବିବରଣ ସମସାମୟିକ ଅନ୍ୟାନ୍ୟ ଉପାଦାନ ଅପେକ୍ଷା ଅଧିକ ପ୍ରାମାଣିକ । ନିମ୍ନରେ ସେ ସମ୍ପର୍କରେ ସାମାନ୍ୟ ଆଲୋଚନା କରାଯାଉଛି । ଏ ଆଲୋଚନା ପ୍ରସଙ୍ଗରେ ପ୍ରାଚୀ ସମିତି ପ୍ରକାଶିତ 'ମାଦଳାପାଞ୍ଜି'ର 'ରାଜଭୋଗ ଇତିହାସ'କୁ ହିଁ 'ମାଦଳାପାଞ୍ଜି' ନାମରେ ସର୍ବତ୍ର ଗ୍ରହଣ କରାଯିବ ଓ ତାହାହିଁ ଏ ଆଲୋଚନାର ଅନ୍ୟତମ ପ୍ରଧାନ ଉପାଦାନ ।

୧୭ଶ ଶତକର ପ୍ରାରମ୍ଭରେ ରାଜା କେଷୋଦାସଙ୍କ ଜଗନ୍ନାଥ ମନ୍ଦିର ଲୁଣ୍ଠନ ଏକ ସୁବିଦିତ ଘଟଣା । ଏହା ଭୋଇବଂଶର ନରସିଂହ ଦେବଙ୍କ ପୂର୍ବରାଜା ପୁରୁଷୋତ୍ତମ ଦେବଙ୍କ ସମୟରେ ଘଟିଥିଲା । ଏ ସମ୍ପର୍କରେ ପ୍ରସିଦ୍ଧ ଐତିହାସିକ ସାର୍ ଯଦୁନାଥ ସରକାର 'ବାହାରୀସ୍ତାନ' (Baharistan) ନାମକ ମୁସଲମାନ ଇତିହାସରୁ ଯେଉଁ ବିବରଣ ସଂଗ୍ରହ କରିଛନ୍ତି ସେଥିରୁ ଜଣାଯାଏ ଯେ ବର୍ଷାଋତୁ ପ୍ରାରମ୍ଭରେ ଓଡ଼ିଶାର ସୁବାଦାର ହାସିମ୍ ଖାଁ ଓ ତତ୍କାଳୀନ ମୋଗଲ ଶାସନ କାର୍ଯ୍ୟରେ ନିଯୁକ୍ତ ଅନ୍ୟାନ୍ୟ

କର୍ମକର୍ତ୍ତାମାନେ ଖୋର୍ଦ୍ଧା ରାଜା ପୁରୁଷୋତ୍ତମ ଦେବଙ୍କ ବିରୁଦ୍ଧରେ ଅଭିଯାନ କରିବାପାଇଁ ଚକ୍ରାନ୍ତ କଲେ । କିନ୍ତୁ ରାଜା କେଷୋଦାସ ମାରୁ ଏଥିପାଇଁ ଅନ୍ୟମାନଙ୍କ ସହଯୋଗପାଇଁ ଅପେକ୍ଷା କରିବା ଭୀରୁତାର ପରିଚାୟକ ବୋଲି ଭାବିଲେ ଓ ସେ ନିଜେ ଏକାକୀ ଏ କାର୍ଯ୍ୟ କରିବାପାଇଁ ସ୍ଥିର କଲେ । ସେ ଜଗନ୍ନାଥ ଦର୍ଶନ ଛଳନାରେ ସ୍ୱୀୟ ଅନୁଚରମାନଙ୍କ ସହ ପୁରୀ ଯାଇ ମନ୍ଦିରରେ ଦେବଦର୍ଶନ ସାରି ମନ୍ଦିର ବେଢ଼ାର ଭିତରକୁ ଏକ ଦୁର୍ଗରେ ପରିଣତ କରି ମନ୍ଦିରର ଧନରତ୍ନ ଲୁଣ୍ଠନ କରିବାପାଇଁ ଯୋଜନା କଲେ ଓ ଏ ଯୋଜନାକୁ କାର୍ଯ୍ୟରେ ପରିଣତ କଲେ । ଏହି ଖବର ପାଇ ଖୋର୍ଦ୍ଧାରାଜା ପୁରୁଷୋତ୍ତମ ଦେବ ମୌସୁମୀ ପ୍ରବାହ ବନ୍ଦ ହେବା ପୂର୍ବରୁ (ଅର୍ଥାତ୍ ବର୍ଷାଋତୁ ଶେଷ ହେବା ପୂର୍ବରୁ) ଓ ଅନ୍ୟ ମୋଗଲ ସୈନ୍ୟ କେଷୋଦାସଙ୍କୁ ସାହାଯ୍ୟ କରିବାପାଇଁ ଆସିବା ପୂର୍ବରୁ ତାଙ୍କୁ ଉଚିତ ଶାସ୍ତିଦେବା ସଙ୍ଗତ ମନେ କଲେ । ସେ ଖୋର୍ଦ୍ଧାରୁ ୧୦,୦୦୦ ଅଶ୍ୱାରୋହୀ, ୩ବା ୪ଲକ୍ଷ ପଦାତିକ ଏବଂ କେତେକ ରଥ ସହ ଆସି ଦୁର୍ଗରେ ପରିଣତ ହୋଇଥିବା ମନ୍ଦିର ଅବରୋଧ କରିଥିଲେ, ପ୍ରତ୍ୟେକ ରଥରେ ୫୦୦ରୁ ୧୦୦୦ ସୈନ୍ୟ ଆରୋହଣ କରିଥିଲେ ଏବଂ ହଜାରେ ବା ଦୁଇ ହଜାର ଲୋକଙ୍କଦ୍ୱାରା ପ୍ରତ୍ୟେକ ରଥ ଟଣା ଯାଉଥିଲା । ସେ ଏହିପରି ରଥ ୧୦ ବା ୨୦ଟି ଆଣିଥିଲେ ଓ ସେଗୁଡ଼ିକୁ ବାହାର ପାଚିରୀରେ ଲଗାଇରଖି ଭିତରେ ଥିବା କେଷୋଦାସ ଓ ତାଙ୍କର ସୈନ୍ୟମାନଙ୍କର ଅସୁବିଧା ସୃଷ୍ଟି କରିଥିଲେ । କେଷୋଦାସ ଓ ତାଙ୍କର ଲୋକମାନେ ଘରଛାତ ତଳରୁ ଲମ୍ବାଖୁଣ୍ଟ ଆଣି ସେଥିରେ କନା ଗୁଡ଼ାଇ, ଘିଅ ଓ ତେଲ ଢାଳି, ନିଆଁ ଲଗାଇ ରଥସବୁ ଯେତେବେଳେ ପାଚିରୀର ନିକଟବର୍ତ୍ତୀ ହେଲା ସେଥିରେ ନିଆଁ ଲଗାଇଦେଲେ । ଫଳରେ ରଥ ଉପରେ ଥିବା ଶହେ ଦୁଇଶହ ଲୋକ ତତ୍କ୍ଷଣାତ ପୋଡ଼ି ମରିଗଲେ ଓ ଆଉ ଦୁଇଶହ ବା ତିନିଶହ ପରସ୍ପରର ପାଦରେ ଦଳି ହୋଇଗଲେ । ଓଡ଼ିଆମାନେ ବାଧାଦେବାକୁ ଅକ୍ଷମ ହୋଇ ରଥଗୁଡ଼ିକୁ ଛାଡ଼ି ପଳାଇଗଲେ । କେଷୋଦାସ ଓ ତାଙ୍କର ରାଜପୁତ୍ ଅନୁଚରମାନେ ଖୁବ୍ ବୀରତ୍ୱର ସହ ବାଧା ଦେଇଥିଲେ ହେଁ ଏଥିରେ ତାଙ୍କର ବହୁଲୋକ କ୍ଷୟ ହୋଇଥିଲେ ଓ ମାତ୍ର ୪୦୦ ସୈନ୍ୟ ତାଙ୍କ ସହ ଦୁର୍ଗରେ ପରିଣତ ହୋଇଥିବା ମନ୍ଦିର ବେଢ଼ାରେ ରହିଲେ... ଇତ୍ୟାଦି (ଦ୍ରଷ୍ଟବ୍ୟ-Journal of Bihar & Orissa Research Society Vol. VII, 1921, page. 53-55) ।

ପୁନଶ୍ଚ ଏହି ରଥଗୁଡ଼ିକ ସମ୍ବନ୍ଧରେ ପାଦଟୀକାରେ ସରକାର ମହାଶୟ ଉଲ୍ଲେଖ କରିଅଛନ୍ତି ଯେ- ମୌଲାନା ଶେଖ୍ ମୁବାରକ୍ ତାଙ୍କର ଅବରୋଧ ବିଷୟକ ବିବରଣୀରେ (Masnavi) ଖୋର୍ଦ୍ଧା ରାଜା ୫୦୦ରୁ ଊର୍ଦ୍ଧ୍ୱ ରଥ ଆଣିଥିବାର କହନ୍ତି । ଏ ସମ୍ବନ୍ଧରେ

ସରକାର ମହାଶୟ ସନ୍ଦେହ ପ୍ରକାଶ କରି ଏହା ଏକ ଅବିଶ୍ୱାସ୍ୟ ସଂଖ୍ୟା ବୋଲି ମନ୍ତବ୍ୟ ପ୍ରକାଶ କରିଅଛନ୍ତି । ପୁନଶ୍ଚ ସେ ଉଲ୍ଲେଖ କରିଅଛନ୍ତି ଯେ- ମୌଲାନା ସାହେବଙ୍କ ବିବରଣ ଅନୁସାରେ ପ୍ରତ୍ୟେକ ରଥ କାଠରେ ନିର୍ମିତ ହୋଇଥିଲା, ଡେଙ୍ଗାଘର ପରି ଦେଖାଯାଉଥିଲା ଏବଂ ପ୍ରତ୍ୟେକ ରଥର ୧୦୦୦ ଲେଖାଏ ଗୋଡ଼ (ଚକ) ଥିଲା । ପ୍ରତ୍ୟେକ ରଥ ୧୦୦୦ ଲୋକଙ୍କଦ୍ୱାରା ଆଗକୁ ଟଣା ଯାଉଥିଲା (ତତ୍ରୈବ ପୃ.୫୩) । ଜାହାଙ୍ଗୀରଙ୍କର ଆତ୍ମଜୀବନୀ 'ତୁଜୁକ-ଇ-ଜାହାଙ୍ଗୀରୀ'ରେ (Tuzuk-i-Jahangiri) ମଧ୍ୟ ଅନୁରୂପ ବିବରଣୀ ଅଛି ବୋଲି ସରକାର ମହାଶୟଙ୍କ ଲେଖାରୁ ସୂଚନା ମିଳେ ।

ଅନ୍ୟପକ୍ଷରେ ଭାରତୀୟ ଯୁଦ୍ଧ ସମ୍ପର୍କୀୟ ଆଲୋଚନା ପ୍ରସଙ୍ଗରେ ବିମଳକାନ୍ତି ମଜୁମଦାର ରଥର ବ୍ୟବହାର ସମ୍ପର୍କରେ କହନ୍ତି, "The non-employment of war chariots in the various compaigns of Harsa and the importance attached to the elephant corps and camel fources would suggest that the chariots as one of the offencive arms of Ancient India was coming .... to play an insignificant part in the seventh century A. D. and was about to be eliminated soon altogather." (The Military System of Ancient India., page 127-128) ଅବଶ୍ୟ ସେ ବିଲ୍ (S. Beal)ଙ୍କ ଅନୁବାଦ ଉପରେ ନିର୍ଭର କରି ହୁଏନ୍‌ସାଂଙ୍କ ପ୍ରଦତ୍ତ ୨ୟ ପୁଲକେଶୀଙ୍କ ସେନାରେ ରଥ ଥିବାର ବର୍ଣ୍ଣନାକୁ ଭିତ୍ତି କରି କହନ୍ତି- "But it would be incorrect to aver that its use stopped with the close of 7th century." (Ibid p.128).

କିନ୍ତୁ V. R. R. Dikhitar ୱାଟରସ୍(Watters)ଙ୍କ ଅନୁବାଦ ଅବଲମ୍ବନରେ ହୁଏନ୍‌ସାଂଙ୍କ ପ୍ରଦତ୍ତ ୨ୟ ପୁଲକେଶୀଙ୍କ ସେନାରେ ରଥ ଥିବା ବର୍ଣ୍ଣନାକୁ ଅସ୍ୱୀକାର କରନ୍ତି । ସେ ବାଣଙ୍କ ହର୍ଷଚରିତ, ସପ୍ତମ ଶତାବ୍ଦୀ ମଧ୍ୟଭାଗର କୁରମ୍ପଲ୍ଲବ ଦାନପଟା (Kuram Pallav Grant of 650 A.D.) ଓ ଦକ୍ଷିଣଭାରତର ଚୋଳରାଜାମାନଙ୍କ ଇତିହାସରେ ରଥର ଉଲ୍ଲେଖ ନଥିବାରୁ ସପ୍ତମଶତକରେ ରଥର ବ୍ୟବହାର ନଥିଲା ବୋଲି ମତ ଦେଇ କହନ୍ତି- "The chariots as instruments of war are not mentioned- a clear indication that they must have become obselete by that time." (War in Ancient India., p.26)

ଡକ୍ଟର ଚକ୍ରବର୍ତ୍ତୀ ମଧ୍ୟ ଏ ସମ୍ପର୍କରେ କହନ୍ତି- "The final dissappearance of chariots from Indian Military System probably came about in the eight century A.D." (ଦ୍ରଷ୍ଟବ୍ୟ- The Art of war in Ancient India., p.26)

ଏସବୁରୁ ୧୭ଶ ଶତକର ପ୍ରାରମ୍ଭରେ ବା କେଷୋଦାସ ଜଗନ୍ନାଥ ମନ୍ଦିର ଲୁଣ୍ଠନ କରିବା ସମୟରେ ଯୁଦ୍ଧରଥର ବ୍ୟବହାର ନଥିଲା ବୋଲି ସିଦ୍ଧାନ୍ତ କରାଯାଇପାରେ ।

କେଷୋଦାସଙ୍କ ଜଗନ୍ନାଥ ମନ୍ଦିର ଲୁଣ୍ଠନ ସମ୍ପର୍କରେ 'ମାଦଳାପାଞ୍ଜି'ରୁ ମିଳୁଥିବା ବିବରଣ ନିମ୍ନରେ ଉଦ୍ଧାର କରାଗଲା ।

"ଏ ମହାରାଜାଙ୍କ ଯାତ୍ରାପଣେ କେସୋମାରୁ ଆସି ଗୁଣ୍ଡିଚାଯାତ୍ରା ଦେଖି ଦୁଇ ଦେଉଳ ଧଇଲା । ପରମେଶ୍ୱର ଗୁଣ୍ଡିଚାଘରେ ବିଜେ କରିଥିଲେ । ତିନିରଥେ ପୋଡ଼ିଦେଲା । ପରମେଶ୍ୱରଙ୍କୁ ଚଉଦୋଳାରେ ବିଜେ କରାଇ କାହାରିଙ୍କି କାନ୍ଧେ ଦେଇ ବଡ଼ଦେଉଳେ ବିଜେ କରାଇଲେ । ମାସେ ପରିଯନ୍ତେ ଦରବନ୍ଧାରେ ରହିଲା । ପରମେଶ୍ୱରଙ୍କୁ ଶୀତଳ ଭୋଗ ମୁଣୋହି ହୋଉଥିଲେ । ରାଜାଙ୍କ ସଙ୍ଗେ ପୀରତି ହୋଇଗଲା । ଗୁଣ୍ଡିଚାଘରଠାରେ ଅନେକ ମାଇଲା ।"

ବର୍ତ୍ତମାନ ତିନୋଟି ବିଷୟ ବିଚାର୍ଯ୍ୟ:-

କ- ମୁସଲମାନ ଇତିହାସ ଅନୁସାରେ ପୁରୁଷୋତ୍ତମଦେବ ଯୁଦ୍ଧ କରିବା ପାଇଁ ଖୋର୍ଦ୍ଧାରୁ ଆଣିଥିବା ୧୦ଟି ବା ୧୨ଟି ଯୁଦ୍ଧରଥ (ମୌଲାନା ଶେଖ ମୁବାରକ୍‌ଙ୍କ ମତାନୁଯାୟୀ ୫୦୦ରୁ ଊର୍ଦ୍ଧ୍ୱ ଯୁଦ୍ଧରଥ) କେଷୋଦାସ ପୋଡ଼ିଦେଇଥିଲା ।

ଖ- ଐତିହାସିକ ଓ ଗବେଷକମାନଙ୍କ ମତାନୁସାରେ ୮ମ ଶତକରେ ଭାରତରେ ଯୁଦ୍ଧରଥର ବ୍ୟବହାର ଲୋପ ପାଇଥିଲା ଅର୍ଥାତ୍ ୧୭ଶ ଶତକର ପ୍ରାରମ୍ଭରେ କେଷୋଦାସଙ୍କ ଜଗନ୍ନାଥ ମନ୍ଦିର ଲୁଣ୍ଠନ ସମୟରେ ଯୁଦ୍ଧରଥର ପ୍ରଚଳନ ନଥିଲା ।

ଗ- 'ମାଦଳାପାଞ୍ଜି' ଅନୁସାରେ କେଷୋଦାସ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ରଥଯାତ୍ରାର ବା ଗୁଣ୍ଡିଚାଯାତ୍ରାର ତିନିରଥ ପୋଡ଼ି ଦେଇଥିଲା ।

ଏଥିମଧ୍ୟରୁ ମାଦଳାପାଞ୍ଜିରୁ ସଂଗୃହୀତ ତଥ୍ୟ ଓ ମୁସଲମାନ ଇତିହାସରୁ ସଂଗୃହୀତ ତଥ୍ୟ ଦୁଇଟିଯାକ ଏକାବେଳକେ ସତ୍ୟ ହେବାର ସମ୍ଭାବନା ନାହିଁ, ତା'ର କୌଣସି ସୂଚନା ମଧ୍ୟ ଉଭୟ ବିବରଣରୁ ମିଳେ ନାହିଁ, ମୋଟ ଉପରେ ଉଭୟ ତଥ୍ୟ ପରସ୍ପରର ବିରୋଧ କରେ ଓ ଏଥିମଧ୍ୟରୁ ଗୋଟିଏ ସତ୍ୟ; ଅନ୍ୟଟି ମିଥ୍ୟା । ଏହା ସହ ଐତିହାସିକ ଓ ଗବେଷକମାନଙ୍କ ରଥ ସମ୍ବନ୍ଧୀୟ ମତାମତକୁ ବିଚାରର ପରିସର ମଧ୍ୟକୁ ଆଣିଲେ ମୁସଲମାନ ଇତିହାସୋକ୍ତ ବିବରଣକୁ ମିଥ୍ୟା ବୋଲି ଓ 'ମାଦଳାପାଞ୍ଜି' ବର୍ଣ୍ଣିତ ବିବରଣକୁ ସତ ବୋଲି ଗ୍ରହଣ କରିବାକୁ ହୁଏ ।

ବୋଧହୁଏ ନିଜ ଚକ୍ଷୁରେ ଏସବୁ ଦେଖି ନଥିବା ମୁସଲମାନ ଲେଖକମାନେ

(ନିଶ୍ଚୟଭାବରେ ଜାହାଙ୍ଗୀର ଏ ଘଟଣା ନିଜ ଚକ୍ଷୁରେ ଦେଖି ନଥିଲେ) ଏ ସମ୍ବନ୍ଧୀୟ ବିବରଣ ପାଇଁ ଅନ୍ୟ ଉପରେ ନିର୍ଭର କରିଥିଲେ । ଫଳରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନି ଠାକୁରଙ୍କ ତିନିରଥ ପୋଡ଼ାହେବା ଘଟଣା ଅବଶେଷରେ ମୌଲାନା ଶେଖ୍ ମୁବାରକ୍‌ଙ୍କର ଖୋର୍ଦ୍ଧାରାଜା ମନ୍ଦିର ଅବରୋଧପାଇଁ ଆଣିଥିବା ୫୦୦ରୁ ଅଧିକ ଯୁଦ୍ଧରଥ ପୋଡ଼ାହେବାରେ ରୂପାୟିତ ହୋଇଅଛି । ଏହାକୁ ହିଁ କହନ୍ତି ତିଳକୁ ତାଳ କରିବା ଅର୍ଥାତ୍ ପ୍ରକାରରେ ପରିବର୍ତ୍ତିତ ଓ ଆକାରରେ ପରିବର୍ଦ୍ଧିତ କରିବା ।

'ବାହାରୀସ୍ତାନ' ଅନୁଯାୟୀ ବର୍ଷାକାଳ ପ୍ରାରମ୍ଭରେ ହାସିମ୍ ଖାଁ ପ୍ରଭୃତି ଖୋର୍ଦ୍ଧାରାଜା ପୁରୁଷୋତ୍ତମଦେବଙ୍କ ବିରୁଦ୍ଧରେ ଚକ୍ରାନ୍ତ କରୁଥିଲେ । ପୁନଶ୍ଚ ପୁରୁଷୋତ୍ତମଦେବ କେଷୋଦାସଙ୍କୁ ବର୍ଷାଋତୁ ଶେଷ ହେବା ପୂର୍ବରୁ (ମୌସୁମୀ ପ୍ରବାହ ବନ୍ଦ ହେବା ପୂର୍ବରୁ) ଉଚିତ ଶାସ୍ତି ଦେବାପାଇଁ ସଙ୍ଗତ ମନେ କରିଥିଲେ । ଏଥିରୁ ଏହା ସ୍ପଷ୍ଟ ଯେ କେଷୋଦାସ ବର୍ଷାଦିନରେ ଜଗନ୍ନାଥ ମନ୍ଦିର ଲୁଣ୍ଠନ କରିଥିଲେ । ତେଣୁ ରଥଯାତ୍ରା ସମୟରେ କେଷୋଦାସ ମନ୍ଦିର ଲୁଣ୍ଠନ କରିଥିବାର ପ୍ରକାରାନ୍ତରରେ ପ୍ରମାଣିତ ହୁଏ । କାରଣ କେଷୋଦାସ ଏଥିପାଇଁ ରଥଯାତ୍ରା ପରି ସମୟକୁ ପ୍ରଶସ୍ତ ମନେ କରିଥିବେ ।

ମୁସଲମାନ ଇତିହାସରୁ ବିଶେଷଭାବେ ମୌଲାନା ଶେଖ ମୁବାରକଙ୍କ ବିବରଣୀରୁ ରଥ, ତାର ଆରୋହୀ ଓ ତାର ଚାଳନା ସମ୍ବନ୍ଧରେ ଯେଉଁ ଚିତ୍ର ମିଳେ ସେଥିରୁ ଅନୁମିତ ହୁଏ ଯେ ଏହା ରଥଯାତ୍ରାରେ ବ୍ୟବହୃତ ହେଉଥିବା ଜଗନ୍ନାଥ ପ୍ରଭୃତିଙ୍କ ରଥ । ଏହିପରି ରଥ ଯୁଦ୍ଧରେ ବ୍ୟବହୃତ ହେବାର ପ୍ରମାଣ ମିଳେ ନାହିଁ । ବ୍ୟବହୃତ ହେବା ମଧ୍ୟ ଅସମ୍ଭବ ।

ପୁନଶ୍ଚ ସେ ସମୟରେ ଯୁଦ୍ଧରଥର ବ୍ୟବହାର ଥିଲାବୋଲି ଯୁକ୍ତି ଛଳରେ ଧରିନେଲେ ମଧ୍ୟ ମୌଲାନା ସାହେବଙ୍କ ବର୍ଣ୍ଣିତ ରଥଗୁଡ଼ିକ ବର୍ଷାକାଳରେ ଖୋର୍ଦ୍ଧାରୁ ପୁରୀକୁ ଆଣିବା ଅସୁବିଧାଜନକ କାହିଁକି ଏକପ୍ରକାର ଅସମ୍ଭବ ।

ମୋଟ ଉପରେ ସିଦ୍ଧାନ୍ତ କରାଯାଇପାରେ ଏ ସମ୍ବନ୍ଧରେ ମୁସଲମାନ ଇତିହାସ ତୁଳନାରେ 'ମାଦଳାପାଞ୍ଜି' ଅଧିକ ପ୍ରାମାଣିକ । ଅବଶ୍ୟ ଏ ପ୍ରସଙ୍ଗରେ "ଦୁଇ ଦେଉଳ ଧଇଲା" ପ୍ରଭୃତି 'ମାଦଳାପାଞ୍ଜି' ବର୍ଣ୍ଣନାର ସମାଧାନ ଚିନ୍ତା ଓ ଗବେଷଣା ସାପେକ୍ଷ ହୋଇପାରେ । କିନ୍ତୁ 'ମାଦଳାପାଞ୍ଜି' ଓ ମୁସଲମାନ ଇତିହାସ ଉଭୟର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଓ ପର୍ଯ୍ୟାଲୋଚନା କରି କେଷୋଦାସଙ୍କ ଜଗନ୍ନାଥ ମନ୍ଦିର ଲୁଣ୍ଠନ ସମ୍ବନ୍ଧୀୟ ଇତିହାସ ସଙ୍କଳିତ ହେବା ଉଚିତ । ଏ ପ୍ରସଙ୍ଗରେ କୌଣସି ଗୋଟିଏ ମଧ୍ୟ ହେୟ ନୁହେଁ ।

କିନ୍ତୁ ଏହି ଘଟଣା ସମ୍ପର୍କରେ ଐତିହାସିକ ରାଖାଲଦାସ ବନ୍ଦ୍ୟୋପାଧ୍ୟାୟ ସମ୍ପୂର୍ଣ୍ଣ

ଭାବେ ମୁସଲମାନ ଇତିହାସ ଉପରେ ନିର୍ଭର କରିଥିବାରୁ ଭ୍ରମ କରିଅଛନ୍ତି । (ଦ୍ରଷ୍ଟବ୍ୟ: 'History of Orissa', pp.33-34 by R. D. Banarji) ଡକ୍ଟର ମହତାବ ମଧ୍ୟ ଯେତେଦୂର ସମ୍ଭବ ରାଖାଲବାବୁଙ୍କ ଉପରେ ନିର୍ଭର କରିଥିବାରୁ ଏହି ପ୍ରମାଦକୁ ପ୍ରଶ୍ରୟ ଦେଇଅଛନ୍ତି । (ଦ୍ରଷ୍ଟବ୍ୟ: ଓଡ଼ିଶା ଇତିହାସ, ପୃ.୧୯୭ ହରେକୃଷ୍ଣ ମହତାବ) ।

ଏଠାରେ କହିବାର କଥା ଭୋଇବଂଶର ନରସିଂହଦେବଙ୍କ ପୂର୍ବରୁ ରାଜନୀତିକ ଇତିହାସ ରଚନାରେ 'ମାଦଳାପାଞ୍ଜି' ବର୍ଣ୍ଣିତ ବିବରଣକୁ ସମସାମୟିକ ଇତିହାସ ଯେଉଁଠି ବିରୋଧ କରୁଛି ସେଠାରେ 'ମାଦଳାପାଞ୍ଜି'ର ପ୍ରାମାଣିକତା ତୁଳନାତ୍ମକ ଭାବରେ କମ୍ ନୁହେଁ ବରଂ ସମୟେ ସମୟେ ଅଧିକ ବୋଲି ଏ ଲେଖକ ଅବହିତ । (ଏ ସମ୍ପର୍କରେ ସହକାର ୨୫ଶ ଭାଗ ୪ର୍ଥ ସଂଖ୍ୟାରେ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ଲିଖିତ ଓଡ଼ିଶାରେ 'ରାଜା ମାନସିଂ' ଶୀର୍ଷକ ପ୍ରବନ୍ଧ ଦ୍ରଷ୍ଟବ୍ୟ ।)

ପୁନଶ୍ଚ ନରସିଂହଦେବଙ୍କ ପୂର୍ବର ରାଜନୀତିକ ଇତିହାସ ରଚନାରେ ସମୟସମୟରେ 'ମାଦଳାପାଞ୍ଜି' ବର୍ଣ୍ଣିତ ବିବରଣକୁ ସମସାମୟିକ ଇତିହାସ ସମର୍ଥନ କରୁଥିବାର ମଧ୍ୟ ଲେଖକ ଲକ୍ଷ୍ୟ କରିଛି । କିନ୍ତୁ ଏ ସବୁ ସତ୍ତ୍ୱେ ନରସିଂହଦେବଙ୍କ ପୂର୍ବର ରାଜନୀତିକ ଇତିହାସ ସଂକଳନରେ 'ମାଦଳାପାଞ୍ଜି'ର ବିବରଣ ଅଭ୍ରାନ୍ତ ବୋଲି କୁହାଯାଇ ନପାରେ । ଅନ୍ୟପକ୍ଷରେ ସେଥିରେ ପ୍ରମାଦ ଥିବାର ପ୍ରମାଣ କରାଯାଇପାରେ । ତାହାର କାରଣ ମଧ୍ୟ ଅଛି । ପର ପ୍ରବନ୍ଧରେ ଏ ସମ୍ବନ୍ଧରେ ଆଲୋଚନା କରାହେବ । କିନ୍ତୁ ମୂଳରୁ ଲେଖକ ଏଠାରେ ତାର କହିବାର କଥା ସ୍ପଷ୍ଟକରି ଦେଉଅଛି ଯେ- ଭୋଇ ନରସିଂହଙ୍କ ପୂର୍ବର ଐତିହାସିକ ପ୍ରମାଣିକତା 'ମାଦଳାପାଞ୍ଜି'ଠାରେ ଆରୋପିତ ହୋଇ ପାରିବ ନାହିଁ ବୋଲି ଲେଖକ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲା ସେଥିରେ କେବଳ ରାଜନୀତିକ ଇତିହାସ ନୁହେଁ ତାହାସହ ଭାଷା ଓ ସାହିତ୍ୟର ଇତିହାସ ବିଷୟ ମଧ୍ୟ ସୂଚିତ ହୋଇଥିଲା । ସେଥିଲାଗି ସର୍ବପ୍ରଥମେ ଲେଖକ ସୂଚାଇଥିଲା ଯେ- "ଓଡ଼ିଶାର ରାଜନୀତି, ସାହିତ୍ୟ ଓ ଭାଷା ସମ୍ବନ୍ଧୀୟ ଐତିହାସିକ ଆଲୋଚନାରେ 'ମାଦଳାପାଞ୍ଜି' ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି ।"

(ଡଗର, ୨୫ଶ ବର୍ଷ, ୪ର୍ଥ ସଂଖ୍ୟା, ଅକ୍ଟୋବର, ୧୯୬୧ ।)



# 'ମାଦଳାପାଞ୍ଜି'ର ନାମକରଣ

ଓଡ଼ିଶାର ରାଜନୀତି, ସାହିତ୍ୟ ଓ ଭାଷା ସମ୍ବନ୍ଧୀୟ ଐତିହାସିକ ଆଲୋଚନାରେ 'ମାଦଳା ପାଞ୍ଜି' ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ସେଥିପାଇଁ କେବେଠାରୁ ଧାରାବାହିକ ଭାବେ 'ମାଦଳା ପାଞ୍ଜି' ଲେଖା ଆରମ୍ଭ ହେଲା, ତା' ଜାଣିବାର ଆବଶ୍ୟକତା ରହିଛି ଓ ବଳିଷ୍ଠ ଯୁକ୍ତି-ଭିତ୍ତିରେ ନାନାଦି ମତ ମଧ୍ୟ ଦିଆଯାଇଛି । ଅପର ପକ୍ଷରେ 'ମାଦଳା ପାଞ୍ଜିର ନାମକରଣ ସମ୍ପର୍କରେ ମଧ୍ୟ ଜାଣିବାର ଆବଶ୍ୟକତା ରହିଛି ଓ ସେଥିପାଇଁ ଦୁଇଗୋଟି ମତ ମଧ୍ୟ ଦିଆଯାଇଛି । ଏହି ମତଦ୍ୱୟ ମଧ୍ୟରୁ ଏକର ଖଣ୍ଡନପୂର୍ବକ ଅନ୍ୟଟିର ମଣ୍ଡନ ଅଭିପ୍ରାୟରେ ପ୍ରସ୍ତୁତ ପ୍ରବନ୍ଧର ଅବତାରଣା ନୁହେଁ, ବରଂ ସ୍ୱତନ୍ତ୍ର ଏକ ତୃତୀୟ ମତର ସମ୍ଭାବନା ବିଚାର କରିବାହିଁ ଏ ପ୍ରବନ୍ଧର ମୁଖ୍ୟ ଉଦ୍ଦେଶ୍ୟ । ପୁନଶ୍ଚ, ଏହି ତୃତୀୟ ମତ ବ୍ୟକ୍ତ କରିବା ପୂର୍ବରୁ ଆଲୋଚନାର ମାର୍ଗ ଅଧିକ ସୁଗମ କରିବାପାଇଁ ପୂର୍ବୋକ୍ତ ଦୁଇଟିଯାକ ମତର ସଂକ୍ଷିପ୍ତ ପରିଚିତିର ଆବଶ୍ୟକତା ସ୍ୱୀକାର୍ଯ୍ୟ । ନିମ୍ନରେ ତାହାହିଁ କରାଯାଉଛି ।

ପ୍ରଥମ ମତ:- ଏହି ମତ ଶ୍ରୀ ମନମୋହନ ଚକ୍ରବର୍ତ୍ତୀଙ୍କ ଦ୍ୱାରା ୧୯୧୬ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ହୋଇଅଛି । ସେ କହନ୍ତି ଯେ, 'ମାଦଳା' ଶବ୍ଦଟି 'ମୁଦଳ' ଶବ୍ଦରୁ ଆସିଅଛି । 'ମୁଦଳ' ଶବ୍ଦର ଅର୍ଥ ହେଉଛି ମୁଦି (ମୁଦ୍ରିକା) ଦ୍ୱାରା ସିଲ୍ କରାଯାଇଥିବା ବା ମୁଦ ଦିଆଯାଇଥିବା - ଯେପରି ଜଉମୁଦ ଦିଆଯାଇଥିବା (Sealed with mudi or ring) । ଅଭିଲେଖମାନଙ୍କରେ 'ମୁଦଳ' ଶବ୍ଦ ପ୍ରୟୋଗ ହୋଇଥିବାର ଉଦାହରଣ ଏଥି ସହତ ଦେଇ ସେ ସ୍ୱୀୟ ମତକୁ ବଳିଷ୍ଠ ଭିତ୍ତିଭୂମି ଉପରେ ପ୍ରତିଷ୍ଠା କରିବାର ପ୍ରଚେଷ୍ଟା କରିଛନ୍ତି । ଅଭିଲେଖମାନଙ୍କରେ 'ମୁଦଳ' ଶବ୍ଦ ନିମ୍ନଲିଖିତ ରୂପରେ ବ୍ୟବହୃତ ହୋଇଅଛି ଯଥା-

(କ) "ବୈଦି-ମହାସେନାପତି-ମୁଦଲେନ"[୧]

(ଖ) "ଅବଧାରିତ-ମୁଦଲେ"[୨]

(ଗ) "ହଲି ପ୍ରହ୍ଲାଦ-ମୁଦଲେନ"[୩]

ତତ୍ପରେ ସେ ନିଜ ମତକୁ ଅଧିକ ବଳିଷ୍ଠ କରିବା ଉଦ୍ଦେଶ୍ୟରେ ଲେଖିଛନ୍ତି ଯେ, ପ୍ରତିଦିନର ସେବାପୂଜା ପରେ ଜଗନ୍ନାଥ ମନ୍ଦିରର ବନ୍ଦ ହୋଇଥିବା ଦ୍ୱାରକୁ ମୁଦଦେବା ବା ସିଲ୍ କରିବା ଲୋକର ବା ନିଯୋଗର ନାମ 'ମୁଦ୍ରସ୍ତ' (ଯେଉଁ ଶବ୍ଦଟି ମୁଦ୍ରା ଶବ୍ଦରୁ ସୃଷ୍ଟ । ଏହିପରି ଭାବରେ ଅଭିଲେଖମାନଙ୍କରେ 'ମୁଦଳ' ଶବ୍ଦର ବା ତାହାର ରୂପାନ୍ତର ବିଶେଷର ପ୍ରୟୋଗ ଓ 'ମୁଦ୍ରସ୍ତ' ସହ ତା'ର ତୁଳନାରୁ ସେ 'ମୁଦଳ' ଶବ୍ଦରୁ 'ମାଦଳା' ଶବ୍ଦ ସୃଷ୍ଟି ହୋଇଥିବାର ସିଦ୍ଧାନ୍ତ କରିଅଛନ୍ତି । ସୁତରାଂ ତାଙ୍କ ମତ ଅନୁଯାୟୀ 'ମାଦଳା ପାଞ୍ଜି'ର ଅର୍ଥ ହେବ- ରାଜାମାନଙ୍କ ଆଦେଶର କ୍ରମାନୁଯାୟୀ ସଂଗ୍ରହ ବା ରାଜାମାନଙ୍କ ଆଦେଶରେ ଲିଖିତ ହେଉଥିବା ସମୟାନୁସାରୀ ଇତିହାସ ବା ବିବରଣୀ (a chronicle of royal orders)[୪] ଅନ୍ୟ କଥାରେ, ପୂର୍ବେ ରାଜାମାନଙ୍କ ଆଦେଶନାମାର ତଳେ ରାଜାଙ୍କ ସିଲ୍ ମୋହର ବା ମୁଦ ଦିଆଯାଉଥିଲା । ସେହିସବୁ ଆଦେଶମାନଙ୍କର ଏକ ସଙ୍କଳନ ବା ସେହି ଆଦେଶଦ୍ୱାରା ଯେଉଁ ପାଞ୍ଜି ଲିଖିତ ହୋଇଥିଲା, ସେହି ପାଞ୍ଜି ହେଉଛି 'ମାଦଳାପାଞ୍ଜି' । ଏହି ମତ ବର୍ତ୍ତମାନ ସାଧାରଣରେ ଅପ୍ରଚଳିତ ।

ଦ୍ୱିତୀୟ ମତ- ବୋଧହୁଏ ପ୍ରଥମେ ରାୟବାହାଦୂର ରମାପ୍ରସାଦ ଚନ୍ଦଙ୍କ ଦ୍ୱାରା ଏହି ମତ ୧୯୨୭ ଖ୍ରୀଷ୍ଟାବ୍ଦରେ ପ୍ରଦତ୍ତ ହେଲା । ସେ କହନ୍ତି, 'ମାଦଳା' ହେଉଛି ଏକ ପ୍ରକାର ବାଦ୍ୟଯନ୍ତ୍ର (drum) । ଜଗନ୍ନାଥ ମନ୍ଦିରରେ ଥିବା ତାଳପତ୍ର ପାଞ୍ଜିଗୁଡ଼ିକ ଉକ୍ତ ଭାରତୀୟ ବାଦ୍ୟଯନ୍ତ୍ରର ସଦୃଶ ବଡ଼ ବଡ଼ ଗୋଲାକାର ବିଡ଼ାରେ ବନ୍ଧାଯାଉଥିବାରୁ ତାହା ମାଦଳାପାଞ୍ଜି ନାମରେ କଥିତ ହୁଏ । ଏହିପରି ପ୍ରତ୍ୟେକ 'ମାଦଳା' ବା ବାଦ୍ୟଯନ୍ତ୍ର ସଦୃଶ ବିଡ଼ାରେ ଅନେକ ଭିନ୍ନ ଭିନ୍ନ ପାଞ୍ଜି ବା ପାଣ୍ଡୁଲିପି ଥାଏ ।[୫]

ପରବର୍ତ୍ତୀ କାଳର ଆଲୋଚକ ଜଗବନ୍ଧୁ ସିଂହ[୬], ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି[୭] ଓ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ[୮] ପ୍ରଭୃତି ଏ ମତର ସମର୍ଥନ କରିଅଛନ୍ତି । ଏମାନଙ୍କ ସମର୍ଥନ ଫଳରେ ମତଟି ବିଶେଷ ଭାବେ ପ୍ରଚାରିତ ହୋଇଅଛି ଓ ଏହାହିଁ ବର୍ତ୍ତମାନର ପ୍ରଚଳିତ ମତ । ପରବର୍ତ୍ତୀ କାଳର ଏହି ଆଲୋଚକମାନେ ଏ ମତର ସଂସ୍କାର ସାଧନ ପୂର୍ବକ 'ମର୍ଦ୍ଦଳ' (ଭାରତୀୟ ବାଦ୍ୟଯନ୍ତ୍ର ବିଶେଷ) ଶବ୍ଦରୁ 'ମାଦଲା' ଓ 'ମାଦଳା' ଶବ୍ଦଦ୍ୱୟର ଉତ୍ପତ୍ତି ହୋଇଥିବାର ପ୍ରକାଶ କରିଅଛନ୍ତି ।

ବର୍ତ୍ତମାନ ପ୍ରସ୍ତୁତ ପ୍ରବନ୍ଧର ତୃତୀୟ ମତଟିର ଆଲୋଚନା କରାଯାଉ । ଐତିହାସିକ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁ ଓଡ଼ିଶାରେ ମିଳୁଥିବା ଅଭିଲେଖମାନଙ୍କରେ ବ୍ୟବହୃତ ତେଲୁଗୁ ଶବ୍ଦମାନଙ୍କର ଏକ ତାଲିକା ପ୍ରସ୍ତୁତି ପ୍ରସଙ୍ଗରେ ଅଭିଲେଖମାନଙ୍କରେ

'ମୋଦଲି' ଓ 'ମୋଦଲୁଗା' ନାମକ ଦୁଇଟି ତେଲୁଗୁ ଶବ୍ଦର ବହୁଳ ବ୍ୟବହାର ଥିବାର ପ୍ରକାଶ କରିଅଛନ୍ତି ।[୯] ଯେତେଦୂର ମନେହୁଏ, ଏହି 'ମୋଦଲି' ବା 'ମୋଦଲୁଗା' ଶବ୍ଦଦ୍ୱୟ ମଧ୍ୟରୁ ଗୋଟିଏ ଶବ୍ଦରୁ 'ମାଦଳା' ଶବ୍ଦର ସୃଷ୍ଟି ସମ୍ଭବ ହୋଇଛି ।

'ମୋଦଲି' ଶବ୍ଦର ଅର୍ଥ- ପ୍ରଥମ (the first)

'ମୋଦଲୁଗା' ଶବ୍ଦର ଅର୍ଥ- ଆରମ୍ଭରୁ (from the beginning)[୧୦]

'ମାଦଳା' ଶବ୍ଦର ଜନକରୂପେ ଏହି ଉଭୟ ଶବ୍ଦ ମଧ୍ୟରୁ 'ମୋଦଲି' ଶବ୍ଦକୁ ଗ୍ରହଣ କଲେ 'ମାଦଳାପାଞ୍ଜି'ର ଅର୍ଥ ହେବ-

(୧) ପ୍ରଥମେ ଯେଉଁ ପାଞ୍ଜି ଲିଖିତ ହୋଇଥିଲା ବା ହେଲା, ଅଥବା (୨) ଯେଉଁ ପାଞ୍ଜିରେ ପ୍ରଥମରୁ ବା ମୂଳରୁ ସମସ୍ତ ଘଟଣାର ସଙ୍କଳନ କରାଯାଇଛି ।

'ମାଦଳା' ଶବ୍ଦର ଜନକରୂପେ 'ମୋଦଲୁଗା' ଶବ୍ଦକୁ ଗ୍ରହଣ କଲେ 'ମାଦଳାପାଞ୍ଜି'ର ଅର୍ଥ ହେବ-

(୨) ପ୍ରଥମରୁ ଯେଉଁ ପାଞ୍ଜି ଲେଖା ହୋଇ ଆସୁଛି ବା (୨) ପ୍ରଥମରୁ ବା ଆରମ୍ଭରୁ (ମୂଳରୁ) ସମସ୍ତ ଘଟଣାର ବିବରଣ ଯେଉଁ ପାଞ୍ଜିରେ ଲେଖା ହୋଇଅଛି ।

ବର୍ତ୍ତମାନ ପ୍ରଚଳିତ ପ୍ରାଚୀ ସମିତି-ପ୍ରକାଶିତ 'ମାଦଳା ପାଞ୍ଜି'ରେ ଆରମ୍ଭରୁ ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗର ରାଜାମାନଙ୍କ ନାମ ଓ ସେମାନଙ୍କ ସମ୍ପର୍କୀୟ କେତେକ ଘଟଣାର ଉଲ୍ଲେଖ ରହିଅଛି । ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗର ରାଜାମାନଙ୍କ ନାମ ଓ ରାଜତ୍ୱକାଳ ବ୍ୟତୀତ ସେମାନଙ୍କ ସମ୍ପର୍କରେ 'ମାଦଳା ପାଞ୍ଜି'ରେ ଅନ୍ୟ କୌଣସି ବିବରଣ ନାହିଁ; କିନ୍ତୁ କଳିଯୁଗ ଆରମ୍ଭରୁ ଭୋଗ କରିଥିବା ରାଜାମାନଙ୍କ ନାମ ଓ ରାଜତ୍ୱ କାଳ ସହ ସେମାନଙ୍କ ସମ୍ପର୍କୀୟ କେତେକ ଘଟଣାର ଧାରାବାହିକ ବିବରଣ 'ମାଦଳାପାଞ୍ଜି'ରେ ଲିଖିତ ହୋଇଅଛି । ଏ ଯେଉଁ ରାଜାମାନଙ୍କ ନାମ 'ମାଦଳା ପାଞ୍ଜି'ରେ ଦେଖିବାକୁ ମିଳେ ସେମାନଙ୍କ ମଧ୍ୟରୁ କେତେକ ପୌରାଣିକ ବ୍ୟକ୍ତି, କେତେକ ହୁଏତ କିମ୍ବଦନ୍ତୀ ବା କଳ୍ପନା ପ୍ରସୂତ । ପରବର୍ତ୍ତୀ କାଳର ଅନେକ ରାଜା ଐତିହାସିକ ବ୍ୟକ୍ତି ଓ ଓଡ଼ିଶାର ଅଧିପତି ଥିଲେ । ସେ ଯାହାହେଉ, ଭାଗବତ, ପୁରାଣ ଓ ମହାଭାରତ ଆଦିରେ ଉଲ୍ଲେଖ ଅଛି ଯେ, ଯୁଧିଷ୍ଠିରଙ୍କ ରାଜତ୍ୱକାଳରେ ଦ୍ୱାପରଯୁଗ ଶେଷହୋଇ କଳିଯୁଗର ଆରମ୍ଭ ହୋଇଥିଲା । ପୁନଶ୍ଚ, ପ୍ରଚଳିତ ସାଧାରଣ ପାଞ୍ଜିମାନଙ୍କରେ ମଧ୍ୟ କଳିଯୁଗାବ୍ଦ ଗଣନା କରାଯାଏ ବା କଳିଯୁଗର ଭୋଗକାଳ ଗଣନା କରାଯାଏ, 'ମାଦଳା ପାଞ୍ଜି'ରେ ମଧ୍ୟ କଳିଯୁଗର ପ୍ରଥମ ରାଜା ଯୁଧିଷ୍ଠିର । ସୁତରାଂ ସତ୍ୟଯୁଗ ଆରମ୍ଭରୁ ବା କଳିଯୁଗ ଆରମ୍ଭରୁ (କଳିଯୁଗ ପ୍ରତି ବିଶେଷ ଗୁରୁତ୍ୱ

ଆରୋପିତ ହୋଇଥିବାରୁ) ସମସ୍ତ ରାଜାମାନଙ୍କ ରାଜତ୍ୱକାଳ ଓ ତତ୍କାଳୀନ କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣା ଯେଉଁ ପଞ୍ଜିକାରେ ଲିପିବଦ୍ଧ କରାଯାଇଛି ବା ଲିପିବଦ୍ଧ କରାଯିବାର ପ୍ରୟାସ କରାଯାଇଛି ସେହି ପଞ୍ଜିକାର ନାମ 'ମୋଦଳି ପଞ୍ଜିକା' ବା 'ମୋଦଲୁଗା ପଞ୍ଜିକା' ଦିଆଯାଇଥିବା ସମ୍ପୂର୍ଣ୍ଣଭାବେ ସମ୍ଭବ ଓ ଯଥାର୍ଥ ବୋଧ ହୁଏ ଏବଂ ପରବର୍ତ୍ତୀ କାଳରେ ଏହି 'ମୋଦଳି ପଞ୍ଜିକା' ବା 'ମୋଦଲୁଗା ପଞ୍ଜିକା' 'ମାଦଳା ପାଞ୍ଜି'ରେ ପରିଣତ ହୋଇଥିବା ଗ୍ରହଣ କରାଯାଇପାରେ ।

ପୁନଶ୍ଚ, ଏ ମତର ଭାଷାତାତ୍ତ୍ୱିକ ଭିତ୍ତି ପରୀକ୍ଷା କଲେ ମଧ୍ୟ ଏ ମତ ଦୁର୍ବଳ ବୋଲି ପ୍ରତୀୟମାନ ହୁଏ ନାହିଁ, କାରଣ ଧ୍ୱନି ପରିବର୍ତ୍ତନ ମଧ୍ୟ ଦେଇ 'ମୋଦଳି' ଶବ୍ଦ 'ମାଦଳା'ରେ ପରିଣତ ହେବା ସମ୍ପୂର୍ଣ୍ଣ ରୂପେ ସମ୍ଭବ । ଯଥା-

(କ) ମୋଦଳି>ମୋଦଳା (ଅନ୍ତ୍ୟବ୍ୟଞ୍ଜନ ବର୍ଣ୍ଣ ସହ ଯୁକ୍ତ ଇ'କାରର ଆ'କାର ପରିଣତି ଯଥା- ଅଷ୍ଟି>ଅଠା)

(ଖ) ମୋଦଳା>ମଦଳା (ଆଦ୍ୟବ୍ୟଞ୍ଜନ ବର୍ଣ୍ଣ ସହ ଯୁକ୍ତ ଓ'କାରର ଅ'କାର ପରିଣତି ଯଥା-ଗୋଧୂମ>ଗହମ)

(ଗ) ମଦଳା>ମାଦଳା (ଆଦ୍ୟବ୍ୟଞ୍ଜନ ବର୍ଣ୍ଣ ସହ ଯୁକ୍ତ ଅ'କାରର ଆ'କାର ପରିଣତି ଯଥା- ମହାପ୍ରସାଦ>ମାହାର୍ଦ୍ଦ)

ସେହିପରି ଧ୍ୱନି ପରିବର୍ତ୍ତନ ଦ୍ୱାରା 'ମୋଦଲୁଗା' 'ମାଦଳା'ରେ ପରିଣତ ହେବା ମଧ୍ୟ ସମ୍ପୂର୍ଣ୍ଣ ରୂପେ ସମ୍ଭବ । ଯଥା-

(କ) ମୋଦଲୁଗା>ମୋଦଲଗା (ମଧ୍ୟ ବ୍ୟଞ୍ଜନ ବର୍ଣ୍ଣରେ ଯୁକ୍ତ ଉ'କାରର ଅ'କାର ପରିଣତି ଯଥା- ଗୋଧୂମ>ଗହମ)

(ଖ) ମୋଦଲଗା>ମଦଲଗା (ଆଦ୍ୟ ବ୍ୟଞ୍ଜନ ବର୍ଣ୍ଣ ସହ ଯୁକ୍ତ ଓ'କାରର ଅ'କାର ପରିଣତି ଯଥା- ଗୋଗୀର୍ଷ>ଗଇଷ)

(ଗ) ମଦଲଗା>ମଦଲଆ(ଅନ୍ତ୍ୟ ବ୍ୟଞ୍ଜନ ବର୍ଣ୍ଣର ଲୋପ ଯଥା- ଜୀବ>ଜୀଅ)

(ଘ) ମଦଲଗା>ମଦଲା

(ଙ) ମଦଲା>ମାଦଲା (ମହାପ୍ରସାଦ>ମାହାର୍ଦ୍ଦ)

(ଚ) ମାଦଲା>ମାଦଳା ('ଲ'ର 'ଳ'ରେ ପରିଣତି ଯଥା ସଂସ୍କୃତ କାଲ>କାଳ ଓଡ଼ିଆ)

ପୁନଶ୍ଚ, ଓଡ଼ିଶାରେ ମିଳୁଥିବା ଓ ଓଡ଼ିଶାର ରାଜାମାନଙ୍କଦ୍ୱାରା ଖୋଦିତ ଅଭିଲେଖମାନଙ୍କରେ ଏ ଶବ୍ଦଦ୍ୱୟର ବହୁଳ ବ୍ୟବହାର ଦୃଷ୍ଟିଗୋଚର ହେଉଥିବାରୁ

ଏହି ଶବ୍ଦଦ୍ୱୟ ମଧ୍ୟରୁ ଗୋଟିଏ ଶବ୍ଦକୁ 'ମାଦଳା' ଶବ୍ଦର ଜନକରୂପେ ଗ୍ରହଣ କରିବା ଅସମୀଚୀନ ବୋଧ ହୋଇନପାରେ । ଦକ୍ଷିଣରୁ ଆସିଥିବା ଗଙ୍ଗମାନଙ୍କ ରାଜତ୍ୱ କାଳରେ ଓ ସୂର୍ଯ୍ୟବଂଶର ରାଜତ୍ୱକାଳରେ ଓଡ଼ିଆ ଭାଷାରେ ବହୁ ଦ୍ରାବିଡ଼ ଶବ୍ଦ ପଶି ଯାଇଥିଲା । ଜଗନ୍ନାଥ ବା ଜଗନ୍ନାଥ ମନ୍ଦିର ସହ ସମ୍ପୃକ୍ତ ବହୁ ଶବ୍ଦ ଦ୍ରାବିଡ଼ ଭାଷାରୁ ଆନୀତ । ଉଦାହରଣ ସ୍ୱରୂପ କୋଇଲି ଓ ଗୁଣ୍ଡିଚା ଶବ୍ଦଦ୍ୱୟକୁ ନିଆଯାଇ ପାରେ ।[୧୧] ସୁତରାଂ ଜଗନ୍ନାଥ ମନ୍ଦିର ସହ ସମ୍ପୃକ୍ତ 'ମାଦଳା ପାଞ୍ଜି'ର 'ମାଦଳା' ଶବ୍ଦ 'ମୋଦଳି' ବା 'ମୋଦଲୁଗା' ଶବ୍ଦର ପରିବର୍ତ୍ତିତ ରୂପ ହୋଇଥିବାର ସମ୍ଭାବନା ଯଥେଷ୍ଟ ଅଛି ।

ଏ ସବୁ ଦୃଷ୍ଟିରୁ ବିଚାର କରି ସିଦ୍ଧାନ୍ତ କରାଯାଇ ପାରେ ଯେ, 'ମାଦଳା ପାଞ୍ଜି'ର ନାମକରଣ ପ୍ରସଙ୍ଗରେ ପୂର୍ବୋକ୍ତ ପ୍ରଥମ ଓ ଦ୍ୱିତୀୟ ମତକୁ ନିଶ୍ଚିତ ବୋଲି ଧରି ନ ନେଇ ତୃତୀୟ ମତର ସମ୍ଭାବନା ବିଚାର କରିବା ବିଧେୟ; ବରଂ ଅର୍ଥ ସଙ୍ଗତି ଦୃଷ୍ଟିକୋଣରୁ ବିଚାର କଲେ, ତୁଳନାତ୍ମକ ଭାବରେ ତୃତୀୟ ମତ ହିଁ ଯୁକ୍ତିସଙ୍ଗତ ତଥା ଗ୍ରହଣୀୟ ।

## ପ୍ରମାଣ ପଞ୍ଜୀ


୧. Trimali Matha Copper plate Inscription of Narasimha Dev IV of Ganga dynasty [J.A.S.B-(1895) p.149].

୨. Sankarananda Matha Copper Plate Inscription of Narasimha Dev IV of Ganga dynasty [J.A.S.B. (1895)- p.152].

୩. Kednu-patana Copper Plate Inscription of Narasimha Dev II [J.A.S.B. (1896) p.254].

୪. J.& P.A.S.B (1916) Vol. XII p.29 foot-note.

୫. J.B. & O.R.S. Vol. XIII part I pp.10-27 'Notes from the Madala Panji' (Mohammadan Conquest of Orissa) 1927.

୬. ପ୍ରାଚୀନ ଉତ୍କଳ, (୧୯୨୯), ପୃ.୪୮୨ ।

୭. ପ୍ରାଚୀନ ଓଡିଆ ଗଦ୍ୟପଦ୍ୟାଦର୍ଶ, (୧୯୩୨), ଟୀକା, ପୃ.୬ ।

୮. (କ) ଓଡ଼ିଆ ସାହିତ୍ୟ ପରିଚୟ, ୧ମ ଭାଗ, (୧୯୫୧), ପୃ.୪୩ ।
(ଖ) ଶ୍ରୀ ଜଗନ୍ନାଥ ମନ୍ଦିର, (୧୯୫୧), ପୃ.୨୨୧ ।

୯. Inscriptions of Orissa (Vol. III, part II, Apendix III Glossory of Telugu words frequently used in votiv inscription) by S.N. Rajguru.

୧୦. Ibid.

୧୧. ଓଡ଼ିଆ ସାହିତ୍ୟର କ୍ରମପରିଣାମ, (୨ୟ ଭାଗ), ୧୯୫୩, ପୃ. ୧୦୭ । ପଣ୍ଡିତ ନୀଳକଣ୍ଠ ଦାସ ।

[Abbreviations
J.A.S.B.= Journal of Asiatic Society of Bengal
J.B. & O.R.S. = Journal of Bihar & Orissa Research Society
J. & P.A.S.B.= Journal & Proceedings of Asiatic Society of Bengal ]

(ପ୍ରଥମ ପ୍ରକାଶ- ୧୯୬୪, କୋଣାର୍କ, ୩ୟ ବର୍ଷ, ୧ମ-୨ୟ ସଂଖ୍ୟା)

## ପରିଶିଷ୍ଟ

[ ଏ ପ୍ରବନ୍ଧ ଲିଖିତ ହେବା ପରେ ୧୯୭୦ରେ ମୁଁ ଜର୍ମାନ୍ ଗବେଷଣା ପ୍ରକଳ୍ପ (Orissa Research Project I) ଆନୁକୂଲ୍ୟରେ ପୁରୀର ଦେଉଳକରଣଙ୍କ ଘରୁ ସଂଗୃହୀତ 'ମାଦଳା ପାଞ୍ଜି' ଦେଖିବାର ସୁଯୋଗ ପାଇଥିଲି । ଏଥିରେ ବ୍ୟବହୃତ ତାଳପତ୍ର ଅନ୍ୟାନ୍ୟ ପୋଥିରେ ବ୍ୟବହୃତ ତାଳପତ୍ରଠାରୁ ଅଧିକ ଲମ୍ବା ଓ ତାର ମଧ୍ୟ ସ୍ଥଳରେ କଣା କରାଯାଇନଥିଲା । କେତେକ ତାଳପତ୍ରର ଗୋଟିଏ ମୁଣ୍ଡକୁ ବନ୍ଧାଯାଇ କେତେକ ଛୋଟ ଛୋଟ ବିଡାରେ ପରିଣତ କରାଯାଇଥିଲା । ପୁଣି କେତେକ ଛୋଟ ଛୋଟ ବିଡାକୁ ଏକତ୍ର ମିଶାଇ ତାର ଦୁଇ ମୁଣ୍ଡ ବନ୍ଧାଯାଇ ଗୋଟିଏ ଗୋଟିଏ ବଡ ବିଡାରେ ପରିଣତ କରାଯାଇଥିଲା । ଏହି ପ୍ରତ୍ୟେକ ବଡ ବିଡାର ଦୁଇ ମୁଣ୍ଡ ଶକ୍ତ ଭାବରେ ବନ୍ଧାଯାଇଥିବାରୁ ତାର ମଧ୍ୟ ସ୍ଥଳ ଫୁଲିଯାଇ ଥିଲା । ଫଳରେ ତାହା ଏକ ମୃଦଙ୍ଗ ବା ମର୍ଦ୍ଦଳ ଆକୃତି ଧାରଣ କରିଥିଲା । ତେଣୁ ରମାପ୍ରସାଦ ଚନ୍ଦଙ୍କ ଅଭିମତ ଠିକ୍ ହୋଇଥାଇପାରେ । ଏ ମଧ୍ୟରୁ ଗୋଟିଏ ଗୋଟିଏ ବିଡା ମୋ ନିକଟରେ ସଂରକ୍ଷିତ ଥିଲା ଓ ମୁଁ ତାହାକୁ ଭୁବନେଶ୍ୱରରେ ଅବସ୍ଥିତ National Archives of Indiaର Record Centreକୁ ହସ୍ତାନ୍ତର କରିଦେଇଛି ଓ ସେଠାରେ ତାହା ସୁରକ୍ଷିତ ଥିବ ।]



# ମଧ୍ୟ-ଯୁଗୀୟ ଓଡ଼ିଆ ଗଦ୍ୟ: ମାଦଳାପାଞ୍ଜି

ବିଭିନ୍ନ ସମୟରେ ପୁରୀ ଜଗନ୍ନାଥ ମନ୍ଦିରର ଦେଉଳ କରଣ ଓ ତଡ଼ାଉ କରଣଙ୍କ ଦ୍ୱାରା ତାଳପତ୍ରରେ ଲିଖିତ ହୋଇଥିବା ସେହି ମନ୍ଦିରର ଆୟ, ବ୍ୟୟ, ସମ୍ପତ୍ତି, ସେବାପୂଜା, ନୀତି, ଯାନିଯାତ୍ରା, ପର୍ବପର୍ବାଣି ଆଦି ବହୁ ତଥ୍ୟ, ସେ ସଂପର୍କୀୟ ଆଦେଶନାମା ଓ ଜନଶ୍ରୁତି ଆଦିର ସଂଗ୍ରହକୁ 'ମାଦଳା ପାଞ୍ଜି' ନାମରେ ଅଭିହିତ କରାଯାଏ । ସଂସ୍କୃତ 'ପଞ୍ଜିକା' (ପଞ୍ଚାଙ୍ଗ) ଶବ୍ଦରୁ 'ପାଞ୍ଜି' ଶବ୍ଦର ଉତ୍ପତ୍ତି । ପୂର୍ବେ ତାଳପତ୍ରରେ ଲିଖିତ ବିଭିନ୍ନ ତଥ୍ୟର ସଂଗ୍ରହ 'ପାଞ୍ଜି' ନାମରେ ପରିଚିତ ଥିଲା । ଇଂରେଜୀରେ ଏହାର ପ୍ରତିଶବ୍ଦ ହେଉଛି Records । ଊନବିଂଶ ଶତକର ଶେଷ ପାଦ ଓ ବିଂଶ ଶତକର ପ୍ରଥମ ପାଦରେ ଲିଖିତ ଫକୀର ମୋହନଙ୍କ ଉପନ୍ୟାସରେ ଏଇ ଅର୍ଥରେ 'ପାଞ୍ଜି' ଶବ୍ଦର ବହୁଳ ପ୍ରୟୋଗ ପରିଲକ୍ଷିତ ହୁଏ । କିନ୍ତୁ 'ମାଦଳା' ଶବ୍ଦର ମୂଳ ଓ ତା'ର ଅର୍ଥ ସମ୍ପର୍କରେ ଆମର ଧାରଣା କିଛିଟା ଅସ୍ପଷ୍ଟ । ମନମୋହନ ଚକ୍ରବର୍ତ୍ତୀଙ୍କ ମତରେ ମୁଦି ବା ମୁଦ୍ରିକା ଦ୍ୱାରା ମୁଦ ଦିଆଯାଇଥିବା ବା ସିଲ୍ କରାଯାଇଥିବା ଅର୍ଥବାଚୀ ଓ ଏଇ ଅର୍ଥରେ ଅଭିଲେଖରେ ପ୍ରୟୋଗ କରାଯାଇଥିବା 'ମୁଦଳ' ଶବ୍ଦରୁ 'ମାଦଳା' ଶବ୍ଦର ଉତ୍ପତ୍ତି । ତାହେଲେ 'ମାଦଳା ପାଞ୍ଜି'ର ଅର୍ଥ ହେବ, ରାଜାମାନଙ୍କର ଆଦେଶର କ୍ରମାନୁଯାୟୀ ସଂଗ୍ରହ ବା ରାଜାମାନଙ୍କ ଆଦେଶରେ ଲିଖିତ ହୋଇଥିବା ସମୟାନୁସାରୀ ଇତିହାସ । ଚକ୍ରବର୍ତ୍ତୀଙ୍କ ଭାଷାରେ "A chronicle of royal orders" ରାଜାମାନଙ୍କ ଆଦେଶନାମାରେ ତାଙ୍କର ସିଲ୍ ମୋହର ଦିଆଯାଉଥିବାରୁ 'ମାଦଳାପାଞ୍ଜି'ର ଏଇ ଅର୍ଥରେ ପରିକଳ୍ପନା କରାଯାଇଛି । ରମାପ୍ରସାଦ ଚନ୍ଦ, ଜଗବନ୍ଧୁ ସିଂହ, ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ 'ମାଦଳା ପାଞ୍ଜି' ଅନ୍ତର୍ଭୁକ୍ତ ତାଳପତ୍ରଗୁଡ଼ିକରେ ଅନ୍ୟାନ୍ୟ ସାଧାରଣ ପୋଥିପରି କଣା କରାଯାଇ ଓ ତା' ମଧ୍ୟରେ ସରୁ ଦଉଡ଼ି ବା ମୋଟା ସୂତୁଲି ପୂରାଇ ତାକୁ ବାନ୍ଧି ରଖାଯାଏ ନାହିଁ । ପ୍ରଥମେ କେତେକ ତାଳପତ୍ରକୁ ଏକତ୍ର କରାଯାଇ ତା'ର ଗୋଟିଏ ମୁଣ୍ଡରେ ଦଉଡ଼ି ବା ସୂତୁଲି ବାନ୍ଧି ଛୋଟ ଛୋଟ ବିଡ଼ାରେ ପରିଣତ କରାଯାଏ ଓ ତା'ପରେ କେତେକ ଛୋଟଛୋଟ ବିଡାକୁ ଏକତ୍ର କରି ଗୋଲାକାର ବଡ଼ ବଡ଼ ବିଡ଼ାରେ ବାନ୍ଧି ରଖାଯାଏ । ଏହି ଗୋଲାକାର

ବଡ଼ ବିଡ଼ାଗୁଡ଼ିକ 'ମାଦଳା' ବା 'ମର୍ଦ୍ଦଳ' ନାମକ ବାଦ୍ୟଯନ୍ତ୍ରର ଆକାର ଧାରଣ କରିଥିବାରୁ ଏହାକୁ 'ମାଦଳା ପାଞ୍ଜି' କୁହାଯାଏ । ପୁନଶ୍ଚ ହାତ ଗୋଡ଼ ନଥିବା ଗଣ୍ଡିକୁ ଓଡ଼ିଆରେ 'ମାଦଳ' ବା 'ମାଦଳା' କୁହାଯାଏ । ଏଇ ଅର୍ଥବାଚୀ ମାଦଳ ଶବ୍ଦର ମୂଳ ଏବେ ବି ଅନାବିଷ୍କୃତ । ବେଣୀମାଧବ ପାଢ଼ୀଙ୍କ ମତରେ ଅଷ୍ଟ୍ରିକ ଶବରର ବୃକ୍ଷ ଦାରୁରେ ପରିଣତ ହୋଇ ଶେଷରେ ଏଇ ଅର୍ଥରେ 'ମାଦଳା' ଆକାରରେ ପୂଜା ପାଇ ଆସୁଥିଲା ଓ ସେହି 'ମାଦଳା' କାଳକ୍ରମେ ପୁରୁଷୋତ୍ତମ-ଜଗନ୍ନାଥରେ ପରିଣତ ହୋଇଅଛି । ସେ କାରଣରୁ ଜଗନ୍ନାଥଙ୍କର ହାତ-ଗୋଡ଼ ନାହିଁ; ସେ ମାଦଳା, ଓ ଏଇ ମାଦଳା ବା ଜଗନ୍ନାଥଙ୍କ ସମ୍ବନ୍ଧୀ ପାଞ୍ଜି ହୋଇଥିବାରୁ ଏହାର ନାମ 'ମାଦଳା ପାଞ୍ଜି' । ସେହିପରି ତେଲୁଗୁ ଶବ୍ଦ 'ମୋଦଳି' ବା 'ମୋଦଲୁଗା'ରୁ ମଧ୍ୟ 'ମାଦଳା' ଶବ୍ଦ ସୃଷ୍ଟି ହୋଇଥିବାର ସମ୍ଭାବନା ବିଚାର କରାଯାଇଛି । 'ମୋଦଳି'ର ଅର୍ଥ 'ପ୍ରଥମ' ଓ 'ମୋଦଲୁଗା'ର ଅର୍ଥ 'ଆରମ୍ଭରୁ' । ଏଇ ଅର୍ଥରେ ପ୍ରଥମେ ଯେଉଁ ପାଞ୍ଜି ଲେଖାହେଲା ଓ ହୋଇଆସୁଛି ବା ପ୍ରଥମରୁ ସମସ୍ତ ଘଟଣା ବା ତଥ୍ୟର ସଂକଳନ ଯେଉଁ ପାଞ୍ଜିରେ ହୋଇଛି ତାହା 'ମାଦଳା ପାଞ୍ଜି' ।

'ମାଦଳା ପାଞ୍ଜି'ର ବହୁ ବିଭାଗ ରହିଛି । ଏ ପର୍ଯ୍ୟନ୍ତ ଜଣାଯାଇଥିବା ବିଭାଗଗୁଡ଼ିକର ନାମ ହେଲା-

ଏକ- ଦେଶଖଞ୍ଜା
ଦୁଇ- ବେହରଣ ତଳପ
ତିନି- ଛାମୁ ଚିଟାଉ
ଚାରି- ନୀତି
ପାଞ୍ଚ- ପିଣ୍ଡିକା ପଇସା ଯଜମାନ ଦତ୍ତ
ଛଅ- କର୍ମାଙ୍ଗୀ
ସାତ- ଦିନ ପଞ୍ଜି
ଆଠ- 'ରାଜଭୋଗ' ଇତିହାସ ବା ରାଜାମାନଙ୍କ ଭୋଗକାଳ ବା କଳିଯୁଗ ରାଜାମାନଙ୍କ ଭୋଗକାଳ ।

ଏଇ ବିଭାଗଗୁଡ଼ିକ ପ୍ରାୟ ସ୍ୱୟଂସମ୍ପୂର୍ଣ୍ଣ ବିଭାଗ । ଅନ୍ୟ ବିଭାଗ ତୁଳନାରେ ଏ ପର୍ଯ୍ୟନ୍ତ 'ରାଜଭୋଗ ଇତିହାସ'ର ଅଧିକ ଅଂଶ ବିଭିନ୍ନ ସମୟରେ ପ୍ରକାଶିତ ହୋଇ ଅଛି ଓ ଏହି ତଥା ଅନ୍ୟାନ୍ୟ କାରଣରୁ ତୁଳନାତ୍ମକ ଭାବରେ ଅନ୍ୟାନ୍ୟ ବିଭାଗଗୁଡ଼ିକ ପ୍ରାୟ ଅଜ୍ଞାତ ରହିଥିବାବେଳେ 'ରାଜଭୋଗ ଇତିହାସ' ବିଭାଗଟି ବିଶେଷ ପ୍ରସିଦ୍ଧି ଲାଭ କରିଅଛି । ତେଣୁ ଏବେ ଅଧିକାଂଶ ଲୋକ 'ମାଦଳା ପାଞ୍ଜି' କହିଲେ ଏହି ବିଭାଗଟିକୁ ହିଁ ବୁଝନ୍ତି । ସେ କାରଣରୁ ବର୍ତ୍ତମାନ ସେଇ ଅର୍ଥରେ ହିଁ 'ମାଦଳା ପାଞ୍ଜି'ର ଆଲୋଚନା କରାଯିବ ।

ପ୍ରାଚୀନ ଓଡ଼ିଆ ଗଦ୍ୟରେ ଲିଖିତ 'ରାଜଭୋଗ ଇତିହାସ'କୁ ସାଧାରଣତଃ ସିଂହଳରେ ପାଲି ଭାଷାରେ ଲିଖିତ 'ଧାତୁବଂଶ' ଓ 'ଦାଠାବଂଶ', କାଶ୍ମୀରରେ ସଂସ୍କୃତ ପଦ୍ୟରେ ଲିଖିତ 'ରାଜ ତରଙ୍ଗିଣୀ' ଓ ଆସାମରେ ପ୍ରାଚୀନ ଅହମିୟା ଭାଷାରେ ଲିଖିତ 'ବୁରୁଞ୍ଜି' ସହ ତୁଳନା କରାଯାଏ । ଏହା ବ୍ୟତୀତ ତ୍ରିପୁରାରେ ପଦ୍ୟରେ ଲିଖିତ 'ରାଜମାଳା' ସହ ମଧ୍ୟ ଏହାକୁ ତୁଳନା କରାଯାଇପାରେ ।

Andrew Stirling ୧୮୨୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଇତିହାସ ରଚନାରେ ପ୍ରଥମ ଥରପାଇଁ 'ରାଜଭୋଗ ଇତିହାସ'ର ଉପଯୋଗ କରନ୍ତି । ଓଡ଼ିଶାର ରାଜନୀତି, ସଂସ୍କୃତି, ଭାଷା ଓ ସାହିତ୍ୟ ସମ୍ପର୍କୀୟ ଐତିହାସିକ ଆଲୋଚନାରେ 'ରାଜଭୋଗ ଇତିହାସ' ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ଏ ସମ୍ପର୍କୀୟ ଅନୁଶୀଳନ ଓ ଅଧ୍ୟୟନ ଏ ପର୍ଯ୍ୟନ୍ତ ନିମ୍ନଲିଖିତ ଚାରିଗୋଟି ଦିଗରେ ଗତି କରିଅଛି:-

ଏକ- 'ରାଜଭୋଗ ଇତିହାସ'ର ସଂଗ୍ରହ ଓ ସଂକଳନ ।

ଦୁଇ- 'ରାଜଭୋଗ ଇତିହାସ' ରଚନା ଆରମ୍ଭର ସମୟ ନିରୂପଣ ।

ତିନି- ଏହାର ଐତିହାସିକ ପ୍ରମାଣିକତା ବିଚାର ।

ଚାରି- ପ୍ରାଚୀନ ଓଡ଼ିଆ ଭାଷା ଓ ଗଦ୍ୟର ବିକାଶରେ ଏହାର ସ୍ଥାନ ଓ ଭୂମିକା ନିର୍ଣ୍ଣୟ ।

ପ୍ରାଚୀନ ଓଡ଼ିଆ ଗଦ୍ୟ ସାହିତ୍ୟର ପରମ୍ପରା ଆଲୋଚନା ପ୍ରସଙ୍ଗରେ 'ମାଦଳାପାଞ୍ଜି' ଅନ୍ତର୍ଗତ 'ରାଜଭୋଗ ଇତିହାସ'ର ସ୍ଥାନ ଓ ଭୂମିକା ବିଚାର କରିବା ବେଳେ ସ୍ମରଣ ରଖିବା ଉଚିତ ଯେ-

(୧) 'ରାଜଭୋଗ ଇତିହାସ' ରଚନାର ଆରମ୍ଭ କେବେ ହୋଇଥିଲା ତାହା ଏବେବି ମଧ୍ୟ ନିର୍ଦ୍ଦିଷ୍ଟ ଭାବେ କହିବା ସମ୍ଭବ ନୁହେଁ । ଏ ପର୍ଯ୍ୟନ୍ତ ଏକ ବିବଦମାନ ସମସ୍ୟା ହୋଇ ଥିଲେ ହେଁ ମୋଟାମୋଟି ଏହା ଏବେ ସ୍ୱୀକୃତ ଯେ ୧୬ଶ ଶତକର ଶେଷ ଭାଗରେ ବା ତା'ର କିଞ୍ଚିତ୍ ପରବର୍ତ୍ତୀ କାଳରେ 'ରାଜଭୋଗ ଇତିହାସ' ରଚନାର ଆରମ୍ଭ ହୋଇଥିଲା । ତେଣୁ ସେତେବେଳେ ହିଁ ତା' ପୂର୍ବର ଧାରାବାହିକ ଓ କାଳାନୁକ୍ରମିକ ବିବରଣୀ ସ୍ଥାନ ପାଇଥିବ ଓ ତା ପରଠାରୁ କ୍ରମଶଃ ଧାରାବାହିକ ଭାବେ ଏଥିରେ ସମସାମୟିକ ବା ଅବ୍ୟବହିତ ପୂର୍ବର ବିବରଣୀ ଲେଖା ହୋଇ ଆସୁଥିବ ।

(୨) ଏଥିରେ ସ୍ଥାନ ପାଇଥିବା ବିବରଣୀକୁ ବିଷୟବସ୍ତୁ ଦିଗରୁ ମୋଟାମୋଟି ନିମ୍ନଲିଖିତ ତିନି ଗୋଟି ଉପବିଭାଗରେ ବିଭକ୍ତ କରାଯାଇପାରେ ।

(କ) ପୌରାଣିକ ଉପବିଭାଗ

(ଖ) ଅର୍ଦ୍ଧପୌରାଣିକ ବା ଅର୍ଦ୍ଧ-ଐତିହାସିକ ଉପବିଭାଗ

(ଗ) ଐତିହାସିକ ଉପବିଭାଗ

ଏ ମଧ୍ୟରୁ ପୌରାଣିକ ତଥା ଅର୍ଦ୍ଧ-ପୌରାଣିକ ବା ଅର୍ଦ୍ଧ-ଐତିହାସିକ ଉପବିଭାଗ ଦୁଇଟିଯାକ ସମ୍ପୂର୍ଣ୍ଣ ଭାବେ ଓ ଐତିହାସିକ ଉପବିଭାଗର କେତେକ ଅଂଶକୁ ଜଗନ୍ନାଥ ଓ ରାଜବଂଶ ସମ୍ପର୍କୀୟ ମିଥ୍ ଓ କିମ୍ବଦନ୍ତୀ ମୂଳକ ଜନଶ୍ରୁତିର ଧାରାବାହିକ ଓ କାଳାନୁକ୍ରମିକ ସଂକଳନ ବୋଲି ଗ୍ରହଣ କରାଯାଇପାରେ ।

(୩) ଏହି ସଙ୍କଳନରେ ସ୍ଥାନ ପାଇଥିବା ଜନଶ୍ରୁତିଗୁଡ଼ିକ ଜଗନ୍ନାଥଙ୍କ ପୂଜକ-ସେବକ ସମାଜରେ ପ୍ରଚଳିତ ଥିଲା ଓ ସେମାନଙ୍କଠାରୁ ସେଇମାନଙ୍କଦ୍ୱାରା ସଂଗୃହୀତ ହୋଇ ଲେଖା ଯାଇଥିଲା । ତେଣୁ ଏହାର ଭାଷାରେ ସେମାନଙ୍କ ଭାଷାର ନମୁନା ରହିଅଛି । ଦେବସ୍ଥାନ ସମ୍ବନ୍ଧୀ ହୋଇଥିବାରୁ ସେଥିରେ ପୁଣି ରକ୍ଷଣଶୀଳତାର ଆଭାସ ଦେଖିବା ପାଇଁ ମିଳେ ।

ପ୍ରାଚୀନ ଓଡ଼ିଆରେ ସାହିତ୍ୟିକ ଗଦ୍ୟ, ଦାର୍ଶନିକ ଗଦ୍ୟ ଆଦି ବିଭିନ୍ନ ଗଦ୍ୟର ଉଦାହରଣ ଦେଖିବା ପାଇଁ ମିଳେ । କିନ୍ତୁ ରାଜଭୋଗ ଇତିହାସର ଗଦ୍ୟ ଏକ ସ୍ୱତନ୍ତ୍ର ଶ୍ରେଣୀର ଗଦ୍ୟ । ଏହାର ୧୬ଶ ଶତକ ଶେଷ ପର୍ଯ୍ୟନ୍ତ ବିବରଣୀରେ, ଜନଶ୍ରୁତି, ବିଶେଷଭାବେ ପୁରାଣର ବଂଶାନୁଚରିତ ଓ ଲୋକ ଗଳ୍ପର ଏକ ସମିଶ୍ରିତ ପରିବେଷଣ ଶୈଳୀ ପରିଦୃଷ୍ଟ ହୁଏ । ଏହି କାରଣରୁ ଏହାକୁ ଲୋକଗଦ୍ୟ ଆଖ୍ୟା ଦିଆଯାଇପାରେ, ଏହି ଧରଣର ଗଦ୍ୟ 'ଚକଡ଼ା ପୋଥି' ଓ 'ଚକଡ଼ା ବସାଣ' । କିନ୍ତୁ ପ୍ରାଚୀନ ଓଡ଼ିଆ ଗ୍ରନ୍ଥ, 'ରୁଦ୍ର ସୁଧାନିଧି', 'ପ୍ରସ୍ତାବ ଚିନ୍ତାମଣି' ଓ 'ଚତୁର ବିନୋଦ' ପରି ଶୁଦ୍ଧ ସାହିତ୍ୟ ହୋଇନଥିବାରୁ ରସ ସୃଷ୍ଟି କରିବାର ସଚେତନ ଉଦ୍ୟମ ଏଥିରେ ଦୁର୍ଲଭ; କିନ୍ତୁ ଏହା ରସହୀନ ନୁହେଁ । ପୁଣି 'ରୁଦ୍ର ସୁଧାନିଧି' ଆଦିରେ ପରିଦୃଷ୍ଟ ହେଉଥିବା ଆଳଂକାରିତା ଓ କୃତ୍ରିମତାର ପ୍ରତିଫଳନ ଏଥିରେ ଘଟିନାହିଁ କହିଲେ ଚଳେ । ଏହା ସହଜ, ସରଳ, ନିରାଡମ୍ବର ଓ ପ୍ରାଣୋଚ୍ଛଳ । କଦାଚିତ୍ କେଉଁଠାରେ "ଏ ତ ଦାରୁବ୍ରହ୍ମ, ଆମ୍ଭେ ଶିଳାବ୍ରହ୍ମ । ଏହାଙ୍କ ନିବାସ ଆମ୍ଭର ପ୍ରବାସ ।" ବା "ସାବେଳୀ ଗଲା ଭଳି, ପୁରିଆକୁ ରଖିଲେ ବନମାଳୀ" ପରି ଅଳଂକରଣର ଭୀରୁ, କୁଣ୍ଠିତ ସ୍ପର୍ଶ ରହିଥାଇ ପାରେ, ତାହା କିନ୍ତୁ ସମ୍ପୂର୍ଣ୍ଣ ଭାବେ ସ୍ୱତଃସ୍ଫୂର୍ତ୍ତ ।

ସେ ସବୁ ଗଦ୍ୟପରି ଏହା ପଦ୍ୟାତ୍ମକ ବା ପଦ୍ୟଗନ୍ଧୀ ନୁହେଁ, କିନ୍ତୁ ପ୍ରାଚୀନ ଗଦ୍ୟର ବାକ୍ୟଗଠନ ରୀତି ଭିତର ଦେଇ ଛନ୍ଦର ବ୍ୟଞ୍ଜନା ଏଥିରେ ଉପଲବ୍ଧି କରାଯାଇପାରେ । ପୁଣି ମୂଳତଃ କଥନଧର୍ମୀ ହୋଇଥିବାରୁ ମିତ୍ରାକ୍ଷରର ଛାପ ମଧ୍ୟ ବେଳେବେଳେ ଦୃଷ୍ଟିଗୋଚର ହୁଏ ।

ବର୍ଣ୍ଣନାର ବାହୁଲ୍ୟ ଏଥିରେ ପରିତ୍ୟକ୍ତ; ବିସ୍ତାର ନୁହେଁ ସଂକ୍ଷିପ୍ତତା ଏହାର ନିୟାମକ । କିନ୍ତୁ ଏଥିରେ ଭାବର ବ୍ୟଞ୍ଜନା ନାହିଁ; ସୂଚନା ଅଛି । ଭାବ ପ୍ରକାଶରେ ଅସ୍ପଷ୍ଟତା ବା ଗୋପନୀୟତାର ସଂକେତ ଆଦୌ ନାହିଁ ।

ଏଥିରେ ଥିବା ନଗ୍ନ ବର୍ଣ୍ଣନା ଏତେ ରୋକ୍‌ଠୋକ୍ ଯେ ତାହାକୁ ଅଶ୍ଳୀଳ କୁହାଯାଇ ପାରିବ ନାହିଁ । କୌଶଲ୍ୟା ଗଙ୍ଗ ପୁଷ୍କରିଣୀ ସମ୍ପର୍କୀୟ ବିବରଣୀ ଏହାର ଉଦାହରଣ । କିନ୍ତୁ 'ରୁଦ୍ର ସୁଧାନିଧି' ଓ 'ତୁଳାଭିଣା'ରେ ଯେଉଁ ଦାର୍ଶନିକ ଗାମ୍ଭୀର୍ଯ୍ୟ ରହିଅଛି 'ରାଜଭୋଗ ଇତିହାସ'ରେ ତା'ର ଛାୟା ମାତ୍ର ନାହିଁ ।

ଅନ୍ୟାନ୍ୟ ଲୋକସାହିତ୍ୟ ପରି, ପ୍ରାଣବନ୍ତ ହୋଇଥିବାରୁ, ଏହାର ପ୍ରକାଶ ଭଙ୍ଗୀ, ଠାଏ ଠାଏ ଅତ୍ୟନ୍ତ ବଳିଷ୍ଠ ଓ ବାସ୍ତବ । ଉଦାହରଣ ସ୍ୱରୂପ ଜଗନ୍ନାଥଙ୍କ ନାମରେ ଗୋଟା ସାମ୍ରାଜ୍ୟକୁ ଉତ୍ସର୍ଗ କରିଦେଇଥିବା ଅନଙ୍ଗଭୀମ ଦେବଙ୍କ ମୁଖରେ ଭବିଷ୍ୟତର ମହାରାଜାମାନଙ୍କୁ ସମ୍ବୋଧନ କରାଯାଇ, ଯେଉଁ ଉଦ୍‌ଘୋଷଣା ରାଜଭୋଗ ଇତିହାସରେ ଦିଆଯାଇଅଛି, ସେଥିରେ ପ୍ରାଣ ପ୍ରାଚୁର୍ଯ୍ୟର ପ୍ରଚଣ୍ଡ ପ୍ରତିଫଳନ ଦେଖିବାପାଇଁ ମିଳେ । କେବଳ ପ୍ରାଚୀନ ଓଡ଼ିଆ କାହିଁକି, ଆଧୁନିକ ଓଡ଼ିଆରେ ମଧ୍ୟ ଏପରି ଶକ୍ତିଶାଳୀ, ଶାଣିତ ଗଦ୍ୟର ଅନ୍ୟ ଉଦାହରଣ ବିରଳ । ସେଇ ଉଦ୍‌ଘୋଷଣାର ପ୍ରତ୍ୟେକ ଶବ୍ଦ ଘଣ୍ଟାର ଠନ୍ ଠନ୍ ଶବ୍ଦପରି ଆଜି ମଧ୍ୟ ଯେପରି କାନରେ ବାଜୁଅଛି ।

"ଭୋ ଭବିଷ୍ୟ ମହାରାଜାମାନେ, ଦେବତା ବ୍ରାହ୍ମଣଙ୍କୁ, ବଳ ଭଣ୍ଡାରକୁ, ରାଜନୀତିଟଏକୁ ମଧକରି ମୁଂ ଯେମନ୍ତ ପ୍ରକାରେ ଭିଆଣ କରି ଦେଉଅଛି ଏଥିକି ତୁମ୍ଭେମାନେ ନ ପୁଣି ବୋଲ ସେ ଦେଇଗଲେ ଆମ୍ଭର କି ହୋଇଲା, ଆମ୍ଭେ କିମ୍ପା ଦବୁ ଏମନ୍ତ ନ ବୋଲିବ ।

ଭୋ ମହାରାଜାମାନେ । ତୁମ୍ଭେମାନେ ଅନ୍ୟଥା ନ କରିବ । ହରିଲାର ତ ପାପ ଶ୍ରୁତି ସ୍ମୃତି ବଚନମାନରେ ଶୁଣୁଥିବ । ଏଥକୁ ତୁମ୍ଭେମାନେ ଯେବେ ବଳୀଆର ପଣ କରି ଲୋଭ ବଶରେ ହରିବ ତେବେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀ ଚରଣକୁ ଦ୍ରୋହ କଲାରୁ ଯେ ପାପ ତାହା ପାଇବ ।"

(ପ୍ରଥମ ପ୍ରକାଶ ୧୯୮୧ 'ଯୁଗରୁଚି'-୩)



# 'କପଟପାଶା'ର ରଚନା ଶୈଳୀ

(ସାହିତ୍ୟ-ସମାଲୋଚନାରେ ଭାଷା ବିଜ୍ଞାନର ଭୂମିକା)

ସାହିତ୍ୟ କୃତିର ଅବବୋଧ (interpretation) ଓ ମୂଲ୍ୟାୟନ (evaluation)ରେ ଭାଷା-ବିଜ୍ଞାନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କାରଣ ଭାଷାକୁ ଆଶ୍ରୟ କରି ସାହିତ୍ୟ ସୃଷ୍ଟି ସମ୍ଭବ ହୁଏ । ମୂଳ ବକ୍ତବ୍ୟକୁ ମୋଟାମୋଟି ସମାନ ରଖି ଭାଷାରେ ତାକୁ ବିଭିନ୍ନ ଭାବରେ ବ୍ୟକ୍ତ କରାଯାଇପାରେ; ବିଭିନ୍ନ ଶୈଳୀରେ ପରିବେଷଣ କରାଯାଇ ପାରେ ଓ ତା' ଭିତର ଦେଇ ବକ୍ତାର ବିଭିନ୍ନ ଉଦ୍ଦେଶ୍ୟର ସୂଚନା ବା ଆଭାସ ଦିଆଯାଇ ପାରେ । 'ଖା', 'ଖାଅ', 'ଖାଆନ୍ତୁ' ଓ 'ଖାଇବାହୁଅନ୍ତୁ' ଆଦିର ଅର୍ଥ ମୋଟାମୋଟି ସମାନ ହେଲେ ହେଁ ସର୍ବତୋଭାବେ ସମାନ ନୁହେଁ । ଏମାନଙ୍କ ମଧ୍ୟରେ ଥିବା ବ୍ୟାକରଣ ଗତ ଭେଦର ମାପକାଠିରେ ଅର୍ଥଗତ ଭେଦକୁ ମାପିବାର ପ୍ରଚେଷ୍ଟା କରାଗଲେ ତା' ହୁଏତ ଟିକିଏ ଅଧିକ ସ୍ପଷ୍ଟ ଭାବରେ ବୁଝାଯାଇ ପାରିବ । ଅନ୍ୟଥା ତା'ର ଅର୍ଥ ଏତେ ସ୍ପଷ୍ଟ ନ ହୋଇପାରେ । ଅବଶ୍ୟ ବ୍ୟାକରଣରେ ରୂପର ସହ ଅର୍ଥର ସମ୍ପର୍କ ସମ୍ପୂର୍ଣ୍ଣ ଭାବରେ ଆବିଷ୍କାର କରିବା ଏବେ ବି ସମ୍ଭବ ହୋଇ ପାରିନାହିଁ । ପୁଣି ପୂର୍ବୋକ୍ତ ଉଦାହରଣଟି ଗୋଟିଏ ଅତି ସହଜ ଓ ସରଳ ଉଦାହରଣ । ଏହାକୁ ଧରି ସାହିତ୍ୟ କୃତିରେ ବିଭିନ୍ନ ପରିବେଷଣ ଶୈଳୀର ଅନ୍ତରାଳରେ ଥିବା ବ୍ୟାକରଣଗତ ଭେଦ କିପରି ନିର୍ଦ୍ଦିଷ୍ଟ ବକ୍ତବ୍ୟର ଅର୍ଥର - ବିଶେଷଭାବରେ ସ୍ପଷ୍ଟ ଭାବରେ ସୂଚିତ ନ ହୋଇ ଲୁକ୍‌କାୟିତ ଭାବରେ ଥିବା ଅର୍ଥର - ଅବବୋଧରେ ବିଶେଷ ଭାବରେ ସହାୟକ ହୁଏ, ତା' କିଛିଟା ଅନୁମାନ କରାଯାଇ ପାରିବ ସିନା ସମ୍ପୂର୍ଣ୍ଣ ଭାବରେ ବୁଝାଯାଇପାରିବ ନାହିଁ । କାରଣ ସାହିତ୍ୟ କୃତିରେ ମୋଟାମୋଟି ସମାନ ଅର୍ଥବାଚୀ ବିଭିନ୍ନ ପରିବେଷଣ ଶୈଳୀ ମଧ୍ୟରେ ଥିବା ପାର୍ଥକ୍ୟ (contrast) ଦେଖାଇ ଦିଆହୁଏ ନାହିଁ, ସେ ପ୍ରଚେଷ୍ଟା ଆଦୌ କରାଯାଏ ନାହିଁ । ତା'ମଧ୍ୟରେ ପାଠକ ବା ସମାଲୋଚକ କେବଳ ଗୋଟିଏ ପରିବେଷଣ ଶୈଳୀର ପରିଚୟ ପାଏ; ବିଭିନ୍ନ ବିକଳ୍ପ ପରିବେଷଣ ଶୈଳୀର ପରିଚୟ ପାଏ ନାହିଁ । ବିକଳ୍ପ ପରିବେଷଣ ଶୈଳୀ ସମ୍ପର୍କୀୟ ସଚେତନତା ତା'ର ନଥାଏ । କିନ୍ତୁ

ଗୋଟିଏ ପରିବେଷଣ ଶୈଳୀକୁ ଆଖି ଆଗରେ ରଖି ତା'ର ବିକଳ୍ପ ପରିବେଷଣ ଶୈଳୀଗୁଡ଼ିକର ପରିକଳ୍ପନା କରାଯାଇ ସେମାନଙ୍କ ମଧ୍ୟରେ ଥିବା ବ୍ୟାକରଣ ଗତ ଭେଦର ଆବିଷ୍କାର କରାଯାଇ ପାରିଲେ ହିଁ ସେହି ପରିବେଷଣ ଶୈଳୀର ବିଶେଷ ଅର୍ଥ ଜଣାଯାଇ ପାରେ । ପୁଣି ମୋଟାମୋଟି ସମାନ-ଅର୍ଥବାଚୀ ବିଭିନ୍ନ ପରିବେଷଣ ଶୈଳୀ ସମ୍ପର୍କୀୟ ସଚେତନତା ଉପରେ ଭାଷାବିଜ୍ଞାନର କେତେକ ଅତ୍ୟାଧୁନିକ ସିଦ୍ଧାନ୍ତ ବିଶେଷ ଭାବେ, Noam Chomskyଙ୍କ deep structure ଓ surface structure ସିଦ୍ଧାନ୍ତ, ପ୍ରତିଷ୍ଠିତ । ତେଣୁ ସାହିତ୍ୟରେ ପରିବେଷଣ ଶୈଳୀର ବିଚାର ପ୍ରସଙ୍ଗରେ ବ୍ୟାକରଣ ଓ ଭାଷା ବିଜ୍ଞାନକୁ ବାଦ ଦେଲେ ସାହିତ୍ୟ ସମୀକ୍ଷା ପୂର୍ଣ୍ଣାଙ୍ଗ ହୋଇ ନପାରେ; ସାହିତ୍ୟ କୃତିର ଅବବୋଧ ଓ ମୂଲ୍ୟାୟନ ଠିକ୍ ହୋଇ ନପାରେ ।

ଅବଶ୍ୟ ସାହିତ୍ୟ ସ୍ରଷ୍ଟା ସବୁବେଳେ ସଚେତନ ଭାବରେ ବିକଳ୍ପ ପରିବେଷଣ ଶୈଳୀ ମଧ୍ୟରୁ ଗୋଟିକୁ ବାଛି ନିଅନ୍ତି ନାହିଁ । କିନ୍ତୁ ତା' ବୋଲି ପରିବେଷଣ ଶୈଳୀର ଗୁରୁତ୍ୱ କମ୍ ହେବାର କୌଣସି କାରଣ ନାହିଁ । ପୁଣି ଏଇ ପରିବେଷଣ ଶୈଳୀକୁ କେନ୍ଦ୍ରକରି ସ୍ରଷ୍ଟା ମନର ଅବଚେତନ ସ୍ତରକୁ କଳନା କରିବା ଓ ତା'ର ବ୍ୟକ୍ତିତ୍ୱ ମାପିବା ମଧ୍ୟ ଅପେକ୍ଷାକୃତ ଭାବରେ ସହଜ ହୋଇପାରେ । ତେଣୁ ସ୍ରଷ୍ଟାର ପରିବେଷଣ ଶୈଳୀ ସମ୍ପର୍କୀୟ ସଚେତନତା ନଥାଇ ପାରେ କିନ୍ତୁ ସମୀକ୍ଷକର ସେଇ ସଚେତନତା ରହିବା ଅତ୍ୟନ୍ତ ଆବଶ୍ୟକ ।

ଆଧୁନିକ ଭାଷାବିଜ୍ଞାନର ନୀତି ନିୟମକୁ ଓଡ଼ିଆ ଭାଷା ଉପରେ ପ୍ରୟୋଗ କରି ଓଡ଼ିଆ ଭାଷା ଅନୁଶୀଳନର ପ୍ରଚେଷ୍ଟା ଏବେବି ଉଦ୍ୟୋଗ-ପର୍ବ ଅତିକ୍ରମ କରିବାପାଇଁ ସମର୍ଥ ହୋଇପାରି ନାହିଁ । ଓଡ଼ିଆ ଭାଷା ଉପରେ ଆଧୁନିକ ଭାଷାବିଜ୍ଞାନର ନୀତି ନିୟମକୁ ପ୍ରୟୋଗ କରାଯାଇଥିଲେ, ଓଡ଼ିଆ ଭାଷାର ଆଧୁନିକ ଭାଷା ବିଜ୍ଞାନ ସମ୍ମତ ଅନୁଶୀଳନ କରାଯାଇଥିଲେ ତା'ର ଫଳାଫଳକୁ ବା ନିର୍ଯ୍ୟାସକୁ ସାହିତ୍ୟ ସମାଲୋଚନାରେ ପ୍ରୟୋଗ କରି ସାହିତ୍ୟ କୃତିର ଅବବୋଧ ଓ ମୂଲ୍ୟାୟନରେ ତା'ର ଗୁରୁତ୍ୱ ଦେଖାଇ ଦେବା ସହଜ ହୁଅନ୍ତା । ଏ ଯାବତ୍ ତା' ହୋଇପାରି ନାହିଁ । ପୁଣି ଓଡ଼ିଆ ସାହିତ୍ୟ ସମାଲୋଚନାରେ ଆଗ୍ରହ ପ୍ରକାଶ କରୁଥିବା ବହୁ ବ୍ୟକ୍ତି ଆଧୁନିକ ଭାଷାବିଜ୍ଞାନ ପରିଭାଷା ସହ ଆଦୌ ପରିଚିତ ନୁହଁନ୍ତି କହିଲେ ଚଳେ । ଏଇ ଉଭୟ କାରଣରୁ ଏ ଆଲୋଚନା ଖଣ୍ଡିତ ରହିବା ପାଇଁ ବାଧ୍ୟ ।

ଭୀମା ଧୀବର ବିରଚିତ 'କପଟପାଶା'କୁ ଅବଲମ୍ବନ କରି ଏ ପ୍ରବନ୍ଧରେ ଭାଷାବିଜ୍ଞାନ କିପରି ଗୋଟିଏ ମଧ୍ୟଯୁଗୀୟ ସାହିତ୍ୟ କୃତିର ଅବବୋଧ ଓ ମୂଲ୍ୟାୟନରେ

ସହାୟକ ହୋଇପାରେ ତା ଆବିଷ୍କାର କରିବାର ପ୍ରଚେଷ୍ଟା କରାଯିବ । ଅବଶ୍ୟ 'କପଟପାଶା' ମଧ୍ୟଯୁଗର ଏକ ପ୍ରତିନିଧି ମୂଳକ କାବ୍ୟକୃତି ବୋଲି ଏଠାରେ ଦାବି କରାଯାଉନାହିଁ । ହାତ ପାଆନ୍ତାରେ ଥିଲା ଓ ହଠାତ୍ ମିଳିଗଲା- ତାହା ହିଁ ଏହାକୁ ବାଛିବାର ବୋଧହୁଏ ପ୍ରଧାନ କାରଣ । ଏହାର ଆକାର କ୍ଷୁଦ୍ର । ହୁଏତ ଏହାକୁ ବାଛିବାର ତାହା ଅନ୍ୟ ଏକ କାରଣ । ଅବଶ୍ୟ ଏଥିରେ ମଧ୍ୟଯୁଗୀୟ କାବ୍ୟଧାରାର କେତେକ ସାଧାରଣ ଧର୍ମ ରହିଅଛି । ପୁଣି 'କପଟପାଶା'କୁ ଅବଲମ୍ବନ କରି ଏ ପ୍ରବନ୍ଧ ରଚିତ ହେଲେ ହେଁ ଏଥିରେ କଦବା କ୍ୱଚିତ ମଧ୍ୟଯୁଗୀୟ ଅନ୍ୟାନ୍ୟ କାବ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରାଯିବ ବା ସେଥିରୁ ଉଦାହରଣ ଦିଆଯିବ ।

ଅଳଙ୍କାର ଶାସ୍ତ୍ରରେ କୁହାଯାଇଛି-

"ଅନୁଭାବ ବିଭାବାନାଂ ବର୍ଣ୍ଣନାଂ କାବ୍ୟମୁଚ୍ୟତେ
ତେଷାମେବ ପ୍ରୟୋଗସ୍ତୁ ନାଟ୍ୟ ଗୀତାଦି ରଞ୍ଜିତମ୍ ।"

ଏହାର ମୋଟାମୋଟି ଅର୍ଥ କାବ୍ୟ ବର୍ଣ୍ଣନାତ୍ମକ ଓ ନାଟକ ପ୍ରୟୋଗାତ୍ମକ । ଆଉ ଏଇ ପ୍ରୟୋଗାତ୍ମକତାର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଭାଗ ହେଲା ସଂଳାପ । ନାଟକ ସମ୍ପର୍କରେ ଆହୁରି କୁହାଯାଇଛି "ତତ୍ରାଭିନେୟମ୍ ଦୃଶ୍ୟମ୍" । ଅର୍ଥାତ୍ ଦୃଶ୍ୟକାବ୍ୟ ବା ନାଟକ ଅଭିନୟାତ୍ମକ । ଅଳଙ୍କାର ଶାସ୍ତ୍ରରେ ୪ ପ୍ରକାର ଅଭିନୟର କଥା କୁହାଯାଇଛି ।

| | |
|---|---|
| ୧- ଆହାର୍ଯ୍ୟ | ୨- ଆଙ୍ଗିକ |
| ୩- ବାଚିକ | ୪- ସାତ୍ତ୍ୱିକ |

ଏ ମଧ୍ୟରେ ବାଚିକ ଅଭିନୟ ହେଲା ସଂଳାପ । ସଂଳାପ ହେଉଛି ଜଣେ ବ୍ୟକ୍ତିର ଉକ୍ତି ବା ଏକାଧିକ ବ୍ୟକ୍ତିଙ୍କ ଉକ୍ତି-ପ୍ରତ୍ୟୁକ୍ତି ବା କଥୋପକଥନ ବା ବ୍ୟାକରଣର ଭାଷାରେ ପ୍ରତ୍ୟକ୍ଷୋକ୍ତି (direct speech) । ନାଟକରେ ଏହି ସଂଳାପର ଭିତର ଦେଇ ଘଟଣାର ଗତିକୁ ଆଗେଇ ନିଆଯାଏ; ପୁଣି ଘଟଣାର ଏହି ଗତି ହୁଏତ ଧୀର ମନ୍ଥର ବା ଅତି ଦ୍ରୁତ ବି ହୋଇପାରେ । କାବ୍ୟରେ କିନ୍ତୁ ବର୍ଣ୍ଣନା ଗତିର ବାହକ ନ ହୋଇ ବାଧକ ହୁଏ । ବର୍ଣ୍ଣନାର ବାହୁଲ୍ୟ ହେଲେ ଘଟଣାର ଗତି ଏତେ ଧୀର ମନ୍ଥର ହୁଏ ଯେ କାବ୍ୟ ପଠନ ବେଳେବେଳେ ଅତ୍ୟନ୍ତ କ୍ଳାନ୍ତିଜନକ ଓ ନୀରସ ହୁଏ । ହୁଏତ ଏହି କାରଣରୁ ଓ କାବ୍ୟର ବର୍ଣ୍ଣନାତ୍ମକତା ହେତୁ କାବ୍ୟ ତୁଳନାରେ ନାଟକ ଅଧିକ ଚିତ୍ତାକର୍ଷକ ଓ ମନୋରମ ବୋଲି ବିଚାର କରାଯାଇ କୁହାଯାଇଥିଲା "କାବ୍ୟେଷୁ ନାଟକମ୍ ରମ୍ୟମ୍" । ତେଣୁ ଅଧିକ ଚିତ୍ତାକର୍ଷକ ଓ ମନୋରମ କରିବାପାଇଁ

କାବ୍ୟକୁ ନାଟକୀୟ କରାଯାଏ । ଆଉ ଯେହେତୁ ନାଟକର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଭାବ ହେଉଛି ସଂଳାପ, କାବ୍ୟକୁ ନାଟକୀୟ କରିବା ପାଇଁ କାବ୍ୟରେ ସଂଳାପ ସଂଯୋଜନା ଉପରେ ଗୁରୁତ୍ୱ ଦିଆଯାଏ ।

ନାଟକରେ ଘଟଣାର ଗତିକୁ ଆଗେଇ ନେବା ବ୍ୟତୀତ ସଂଳାପର ଅନ୍ୟ ଏକ ଭୂମିକା ମଧ୍ୟ ରହିଅଛି । ଅତୀତ ସହ ବର୍ତ୍ତମାନର, ଦୂର ସହ ନିକଟର, କଳ୍ପନା ସହ ବାସ୍ତବର ଯୋଗସୂତ୍ର ସ୍ଥାପନ କରିବାରେ ସାହିତ୍ୟର ଅନ୍ୟାନ୍ୟ ବିଭାଗ ବା ବର୍ଗ ତୁଳନାରେ ନାଟକ ଅଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ତା'ର କାରଣ ନାଟକ ପ୍ରୟୋଗାତ୍ମକ; ନାଟକ ଅଭିନୟାତ୍ମକ । ଆଉ ଅତୀତ ସହ ବର୍ତ୍ତମାନର ଯୋଗସୂତ୍ର ସ୍ଥାପନ କରିବାରେ ସଂଳାପର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ କାବ୍ୟର ପରିକଳ୍ପନା ଅତୀତର ପୃଷ୍ଠଭୂମିରେ କରାଯାଇ ପାରିଥାଏ- କିନ୍ତୁ ଅତୀତର ପୃଷ୍ଠଭୂମିରେ, ପରିକଳ୍ପିତ କାବ୍ୟରେ ଯେଉଁ ସଂଳାପ ସଂଯୋଜିତ ହୁଏ ସେ ସଂଳାପ ଅତୀତର ହୋଇ ପାରେ; ତା' କିନ୍ତୁ ଅତୀତକୁ ବର୍ତ୍ତମାନରେ ପରିଣତ କରିଦିଏ; ତାହା ବର୍ତ୍ତମାନର ସଂଳାପରେ ପରିବର୍ତ୍ତିତ ହୋଇଯାଏ । ତେଣୁ ଅତୀତର ପୃଷ୍ଠଭୂମିରେ ପରିକଳ୍ପିତ ସଂଳାପ ଅନ୍ତର୍ଗତ ବାକ୍ୟଗୁଡ଼ିକର ସମାପିକା କ୍ରିୟାପଦରେ ନିଶ୍ଚିତ ଭାବରେ କେବଳ ଅତୀତ କାଳର ବ୍ୟବହାର କରାଯାଏ ନାହିଁ, ବରଂ ଅତୀତ ଅପେକ୍ଷା ବର୍ତ୍ତମାନ, ଭବିଷ୍ୟତ ଓ ସମ୍ଭାବନା କାଳର ବ୍ୟବହାର ଅଧିକ ହୁଏ ଓ ତା'ର ସମ୍ଭାବନା ଅଧିକ ଥାଏ । ତେଣୁ ବିଭିନ୍ନ କାଳ ମଧ୍ୟରେ ପରିକଳ୍ପିତ ବ୍ୟବଧାନ ଭାଙ୍ଗି ସଂଳାପ ସେମାନଙ୍କ ମଧ୍ୟରେ ସାମ୍ୟ ପ୍ରତିଷ୍ଠା କରେ । ପୁଣି ଏହି କାରଣରୁ କାବ୍ୟ ମଧ୍ୟରେ ସଂଳାପର ଭୂମିକା ଆହୁରି ଗୁରୁତ୍ୱପୂର୍ଣ୍ଣ । କାବ୍ୟ ପ୍ରାୟ ଅତୀତର ପୃଷ୍ଠଭୂମି ଉପରେ ରଚିତ ହୁଏ । ଆଉ ଅତୀତର ପୃଷ୍ଠଭୂମିରେ ରଚିତ ହୋଇଥିଲେ ମଧ୍ୟ କାବ୍ୟରେ ସଂଯୋଜିତ ସଂଳାପ ଭିତର ଦେଇ କାବ୍ୟରେ ବର୍ତ୍ତମାନ ଭବିଷ୍ୟତ ଓ ସମ୍ଭାବନା କାଳଯୁକ୍ତ ସମାପିକା କ୍ରିୟାପଦର ବ୍ୟବହାର କରାଯାଏ । ଏହା ମାଧ୍ୟମରେ କେବଳ ଅତୀତ କାଳ ଯୁକ୍ତ ସମାପିକା କ୍ରିୟାର ବାରମ୍ବାର ବ୍ୟବହାର ଫଳରେ କ୍ଳାନ୍ତିକର ଓ ଶ୍ରୁତିକଟୁ ହୋଇପଡନ୍ତା ଯେଉଁ କାବ୍ୟ, ତାହାକୁ ନାଟକୀୟ, ବୈଚିତ୍ର୍ୟମୟ, ଅଧିକ ଚିତ୍ତାକର୍ଷକ ଓ ଅଧିକ ମନୋରମ କରାଯାଇପାରେ ।

ତେଣୁ କାବ୍ୟରେ ସଂଳାପ ସଂଯୋଜନାକୁ କେନ୍ଦ୍ରକରି କିଛି ପରିମାଣରେ ଅନ୍ତତଃ କାବ୍ୟର ସାଫଲ୍ୟ ଓ କଳାଗତ ଉତ୍କର୍ଷକୁ କଳ୍ପନା କରିବାର ପ୍ରଚେଷ୍ଟା କରାଯାଇ ପାରେ ।

ସଂଳାପ କାବ୍ୟକୁ ନାଟକୀୟ ତଥା ଅଧିକ ଚିତ୍ତାକର୍ଷକ ତଥା ମନୋରମ କରିପାରେ । ତେଣୁ ବହୁ କବି, ଅଜ୍ଞାତସାରରେ ହେଉ ପଛକେ- କାବ୍ୟରେ ସଂଳାପ ସଂଯୋଜନ କରନ୍ତି । ଅବଶ୍ୟ ତା'ର ଅର୍ଥ ନୁହେଁ ପ୍ରାୟ ପ୍ରତ୍ୟେକ କବି ସୁବିଧା ସୁଯୋଗ ପାଇଲେ ହିଁ କାବ୍ୟରେ ସଂଳାପ ସଂଯୋଜନ କରିଥାଆନ୍ତି । ସବୁ କବି ସୁବିଧା ସୁଯୋଗ ଥିଲେ ମଧ କାବ୍ୟରେ ସବୁବେଳେ ସଂଳାପ ସଂଯୋଜନ କରନ୍ତି ନାହିଁ । ଉଦାହରଣ ସ୍ୱରୂପ ଅଭିନୟ ଉଦ୍ଦେଶ୍ୟରେ ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ'ରେ ଶ୍ରୀରାମ ଓ ପରଶୁରାମ ଭେଟ ଅତି ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ପରଶୁରାମ ଓ ଲକ୍ଷ୍ମଣ ତଥା ପରଶୁରାମ ଓ ଶ୍ରୀରାମଙ୍କ ମଧ୍ୟରେ ଉକ୍ତି ପ୍ରତ୍ୟୁକ୍ତିର ସୂଚନା ଇ ନାହିଁ । ସେହିପରି ପରଶୁରାମଙ୍କ ଆଗମନ ସମ୍ବାଦରେ ଭୀତ ଦଶରଥ ଓ ବଶିଷ୍ଠ, ବାମଦେବ ଓ ବିଶ୍ୱାମିତ୍ରଙ୍କ ମଧ୍ୟରେ ଆଲୋଚନା ହୋଇଥିବାର ସୂଚନା ନାହିଁ । ଅଥଚ ରଘୁନାଥ ଦାସଙ୍କ 'ରାମଲୀଳା'ରେ ଓ ଏପରିକି ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ'ରେ ଏମାନଙ୍କ ମୁହଁରେ ଦୀର୍ଘ ଉକ୍ତି-ପ୍ରତ୍ୟୁକ୍ତି ବା ସଂଳାପ ଦିଆଯାଇଛି ।

ପୁଣି କାବ୍ୟରେ ସଂଳାପର (ପ୍ରତ୍ୟକ୍ଷୋକ୍ତିର) ସଂଯୋଜନା କାବ୍ୟକୁ ନାଟକୀୟ ଓ ଅଧିକ ମନୋରମ କରେ । ତା'ର ଅର୍ଥ ନୁହେଁ ଯେ ଯତ୍ରତତ୍ର, ଆବଶ୍ୟକ ଥାଉ ବା ନଥାଉ, କେବଳ ସଂଳାପ ସଂଯୋଜନାଦ୍ୱାରା କାବ୍ୟର କଳାଗତ ଉତ୍କର୍ଷ ବୃଦ୍ଧିପାଏ । ସେହିପରି ବିଶେଷ ସଂଳାପ ନ ଥାଇ ମଧ କାବ୍ୟର କଳାଗତ ଉତ୍କର୍ଷ ଥାଇପାରେ । କାବ୍ୟର ସାଫଲ୍ୟ ବିଚାରରେ ସଂଳାପ ଅବଶ୍ୟ ଏକମାତ୍ର ମାନଦଣ୍ଡ ନୁହେଁ, କିନ୍ତୁ ଅନ୍ୟତମ ମାନଦଣ୍ଡ । ତେଣୁ କାବ୍ୟରେ କେତେ ସଂଳାପ ସଂଯୋଜିତ ହୋଇଛି ତା' ବିଚାରକୁ ନେଇ ଅନ୍ତତଃ କିଛି ପରିମାଣରେ କାବ୍ୟ କେତେ ଦୂର ନାଟକୀୟ ଓ ସେହି ହେତୁ ସଫଳ ହୋଇଛି, ତା'ର ବିଚାର କରାଯାଇପାରେ ।

'କପଟପାଶା'ରେ ବୈବସ୍ୱତ ମନୁଙ୍କ ପ୍ରଶ୍ନର ଉତ୍ତରରେ ଅଗସ୍ତ୍ୟ ମୁନି ତାଙ୍କୁ 'କପଟପାଶା'ର ବିଷୟବସ୍ତୁ କହିଛନ୍ତି । ଏଇ ଦୃଷ୍ଟିରୁ ଦେଖିଲେ ସମଗ୍ର କାବ୍ୟଟି ସଂଳାପ ମାତ୍ର । ଏହା ଏକ ପୁରାଣ ରଚନା ରୀତି । କିନ୍ତୁ ମୁନିଙ୍କ ସଂଳାପ ମଧ୍ୟରେ ବହୁ ଉପ-ସଂଳାପର ସଂଯୋଜନା କରାଯାଇଛି । ଏହି କାବ୍ୟରେ ଅଧିକାଂଶ ଚରିତ୍ରଙ୍କ କଳ୍ପିତ ପ୍ରତ୍ୟକ୍ଷୋକ୍ତିକୁ କାବ୍ୟରେ ଉଦ୍ଧାର କରାଯାଇଛି । ବୈବସ୍ୱତ ମନୁ ଓ ଅଗସ୍ତ୍ୟ ମୁନିଙ୍କ ବ୍ୟତୀତ ଯେଉଁ ଚରିତ୍ରମାନଙ୍କ ଉକ୍ତି ଉଦ୍ଧାର କରାଯାଇଛି ସେମାନେ ହେଲେ ଦ୍ରୌପଦୀ, ଦୁର୍ଯ୍ୟୋଧନ, ଦୁଃଶାସନ, ଶକୁନି, ଦ୍ରୋଣ, ଭୀଷ୍ମ, ଧୃତରାଷ୍ଟ୍ର, କୁନ୍ତୀ, ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ, ଶ୍ରୀକୃଷ୍ଣ, ସତ୍ୟଭାମା, ଗରୁଡ଼, ଗରୁଡ଼ ପତ୍ନୀ ମଦନା, ସୂର୍ଯ୍ୟ,

ସୂର୍ଯ୍ୟଙ୍କ ସାରଥି, ଶଶା, ଶୃଗାଳ, ବନର ପଶୁ ସମୂହ, ଦ୍ୱାରୀମାନେ । 'କପଟପାଶା'ରେ ବେଳେବେଳେ ଏକମୁଖୀ ସଂଳାପ ବା ଗୋଟିଏ ନିର୍ଦ୍ଦିଷ୍ଟ ଚରିତ୍ରର ଉକ୍ତି ଓ ଅନ୍ୟ ସମୟରେ ଦ୍ୱିମୁଖୀ ସଂଳାପ ବା ଉକ୍ତି-ପ୍ରତ୍ୟୁକ୍ତିର ସଂଯୋଜନ ହୋଇଛି । ବହୁ ଦ୍ୱିମୁଖୀ ସଂଳାପ ଧାରାବାହିକ ଭାବରେ ସନ୍ନିବେଶିତ ହୋଇଥିଲେ ମଧ୍ୟ ପ୍ରକୃତ ପକ୍ଷେ 'କପଟପାଶା'ରେ ବହୁମୁଖୀ ସଂଳାପ ନାହିଁ । 'କପଟପାଶା'ରେ ସନ୍ନିବେଶିତ ସଂଳାପଗୁଡ଼ିକର ଗୋଟିଏ ତାଲିକା ନିମ୍ନରେ ଦିଆଗଲା:

| | | | |
|---|---|---|---|
| ୨ୟ ଛାନ୍ଦ: | ବୈବସ୍ୱତ ମନୁ | <—> | ଅଗସ୍ତ୍ୟ |
| | ଦୁର୍ଯ୍ୟୋଧନ | <—> | ଦୁଃଶାସନ |
| ୩ୟ ଛାନ୍ଦ: | ଦ୍ୱାରୀମାନେ | —> | କୁନ୍ତୀ |
| | କୁନ୍ତୀ | <—> | ଦୁଃଶାସନ |
| | କୁନ୍ତୀ | —> | ଶ୍ରୀକୃଷ୍ଣ (ହରି) |
| | କୁନ୍ତୀ | —> | ଦ୍ରୌପଦୀ |
| ୪ର୍ଥ ଛାନ୍ଦ: | ଦ୍ରୌପଦୀ | <—> | ଦୁଃଶାସନ |
| | ଦ୍ରୌପଦୀ | —> | ଶ୍ରୀକୃଷ୍ଣ (ଭଗବାନ) |
| | ଦ୍ରୌପଦୀ | —> | ଦୁଃଶାସନ |
| | ଦୁଃଶାସନ | —> | ଦୁର୍ଯ୍ୟୋଧନ |
| | ଦୁର୍ଯ୍ୟୋଧନ | <— > | ଶକୁନି |
| | ଦୁର୍ଯ୍ୟୋଧନ | <—> | ଦ୍ରୌପଦୀ |
| ୫ମ ଛାନ୍ଦ: | ଦ୍ରୌପଦୀ | —> | ଦୁର୍ଯ୍ୟୋଧନ |
| | ଶଶା | <—> | ନାରାୟଣ (ଗୋବିନ୍ଦ) |
| | ଶଶା | <—> | ଶୃଗାଳ |
| | ସର୍ବେ(ପଶୁମାନେ) | <—> | ଶଶା |
| | ଦୁର୍ଯ୍ୟୋଧନ | —> | ଦୁଃଶାସନ |
| ୬ଷ୍ଠ ଛାନ୍ଦ: | ଦ୍ରୌପଦୀ | —> | ଯୁଧିଷ୍ଠିର |
| | ଦ୍ରୌପଦୀ | <—> | ଅର୍ଜୁନ |
| | ଦ୍ରୌପଦୀ | <—> | ନକୁଳ |
| | ଦ୍ରୌପଦୀ | <—> | ସହଦେବ |

| | | | |
|---|---|---|---|
| ୭ମ ଛାନ୍ଦ: | ଦ୍ରୌପଦୀ | <—> | ଭୀମ |
| | ଭୀମ | —> | ଦ୍ରୌପଦୀ |
| | ଭୀଷ୍ମ | —> | ଦ୍ରୋଣ |
| | ଦୁଃଶାସନ | —> | ଭୀମ |
| | ଦୁର୍ଯ୍ୟୋଧନ | —> | ସଭାଜନ |
| | ଯୁଧିଷ୍ଠିର | <—> | ଭୀମ |
| | ଅର୍ଜୁନ | —> | ଭୀମ |
| ୮ମ ଛାନ୍ଦ: | ଦ୍ରୌପଦୀ | <—> | ଶ୍ରୀକୃଷ୍ଣ |
| | ଶ୍ରୀକୃଷ୍ଣ | <—> | ସତ୍ୟଭାମା |
| | ଗରୁଡ଼ | <—> | ମଦନା |
| | ଶ୍ରୀକୃଷ୍ଣ | <—> | ଗରୁଡ଼ |
| | ଦ୍ରୌପଦୀ | <—> | ଶ୍ରୀକୃଷ୍ଣ |
| | ଦ୍ରୌପଦୀ | —> | ସୂର୍ଯ୍ୟ |
| ୯ମ ଛାନ୍ଦ: | ସୂର୍ଯ୍ୟ | <—> | ସାରଥି |
| | ସୂର୍ଯ୍ୟ | —> | ଛାୟାମାୟା |
| ୧୦ମ ଛାନ୍ଦ: | ଦୁର୍ଯ୍ୟୋଧନ | —> | ଦୁଃଶାସନ |
| | ଦୁର୍ଯ୍ୟୋଧନ | <—> | ଶକୁନି |
| | ଦୁଃଶାସନ | —> | ଦୁର୍ଯ୍ୟୋଧନ |
| | ଦୁର୍ଯ୍ୟୋଧନ | —> | ଦୁଃଶାସନ |
| | ଦ୍ରୋଣ | —> | ଦୁର୍ଯ୍ୟୋଧନ |
| | ଡଗରା | —> | ଧୃତରାଷ୍ଟ୍ର |
| | ଧୃତରାଷ୍ଟ୍ର | —> | (ସ୍ୱଗତ ?) |
| | କୁଳବଧୂ | —> | ଦ୍ରୌପଦୀ |

ଏହିପରି ଏହି କ୍ଷୁଦ୍ରକାବ୍ୟଟି ମଧ୍ୟରେ ୪୪ଗୋଟି ସଂଳାପ ସଂଯୋଜିତ । [ଏ ମଧ୍ୟରୁ ଦୁଃଶାସନ ବାରୁଣୀବନ୍ତ ପ୍ରବେଶ ବେଳେ "ଆରେ ଆରେ ପାଣ୍ଡବ ରେ" ବୋଲି ଡାକିବା (୩ୟ ଛାନ୍ଦ) ଓ ଭୀମ ସଭାରେ 'ରେ ରେ କାର' ଶବ୍ଦ କରିବା (୭ମ ଛାନ୍ଦ) ଆଦି ବାଦ୍ ପଡ଼ିଛି ।] କାବ୍ୟଟି ୧୦ ଛାନ୍ଦ ବିଶିଷ୍ଟ । ତେଣୁ ପ୍ରତ୍ୟେକ

ଛାନ୍ଦରେ ହାରାହାରି ୪ଟିରୁ ଅଧିକ ସଂଳାପ ସ୍ଥାନ ପାଇଛି । ପୁଣି ପ୍ରତ୍ୟେକ ସଂଳାପ ଅନ୍ତର୍ଗତ ବାକ୍ୟର ସମାପିକା କ୍ରିୟା ପଦର କାଳ ପ୍ରାୟ ଅତୀତ ନୁହେଁ, ବର୍ତ୍ତମାନ । ଅତୀତର ପୃଷ୍ଠଭୂମିରେ ରଚିତ ଏହି କାବ୍ୟର ପ୍ରାୟ ପ୍ରତ୍ୟେକ ଛାନ୍ଦରେ ବାରମ୍ବାର ବର୍ତ୍ତମାନ କାଳଯୁକ୍ତ ସମାପିକା କ୍ରିୟାର ବ୍ୟବହାର ଫଳରେ ଅତୀତ ଓ ବର୍ତ୍ତମାନ ମଧ୍ୟରେ ଏକ ଅପୂର୍ବ ଯୋଗାଯୋଗ ଥିବାର ସୂଚନା ଦିଆଯାଇ ପାରୁଚି । କାରଣ କାବ୍ୟଟିର ଅନ୍ୟ ବର୍ଣ୍ଣନାତ୍ମକ ଅଂଶରେ ପ୍ରାୟ ଅତୀତ କାଳଯୁକ୍ତ ସମାପିକା କ୍ରିୟାପଦ ବ୍ୟବହୃତ । ଏହିପରି ଅତୀତ କାଳଯୁକ୍ତ ସମାପିକା କ୍ରିୟାପଦ ଓ ବର୍ତ୍ତମାନ କାଳଯୁକ୍ତ ସମାପିକା କ୍ରିୟାପଦର ତିଳତଣ୍ଡୁଳିତ ବ୍ୟବହାର ଫଳରେ କାବ୍ୟଟି ଅଧିକ ଚିତ୍ତାକର୍ଷକ ଓ ମନୋରମ ହୋଇପାରିଛି ।

'କପଟପାଶା'ର ବର୍ଣ୍ଣିତ ବିଷୟ ଅତୀତ କାଳର ଅନ୍ତର୍ଗତ । ତେବେ ଗୋଟିଏ ସଂଳାପ ମଧ୍ୟରେ ଆଉ ଗୋଟିଏ ସଂଳାପ ଗର୍ଭିତ ହୋଇଥିବାରୁ ତାହା ଅତୀତର ବିଭିନ୍ନ ସ୍ତରର ସୂଚନା ଦେଇ ଘଟଣାକ୍ରମରେ ଏକ ଗଭୀରତାର ସ୍ପର୍ଶ ଦିଏ । ଉଦାହରଣ ସ୍ୱରୂପ ଅଗସ୍ତ୍ୟ ମୁନି ଅତୀତର ଚରିତ୍ର । ସେ ପୁଣି ବୈବସ୍ୱତ ମନୁଙ୍କ ଆଗରେ ଆହୁରି ଅତୀତର କଥା କହୁଛନ୍ତି, ଯାହାକୁ ଅତୀତର ଗଭୀରତର ୨ୟ ସ୍ତର ନାମରେ ନାମିତ କରାଯାଇ ପାରେ । ପୁଣି ଅତୀତର ଏଇ ୨ୟ ସ୍ତରର (ଦ୍ୱାପର ଯୁଗର) ଚରିତ୍ର ହେଉଛନ୍ତି ଦ୍ରୌପଦୀ । ସେ ହସ୍ତିନାର ରାଜସଭାରେ ଆହୁରି ଅତୀତର - ସତ୍ୟ ଯୁଗର - କଥା କହିଛନ୍ତି, ଯାହାକୁ ଅତୀତର ୩ୟ ସ୍ତର ନାମରେ ନାମିତ କରାଯାଇପାରେ । ଅତୀତର ଏହି ୩ୟ ସ୍ତରର ଚରିତ୍ର ହେଉଛି ଶଶା । ଶଶା ଶୃଗାଳ ଆଗରେ ଆହୁରି ଅତୀତର କଥା କହୁଛି, ଯାହାକୁ ଅତୀତର ୪ର୍ଥ ସ୍ତର ନାମରେ ନାମିତ କରାଯାଇପାରେ । ମୋଟଉପରେ ସଂଳାପ ମଧ୍ୟରେ ସଂଳାପ ଗର୍ଭିତ ହେବାରୁ ଅତୀତର ଚାରିଗୋଟି ସ୍ତରର ପରିକଳ୍ପନା କରାଯାଇ ଅତୀତର ଅତଳସ୍ପର୍ଶୀ ଗଭୀରତାର ଚେତନା ପାଠକମାନଙ୍କୁ ଦିଆଯାଇ ପାରୁଚି । ଆଉ ଅତୀତର ଏଇ ଗଭୀରତମ ୪ର୍ଥ ସ୍ତରର ବର୍ଣ୍ଣନା ପ୍ରସଙ୍ଗରେ କବି ସଂଳାପ ମଧ୍ୟରେ ଭବିଷ୍ୟତ କାଳଯୁକ୍ତ ସମାପିକା କ୍ରିୟାପଦର ବ୍ୟବହାର କରି ଅଛନ୍ତି, ଯଥା: ବନର ପଶୁମାନେ ଶଶାକୁ ଶୃଗାଳ ନିକଟକୁ ପ୍ରେରଣ କଲେ ଓ କହିଲେ,

"ମୋତେ ବୋଇଲେ ଶଶା ବେଗେ ଯିବୁ ।<br>
ଗର୍ତ୍ତମଧ୍ୟରୁ ଶୃଗାଳ ଆଣିବୁ ॥<br>
ସେ ଯେ ନୃପତି ହୋଇବେ ବନରେ ।<br>
ସର୍ବେ ସେବିବୁ ତାହାଙ୍କ ପୟରେ ॥"

ଅନ୍ୟ କଥାରେ ସଂଳାପ ସଂଯୋଜନା ଅତୀତର ଗଭୀରତମ ସ୍ତରରେ ଭବିଷ୍ୟତ କାଳର ସୂଚନା ଦେଇ, ଅତୀତ ଓ ଭବିଷ୍ୟତ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ମଧ୍ୟରେ ଥିବା ବ୍ୟବଧାନ, ଅନ୍ତତଃ କିଛି ପରିମାଣରେ ପରିହାର କରିପାରୁଛି । ଫଳରେ କାବ୍ୟଟି ଅଧିକ ନାଟକୀୟ ହୋଇଛି । ଗୋଟିଏ ନାଟକରେ, ଏକ ଦୃଶ୍ୟ ମଧ୍ୟରେ ଏକ ଗର୍ଭଦୃଶ୍ୟ ବା କ୍ରୋଡ଼୍ ଦୃଶ୍ୟ ଓ ତା' ମଧ୍ୟରେ ଆହୁରି ଏକ ଗର୍ଭ ବା କ୍ରୋଡ଼୍ ଦୃଶ୍ୟ ଥିବାର ସୂଚନା ମଧ୍ୟ ଏହା ଭିତର ଦେଇ ମିଳୁଛି ।

ଅତୀତର ପୃଷ୍ଠଭୂମିରେ ବର୍ତ୍ତମାନ କାଳ ଓ ଭବିଷ୍ୟତ କାଳଯୁକ୍ତ ସମାପିକା କ୍ରିୟାର ବହୁଳ ବ୍ୟବହାର ଭିତର ଦେଇ ଯେପରି କାଳ ରୈଖିକ ନୁହେଁ କିନ୍ତୁ ଚକ୍ରାକାରରେ ଆବର୍ତ୍ତମାନ ବୋଲି ସୂଚନାଟିଏ ଦିଆଯାଇପାରିଛି । ପୁଣି ଅତୀତର ଗଭୀରତମ ୪ର୍ଥ ସ୍ତରରେ ଭବିଷ୍ୟତ କାଳର ବ୍ୟବହାର ଏହି ସୂଚନାକୁ ଆହୁରି ସ୍ପଷ୍ଟ କରିବାରେ ଯଥେଷ୍ଟ ସହାୟକ ହୋଇଛି ବୋଲି ମନେହୁଏ । ବିଷୟଟିକୁ ଅଧିକ ସ୍ପଷ୍ଟ କରିବା ପାଇଁ ଏଇ ପ୍ରସଙ୍ଗରେ ଓଡ଼ିଆ ଭାଷା ସହ ଇଂରାଜୀ ଭାଷାର ପାର୍ଥକ୍ୟ ପ୍ରତି ଦୃଷ୍ଟି ଆକର୍ଷଣ କରାଯାଇପାରେ ।

ଓଡ଼ିଆ ସମାପିକା କ୍ରିୟାପଦଟି ସଂଳାପ ବା ପ୍ରତ୍ୟକ୍ଷୋକ୍ତି ଓ ପରୋକ୍ଷୋକ୍ତି ଉଭୟରେ ସମାନ ରହେ । ବର୍ତ୍ତମାନ ବା ଭବିଷ୍ୟତ କାଳଯୁକ୍ତ ସମାପିକା କ୍ରିୟାପଦ ଅତୀତର ପୃଷ୍ଠଭୂମିରେ ଅପରିବର୍ତ୍ତିତ ଭାବରେ ବ୍ୟବହୃତ ହୁଏ । ଉଦାହରଣ ସ୍ୱରୂପ:

୧। (କ) ରାମ କହୁଛି ଯେ ସେ ଖାଇସାରିଛି ।
(ଖ) ରାମ କହିଲା ଯେ ସେ ଖାଇସାରିଛି ।

୨। (କ) ରାମ କହୁଛି ଯେ ଯେ ପରେ ଖାଇବ ।
(ଖ) ରାମ କହିଲା ଯେ ସେ ପରେ ଖାଇବ ।

ଏଠାରେ ୧(କ)ରେ ମୁଖ୍ୟ ଉପବାକ୍ୟ (Clause)ର କ୍ରିୟା 'କହୁଛି' ଓ ଆଶ୍ରିତ ଉପବାକ୍ୟର କ୍ରିୟା 'ଖାଇସାରିଛି' ଉଭୟ ବର୍ତ୍ତମାନ କାଳର, ମାତ୍ର ୧(ଖ)ରେ ମୁଖ୍ୟ ଉପବାକ୍ୟର କ୍ରିୟା 'କହିଲା' ଅତୀତକାଳର ହୋଇଥିବାବେଳେ ଆଶ୍ରିତ ଉପବାକ୍ୟରେ ଅତୀତକାଳର କ୍ରିୟା ପରିବର୍ତ୍ତେ ବର୍ତ୍ତମାନ କାଳର କ୍ରିୟା 'ଖାଇସାରିଛି' ବ୍ୟବହୃତ ହୋଇଛି । ସେହିପରି ୨(କ) ଓ ୨(ଖ)ରେ ମୁଖ୍ୟ ଉପବାକ୍ୟଗୁଡ଼ିକରେ ଯଥାକ୍ରମେ ବର୍ତ୍ତମାନ କାଳର କ୍ରିୟା 'କହୁଛି' ଓ ଅତୀତକାଳର କ୍ରିୟା 'କହିଲା' ରହିଥିବା ସ୍ଥଳେ ଆଶ୍ରିତ ଉପବାକ୍ୟ ଗୁଡ଼ିକରେ କେବଳ ଭବିଷ୍ୟତ କାଳର କ୍ରିୟା 'ଖାଇବ' ବ୍ୟବହାର କରାଯାଇଛି ।

ଇଂରାଜୀ ଭାଷାରେ କିନ୍ତୁ ଏପରି କ୍ଷେତ୍ରରେ ବର୍ତ୍ତମାନ କାଳଯୁକ୍ତ କ୍ରିୟାପଦ ଅତୀତ କାଳଯୁକ୍ତ କ୍ରିୟାପଦରେ ତଥା shall ଓ will ଯଥାକ୍ରମେ should ଓ would ରେ ପରିବର୍ତ୍ତିତ ହୋଇ ସମାପିକା କ୍ରିୟା ପଦଟି ପରୋକ୍ଷୋକ୍ତିରେ ବା ଅତୀତର ପୃଷ୍ଠଭୂମିରେ ବ୍ୟବହୃତ ବୋଲି ସ୍ପଷ୍ଟ ସୂଚନା ଦିଆଯାଏ, ଯଥା:

୩ । (କ) Ram says that he has eaten.
(ଖ) Ram said that he had eaten.

୪ । (କ) Ram says that he will eat later.
(ଖ) Ram said that he would eat later.

୩(କ)ରେ ମୁଖ୍ୟ ଉପବାକ୍ୟର କ୍ରିୟା 'says' ଓ ଆଶ୍ରିତ ଉପବାକ୍ୟର କ୍ରିୟା 'has eaten' ଉଭୟ ବର୍ତ୍ତମାନ କାଳଯୁକ୍ତ । କିନ୍ତୁ ୩(ଖ)ରେ ମୁଖ୍ୟ ଉପବାକ୍ୟର କ୍ରିୟା 'said' ଅତୀତ କାଳଯୁକ୍ତ ହୋଇଥିବାରୁ ଆଶ୍ରିତ ଉପବାକ୍ୟର କ୍ରିୟା 'had eaten' ମଧ୍ୟ ଅତୀତ କାଳଯୁକ୍ତ ହୋଇଛି । ୪ରେ ଠିକ୍ ତାହା ହିଁ ଘଟିଛି । ୪(କ)ରେ ମୁଖ୍ୟ ଉପବାକ୍ୟର କ୍ରିୟା 'says' ବର୍ତ୍ତମାନ କାଳଯୁକ୍ତ । ତେଣୁ ଆଶ୍ରିତ ଉପବାକ୍ୟର କ୍ରିୟାରେ 'will' ବ୍ୟବହୃତ । ମାତ୍ର ୪(ଖ)ର ମୁଖ୍ୟ ଉପବାକ୍ୟରେ ଅତୀତକାଳର କ୍ରିୟା 'said' ବ୍ୟବହୃତ ହୋଇଥିବା ଯୋଗୁଁ ଆଶ୍ରିତ ଉପବାକ୍ୟଟିରେ ତଦନୁରୂପ 'would eat'ର ବ୍ୟବହାର କରାଯାଇଛି । ଇଂରାଜୀ ଭାଷାଠାରୁ ଓଡ଼ିଆ ଭାଷାର ଏହି ପାର୍ଥକ୍ୟ ଭିତରଦେଇ ଓଡ଼ିଆ ଭାଷା ମଧ୍ୟରେ ଚକ୍ରାକାରରେ ଆବର୍ତ୍ତମାନ କାଳର ସୂଚନା ମିଳିଥାଏ ।

ଅନ୍ୟ ଏକ ଦିଗରୁ ଏଇ ସଂଳାପର ବିଚାର କରାଯାଇପାରେ । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଗୁଡ଼ିକରେ ଏହି ସଂଳାପର ପ୍ରତ୍ୟେକ ଉକ୍ତି ବା ପ୍ରତ୍ୟୁକ୍ତି ସାଧାରଣତଃ /ବୋଲ୍-/, /କହ୍-/, /ଭାଷ୍-/, /ପଚାର୍-/, /ପୁଛ୍-/, /ଡାକ୍-/, /ନିନ୍ଦ୍-/, /ଧିକ୍କାର୍-/ ଓ /ଝିଙ୍ଗାସ୍-/ ଆଦି ଧାତୁରୁ ନିଷ୍ପନ୍ନ କ୍ରିୟାପଦର ପରେ ସଂଯୋଜିତ ହୋଇଥାଏ । ଏହି କ୍ରିୟାପଦଗୁଡ଼ିକୁ ଉକ୍ତି-ପ୍ରତ୍ୟୁକ୍ତି-ସୂଚକ କ୍ରିୟାପଦ ନାମରେ ଅଭିହିତ କରାଯାଇପାରେ । ଅବଶ୍ୟ ବେଳେବେଳେ ଉକ୍ତି ଓ/ବା ପ୍ରତ୍ୟୁକ୍ତିର ପରେ ହିଁ ଏହି ଉକ୍ତି-ପ୍ରତ୍ୟୁକ୍ତି-ସୂଚକ କ୍ରିୟାପଦ ସ୍ଥାନିତ ହୋଇଥିବାର ଲକ୍ଷ୍ୟ କରାଯାଇପାରେ, ଯେପରି ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ'ରେ-

"ବ୍ରହ୍ମଲୋକେ ଥିଲେ ସୀତା ଖୋଜାଇ,
ବାଦ ରଚନେ ଆଣିବି <u>ସେ କହି</u> ।" (୨୮ଶ ଛାନ୍ଦ)

କଦବା କ୍ୱଚିତ କୌଣସି ସୂଚକ କ୍ରିୟାପଦ ନ ଥାଇ ମଧ୍ୟ ଉକ୍ତି-ପ୍ରତ୍ୟୁକ୍ତି ଥାଇପାରେ । ଉଦାହରଣ ସ୍ୱରୂପ ସେହି 'ବୈଦେହୀଶ ବିଳାସ'ରେ ପରଶୁରାମ ଓ ଲକ୍ଷ୍ମଣଙ୍କ କଥୋପକଥନ ପ୍ରସଙ୍ଗରେ ଲକ୍ଷ୍ମଣଙ୍କ ନିମ୍ନଲିଖିତ ଉକ୍ତି ସହ କୌଣସି ସୂଚକ କ୍ରିୟାପଦ ଯୁକ୍ତ ହୋଇନାହିଁ । ଯଥା ନିମ୍ନ ଉଦ୍ଧୃତାଂଶର ଦ୍ୱିତୀୟ ପଦ:

"ବ୍ୟାଳେ ଲୋଷ୍ଟ୍ରେ ପ୍ରହାରିଲାବତ ରହି କହି ।
ବିଷକଂଠେ କ୍ଷୀରକଂଠ ବୋଲୁଥିଲା କେହି ॥
ବିଷକଂଠ ଯେବେ ତବ ଗୁରୁ ହେବା ସ୍ତବ ।
ବିରଚି କି ଆସିଅଛ କହେ ତହୁଁ ଜବ ॥" ('ବୈଦେହୀଶ ବିଳାସ', ୧୬ଶ ଛାନ୍ଦ) । ଅର୍ଥାତ୍ ଲକ୍ଷ୍ମଣଙ୍କ ଉକ୍ତି "ବିଷକଂଠ ଯେବେ ତବ ଗୁରୁ ହେବା ସ୍ତବ ବିରଚି କି ଆସିଅଛ"ରେ କୌଣସି ସୂଚକ କ୍ରିୟାପଦ ଯୁକ୍ତ ହୋଇନାହିଁ ।

ପୁଣି ବେଳେବେଳେ ସରଳଧାତୁରୁ ନିଷ୍ପନ୍ନ ସୂଚକ କ୍ରିୟାପଦ ପରିବର୍ତ୍ତେ ଯୌଗିକଧାତୁରୁ ନିଷ୍ପନ୍ନ କ୍ରିୟାପଦ ମଧ୍ୟ ବ୍ୟବହୃତ ହୁଏ । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆରେ ଏ ପ୍ରସଙ୍ଗରେ ସବୁଠାରୁ ଅଧିକ /ବୋଲ୍-/ ଧାତୁରୁ ନିଷ୍ପନ୍ନ କ୍ରିୟାପଦ ବ୍ୟବହୃତ ହୁଏ । ଲକ୍ଷ୍ୟ କରିବାର ବିଷୟ ଯେ କର୍ତ୍ତା ୩ୟ ପୁରୁଷ ଥିଲେ, ଅଧିକାଂଶ ସମୟରେ /ବୋଲ୍-/ ଧାତୁରୁ ନିଷ୍ପନ୍ନ କ୍ରିୟାପଦ ବ୍ୟବହୃତ ହୁଏ । କିନ୍ତୁ କର୍ତ୍ତା ୧ମ ବା ୨ୟ ପୁରୁଷ ହେଲେ ଅଧିକାଂଶ କ୍ଷେତ୍ରରେ /ବୋଲ୍--/ ଧାତୁରୁ ନିଷ୍ପନ୍ନ ସୂଚକ କ୍ରିୟାପଦ ବ୍ୟବହୃତ ନ ହୋଇ /କହ-/ ବା ଅନ୍ୟ କୌଣସି ଧାତୁରୁ ନିଷ୍ପନ୍ନ ସୂଚକ କ୍ରିୟାପଦ ବ୍ୟବହୃତ ହୁଏ ।

'କପଟପାଶା'ରେ ସବୁଠାରୁ ଅଧିକ ବ୍ୟବହୃତ ସୂଚକ କ୍ରିୟାପଦ /ବୋଲ୍-/ ଓ /କହ-/ ଧାତୁରୁ ନିଷ୍ପନ୍ନ । /ବୋଲ୍-/ ଓ /କହ୍-/ ଛଡା ଆଉ କେତେକ ସରଳଧାତୁରୁ ଓ କେତେକ ଯୌଗିକଧାତୁରୁ ନିଷ୍ପନ୍ନ ସୂଚକ କ୍ରିୟାପଦର ବ୍ୟବହାର ଲକ୍ଷ୍ୟ କରାଯାଇ ପାରେ । ବେଳେବେଳେ ଆଉ କେତେକ ଉପାୟ ଅବଲମ୍ବନରେ ଉକ୍ତି ପ୍ରତ୍ୟୁକ୍ତିର ସୂଚନା କରାଯାଇଛି । ତେବେ /ବୋଲ୍-/ ଓ /କହ-/ ଧାତୁରୁ ନିଷ୍ପନ୍ନ ସୂଚକ କ୍ରିୟାପଦ ତୁଳନାରେ ସେ ସବୁ ଖୁବ୍ କମ୍ ବ୍ୟବହୃତ ହୋଇଛି ।

'କପଟପାଶା'ରେ /ବୋଲ୍-/ ଧାତୁରୁ ନିଷ୍ପନ୍ନ ସୂଚକ କ୍ରିୟାପଦ ସର୍ବମୋଟ ୫୬ ଥର ବ୍ୟବହୃତ ହୋଇଛି । ଏ ମଧ୍ୟରୁ ମାତ୍ର ୨୫ଥର, କ୍ରିୟାପଦର କାଳ ହେଉଛି ଅତୀତ । ଅନ୍ୟ ୩୧ଥର କ୍ରିୟାପଦରେ ବର୍ତ୍ତମାନ କାଳ ବ୍ୟବହୃତ । ସୂଚକ କ୍ରିୟାପଦ ସମ୍ପର୍କରେ ମନେ ରଖିବା କଥା ଯେ ସଂଳାପ ଅନ୍ତର୍ଗତ ବାକ୍ୟ ଗୁଡ଼ିକର ସମାପିକା କ୍ରିୟାପଦରେ ଅତୀତ କାଳ ବ୍ୟତୀତ ଅନ୍ୟ କାଳର ବ୍ୟବହାର ସମ୍ପର୍କରେ ବିଶେଷ

ସ୍ୱାଧୀନତା ନଥାଏ । ଥରେ ସଂଳାପର ପରିକଳ୍ପନା କରାଗଲା ପରେ, ସଂଳାପ ଅନ୍ତର୍ଗତ ବାକ୍ୟର କ୍ରିୟାପଦରେ ଅତୀତକାଳ ବ୍ୟତୀତ ଅନ୍ୟ କାଳର ବ୍ୟବହାର, ହେବ ଇ ହେବ । କିନ୍ତୁ ସୂଚକ କ୍ରିୟାପଦରେ ସାଧାରଣତଃ ଅତୀତ କାଳର ବ୍ୟବହାର ହେବା କଥା । କାରଣ ସବୁ ଉକ୍ତି ଓ ପ୍ରତ୍ୟୁକ୍ତି ଅତୀତ କାଳରେ ହିଁ ହେଉଥିଲା । ତା ସତ୍ତ୍ୱେ 'କପଟପାଶା'ରେ /ବୋଲ୍/ ଧାତୁରୁ ନିଷ୍ପନ୍ନ କ୍ରିୟାପଦରେ ମାତ୍ର ୨୫ଥର ଅତୀତକାଳ ବ୍ୟବହୃତ ହେବାବେଳେ ବର୍ତ୍ତମାନ କାଳ ୩୧ଥର ବ୍ୟବହୃତ ହୋଇଛି । ସେହିପରି /କହ୍-/ ଧାତୁରୁ ନିଷ୍ପନ୍ନ ସୂଚକ କ୍ରିୟାପଦ 'କପଟପାଶା'ରେ ୧୪ ଥର ବ୍ୟବହୃତ ହୋଇଛି । ଏ ମଧ୍ୟରୁ ମାତ୍ର ୨ଟି ସ୍ଥାନରେ କ୍ରିୟାର କାଳ ଅତୀତ । ଅନ୍ୟ ୧୨ଟି ସ୍ଥାନରେ କ୍ରିୟାପଦର କାଳ ବର୍ତ୍ତମାନ । ସୂଚକ କ୍ରିୟାପଦରେ ଅତୀତ ସ୍ଥାନରେ ବର୍ତ୍ତମାନ କାଳର ପ୍ରୟୋଗ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ମଧ୍ୟରେ କାଳ କାଳ ମଧ୍ୟରେ ବ୍ୟବଧାନ ଲୋପ ପାଇ ଅତୀତର ପୃଷ୍ଠଭୂମିରେ ରଚିତ କାବ୍ୟର ଘଟଣା ବର୍ତ୍ତମାନ ପାଠକର ନିକଟବର୍ତ୍ତୀ ହୋଇପାରିଛି ।

'କପଟପାଶା'ର ମୁଖ୍ୟ ଚରିତ୍ର କିଏ ? 'କପଟପାଶା'ରେ ଦ୍ରୌପଦୀ ସବୁଠାରୁ ଅଧିକ ସଂଖ୍ୟକ ୧୫ଗୋଟି ଉକ୍ତି-ପ୍ରତ୍ୟୁକ୍ତିରେ ସକ୍ରିୟ ଅଂଶଗ୍ରହଣ କରିଛନ୍ତି । ଏ ଦିଗରୁ ଦେଖିଲେ ସେ ହେଉଛନ୍ତି କାବ୍ୟଟିର ମୁଖ୍ୟ ଚରିତ୍ର । ସେହିପରି ୧୪ଟି ଉକ୍ତି ପ୍ରତ୍ୟୁକ୍ତିରେ ଅଂଶ ଗ୍ରହଣ କରିଥିବା ଦୁର୍ଯ୍ୟୋଧନ ମଧ୍ୟ କାବ୍ୟଟିର ଅନ୍ୟ ଏକ ମୁଖ୍ୟ ଚରିତ୍ର । ଘଟଣା ବିନ୍ୟାସ ଦିଗରୁ ମଧ୍ୟ ସମାଲୋଚକ ସେଇ ଏକ ସିଦ୍ଧାନ୍ତରେ ଉପନୀତ ହୋଇଥାଏ । ତେବେ ସଂଳାପ ଦିଗରୁ କାବ୍ୟଟିରେ ଦ୍ରୌପଦୀ ଓ ଦୁର୍ଯ୍ୟୋଧନ ଚରିତ୍ରର ଗୁରୁତ୍ୱ ଅତି ସ୍ପଷ୍ଟ ଭାବରେ ପ୍ରମାଣିତ ହୋଇଥାଏ ।

ଏହି ସଂଳାପ ବିଚାରର ଆଉ ଏକ ଦିଗ ରହିଚି । ପୂର୍ବରୁ କୁହାଯାଇଛି 'କପଟପାଶା'ରେ ସଂଳାପ ମଧ୍ୟରେ ସଂଳାପ ଗର୍ଭିତ ହୋଇ ରହିଚି । ତା ଫଳରେ କାବ୍ୟିକ ଘଟଣାର ସ୍ତର ବିନ୍ୟାସର ପରିକଳ୍ପନା କରାଯାଇ ପାରେ, ଠିକ୍ ଯେପରି ପୂର୍ବେ ଅତୀତ କାଳର ସ୍ତର ପରିକଳ୍ପନା କରାଯାଇଛି । ଏହି କାବ୍ୟିକ ଘଟଣାର ଶେଷ ସ୍ତରରେ ଥିବା ଚରିତ୍ର ହେଉଛି ଶଶା । ମନେହୁଏ ସମଗ୍ର କାବ୍ୟର ବକ୍ତବ୍ୟ ଏହି ଶଶା ଚରିତ୍ର ମାଧ୍ୟମରେ କବି ବ୍ୟକ୍ତ କରିବା ପାଇଁ ଚାହିଁଛନ୍ତି । କାବ୍ୟିକ ଘଟଣାର ଶେଷ ସ୍ତରରେ ଥିବା ଶଶା ଚରିତ୍ର ଯେପରି ସମଗ୍ର କାବ୍ୟର ସୂଚନା ପ୍ରଦାନ କରୁଛି । ଶଶାର ସଂଳାପ ପୂର୍ବେ ସୂଚକ କ୍ରିୟାପଦ 'ବୋଲେ'ର ବର୍ତ୍ତମାନ କାଳ ଏହାର ସୂଚନା ପ୍ରଦାନ କରୁଅଛି । ଏହି ଦୃଷ୍ଟିକୋଣରୁ ଏହି କାବ୍ୟର ମୁଖ୍ୟ ଚରିତ୍ର ଦ୍ରୌପଦୀ ଓ ଶଶା ମଧ୍ୟରେ କିଛିଟା

ସାମଞ୍ଜସ୍ୟ ଆବିଷ୍କାର କରାଯାଇପାରେ । ଶଶାକୁ ସିଂହ ଖାଇବାପାଇଁ ଗୋଡ଼ାଇଲା, ଶଶା ଗୋବିନ୍ଦ ସ୍ମରଣ କରିବାରୁ ସିଂହ କବଳରୁ ରକ୍ଷା ପାଇଲା । ଦ୍ରୌପଦୀଙ୍କୁ ଏଠାରେ ଯେପରି ଶଶା ସହ ତୁଳନା କରାଯାଇପାରେ, ସେହିପରି ପଶୁରାଜ ସିଂହ ସହ ପଶୁ ପ୍ରବୃତ୍ତି ସମ୍ପନ୍ନ କୁରୁରାଜ ଦୁର୍ଯ୍ୟୋଧନଙ୍କୁ ବି ତୁଳନା କରାଯାଇପାରେ । ଶଶା ପକ୍ଷରେ ଯାହା ଘଟିଲା ତା ଦ୍ରୌପଦୀଙ୍କ କ୍ଷେତ୍ରରେ ମଧ୍ୟ ଘଟିବ (ଅର୍ଥାତ୍ ଗୋବିନ୍ଦଙ୍କୁ ସ୍ମରଣ କରି ସେ ରକ୍ଷା ପାଇବେ) ବୋଲି ସୂଚନାଟିଏ ଯେପରି ଶଶା ଚରିତ୍ର ମାଧ୍ୟମରେ ଦିଆଯାଇଛି ।

ଏହିପରି ବିଚାର କଲେ ସାହିତ୍ୟ-ସମାଲୋଚନାରେ ଭାଷା ବିଜ୍ଞାନର ସହାୟକ ଭୂମିକା ସ୍ୱୀକାର କରିବାପାଇଁ ହେବ । ଭାଷା ବିଜ୍ଞାନ ସାହିତ୍ୟ-କୃତିର ଅବବୋଧ ଓ ମୂଲ୍ୟାୟନରେ ସହାୟକ ହେବ ।

[ଏହା ୧୯୮୩ ଡିସେମ୍ବର ୩ ତାରିଖରେ ଓଡ଼ିଆ ଗବେଷଣା ପରିଷଦର ବାର୍ଷିକୋତ୍ସବ ଅବକାଶରେ ଲେଖକର ଅଧ୍ୟକ୍ଷତାରେ ଅନୁଷ୍ଠିତ ସେମିନାରରେ ପଠିତ ହୋଇଥିଲା ଓ ପରେ ୧୯୮୯ରେ ଲେଖକ ଓ ପଞ୍ଚାନନ ମହାନ୍ତିଙ୍କଦ୍ୱାରା ସମ୍ପାଦିତ ହୋଇ ପରିଷଦର ସପ୍ତମ ପ୍ରକାଶନ 'ଶୈଳୀ ବିଜ୍ଞାନ' ପୁସ୍ତକରେ ପ୍ରଥମେ ପ୍ରକାଶ ପାଇଥିଲା ।]



# ରାଧା-କୃଷ୍ଣ ଯୁଗଳ-ମୂର୍ତ୍ତି ଉପାସନାର ଇତିହାସ ଓ ଓଡ଼ିଶା

(୧)

ରାଧା ମୂର୍ତ୍ତି ପୂଜାର ଇତିହାସ ଅନ୍ୟ କଥାରେ ରାଧାକୃଷ୍ଣ ଯୁଗଳ ବିଗ୍ରହ ଉପାସନାର ଇତିହାସ ସମ୍ପର୍କରେ ଅମର ନାଥ ରାୟ ପ୍ରଥମେ ସାମାନ୍ୟ ସୂଚନା ପ୍ରଦାନକରିଥିଲେ (ଦ୍ର: ମହାପାତ୍ର, ୧୯୭୩, ପୃ. ୧୭୮-୧୭୯) । ପରେ ସେ ସମ୍ପର୍କରେ ବିସ୍ତାରିତ ଆଲୋଚନା ମାଧ୍ୟମରେ (ତାଙ୍କରି ମତକୁ ସମର୍ଥନ କରି) ପରମାନନ୍ଦ ଆଚାର୍ଯ୍ୟ ୧୯୬୮ରେ ପ୍ରଥମେ ଏକ ପ୍ରବନ୍ଧ ଇଂରାଜୀରେ ଲେଖି ପ୍ରକାଶ କରିଥିଲେ (ଆଚାର୍ଯ୍ୟ, ପରମାନନ୍ଦ ୧୯୬୮ । ପରେ ୧୮୬୯ରେ ପ୍ରକାଶିତ ହୋଇଥିବା ତାଙ୍କର ଏକ ପ୍ରବନ୍ଧ ସଙ୍କଳନରେ ତାହା ଗର୍ଭିତ ହୋଇଛି, ଦ୍ର: ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯କ) । ପୁଣି ସେହି ୧୮୬୯ରେ ଏ ସମ୍ପର୍କରେ ପରମାନନ୍ଦ ଆଚାର୍ଯ୍ୟଙ୍କର ଆଉ ଏକ ଓଡ଼ିଆ ପ୍ରବନ୍ଧ ତାଙ୍କର ଅନ୍ୟ ଏକ ପ୍ରବନ୍ଧ ସଙ୍କଳନରେ ସ୍ଥାନ ପାଇଛି (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯ଖ । ଏହି ଓଡ଼ିଆ ପ୍ରବନ୍ଧଟି ପ୍ରଥମେ ବୋଧହୁଏ 'କଳ୍ପନା' ନାମକ ପତ୍ରିକାରେ ପ୍ରକାଶିତ ହୋଇଥିଲା, ଯାହା ଦେଖିବାର ସୁଯୋଗ ମୁଁ ପାଇନାହିଁ) । ଇଂରାଜୀ ଓ ଓଡ଼ିଆ ପ୍ରବନ୍ଧ ଦୁଇଟିରେ, ତାଙ୍କର ବକ୍ତବ୍ୟ ମୋଟାମୋଟି ସମାନ ଥିଲେ ହେଁ ଉଭୟ ମଧ୍ୟରେ ସାମାନ୍ୟ କିଛି ପାର୍ଥକ୍ୟ ମଧ୍ୟ ରହିଛି । ଏହା ବ୍ୟତୀତ 'ଅଖିଳ ଭାରତୀୟ ବିଦ୍ୟାର୍ଥୀ ପରିଷଦ ସ୍ମରଣିକା'/ Akhil Bharatiya Vidyarthee Parishad Souvenir, Balasoreରେ ମଧ୍ୟ ସେ ଏହି ବିଷୟରେ ଗୋଟିଏ ପ୍ରବନ୍ଧ ଲେଖିଥିବାର ଜଣାଯାଏ (ଦ୍ର : ପ୍ରଧାନ, ୧୯୭୧, ପୃ.୧୬୦, ପାଦଟୀକା-୧) । ଏହି ଶେଷୋକ୍ତ ପ୍ରବନ୍ଧଟି ମଧ୍ୟ ଦେଖିବାର ସୁଯୋଗ ମୁଁ ପାଇପାରିନାହିଁ । ତାହା ବି ପୂର୍ବୋକ୍ତ ଇଂରାଜୀ ବା ଓଡ଼ିଆ ପ୍ରବନ୍ଧ ବା ସମାନ ମତ ବ୍ୟକ୍ତ କରୁଥିବା ଅନ୍ୟ ଏକ ନୂତନ ପ୍ରବନ୍ଧ ହୋଇପାରିଥାଏ ।

ସଂକ୍ଷେପରେ ପରମାନନ୍ଦ ଆଚାର୍ଯ୍ୟଙ୍କର କେତେକ ସିଦ୍ଧାନ୍ତ ହେଉଛି :

(କ) ଓଡ଼ିଶାର ରାଧାନଗର ନାମକ ଏକ ଗ୍ରାମରେ ରାଧା ବିଗ୍ରହ ପ୍ରଥମେ ନିର୍ମିତ ଓ ପୂଜିତ ହୋଇଥିଲା ।

(ଖ) ଓଡ଼ିଶାରୁ ରାଧା ବିଗ୍ରହ ବୃନ୍ଦାବନକୁ ପଠାଇ ସେଠାରେ ରାଧା-କୃଷ୍ଣ ଯୁଗଳ ଉପାସନା ପ୍ରବର୍ତ୍ତନ କରାଇବାରେ ଭୋଇ ବଂଶୀୟ ଖୋର୍ଦ୍ଧା ରାଜା ପୁରୁଷୋତ୍ତମ ଦେବ (୧୬୦୭-୧୬୨୩) ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ।

(ଗ) ବୃନ୍ଦାବନରେ ମଦନମୋହନ ଓ ଗୋବିନ୍ଦ ବିଗ୍ରହ ସହ ଯୁକ୍ତ ହୋଇ ରାଧା ବିଗ୍ରହ ପୂଜିତ ହେଉଥିବାର କୌଣସି ସୂଚନା କୃଷ୍ଣଦାସ କବିରାଜ ବିରଚିତ 'ଚୈତନ୍ୟ ଚରିତାମୃତ'ରେ ନ ଥିବାରୁ 'ଚୈତନ୍ୟ ଚରିତାମୃତ' ରଚନା ପରେ ଅର୍ଥାତ୍ ୧୬୧୫ ଖ୍ରୀଷ୍ଟାବ୍ଦ ପରେ ହିଁ ବୃନ୍ଦାବନରେ କୃଷ୍ଣ ବିଗ୍ରହ ସହ ଯୁକ୍ତ ହୋଇ ରାଧା ବିଗ୍ରହ (ଅର୍ଥାତ୍ ରାଧା-କୃଷ୍ଣ ଯୁଗଳ ବିଗ୍ରହ) ପୂଜିତ ହେଲା ।

(ଘ) ପାଖାପାଖି ସେହି ସମୟରେ ଅର୍ଥାତ୍ ୧୬୧୦ ଖ୍ରୀଷ୍ଟାବ୍ଦ ପରେ ଶ୍ୟାମାନନ୍ଦଙ୍କ ଶିଷ୍ୟ ରସିକାନନ୍ଦ ଦେବଗୋସ୍ୱାମୀ ବା ରସିକ ମୁରାରୀ ସୁବର୍ଣ୍ଣରେଖା ନଦୀର ଉତ୍ତର ତୀରରେ ଅବସ୍ଥିତ ବର୍ତ୍ତମାନ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାର ଗୋପୀବଲ୍ଲଭପୁରଠାରେ ମଠ ସ୍ଥାପନ କଲେ ଓ ମଠର ଆରାଧ୍ୟ ଦେବ ବିଗ୍ରହ ଗୋପୀବଲ୍ଲଭ ବା କୃଷ୍ଣ ବିଗ୍ରହଙ୍କ ସହ ଏକ ରାଧା ବିଗ୍ରହଙ୍କର ବିବାହ ଉତ୍ସବ କରାଇ ଯୁଗଳ ଉପାସନାର ସୂତ୍ରପାତ କରିଥିଲେ ।

ଏଠାରେ ସୂଚାଇଦେବା ଆବଶ୍ୟକ ଯେ ବୃନ୍ଦାବନରୁ ଧର୍ମଗ୍ରନ୍ଥ ସହ ଶ୍ରୀନିବାସ ଆଚାର୍ଯ୍ୟ, ନରୋତ୍ତମ ଠାକୁର ଓ ଶ୍ୟାମାନନ୍ଦ ପୂର୍ବ ଭାରତକୁ ଫେରିବାର (ଓ ବନବିଷ୍ଣୁପୁରରେ ଧର୍ମଗ୍ରନ୍ଥ ଅପହୃତ ହେବାର) ସମୟ ପରମାନନ୍ଦ ଆଚାର୍ଯ୍ୟ ତାଙ୍କ ଇଂରାଜୀ ପ୍ରବନ୍ଧରେ ୧୬୦୦-୧୬୦୫ ବୋଲି ସ୍ଥିର କରିଥିବା ସ୍ଥଳେ (ଆଚାର୍ଯ୍ୟ, ପରମାନନ୍ଦ ୧୯୬୮, ପୃ. ୬୫ ; ୧୯୬୯କ, ପୃ. ୪୩୬) ଓଡ଼ିଆ ପ୍ରବନ୍ଧରେ ତାହା ୧୬୨୦ ବୋଲି କହିଛନ୍ତି (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯ଖ, ପୃ. ୪୧୯) । ରାଧାଗୋବିନ୍ଦ ନାଥ ବହୁ ଆଲୋଚନା କରି ଏହାର ସମୟ ୧୬୦୦ ଖ୍ରୀଷ୍ଟାବ୍ଦ ବୋଲି ସ୍ଥିର କରିଛନ୍ତି (ନାଥ ୧୯୫୮, ପୃ. ୨୪) ଯାହା ଗ୍ରହଣୀୟ ।

ପରବର୍ତ୍ତୀ କାଳରେ ନଗେନ୍ଦ୍ର ନାଥ ପ୍ରଧାନ, କେଦାରନାଥ ମହାପାତ୍ର, ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ବନମାଳୀ ରଥ ଓ ଆଶୁତୋଷ ପଟ୍ଟନାୟକ ଆଦି ପରମାନନ୍ଦ ଆଚାର୍ଯ୍ୟଙ୍କ ମତକୁ ସଂପୂର୍ଣ୍ଣ ବା ଆଂଶିକ ଭାବରେ ଗ୍ରହଣ କରି ନେଇଛନ୍ତି (ଦ୍ରଷ୍ଟବ୍ୟ : ପ୍ରଧାନ,

୧୯୭୧, ପୃ. ୧୬୦; ମହାପାତ୍ର, ୧୯୭୩, ପୃ. ୧୭୯; ଆଚାର୍ଯ୍ୟ, ବୃନ୍ଦାବନ ଚନ୍ଦ୍ର, ୧୯୭୮, ପୃ. ୪୯୪-୯୬; ରଥ, ୧୯୮୩, ପୃ. ୧୦୬ ଓ ପଟ୍ଟନାୟକ, ୧୯୮୬ ଓ ୧୯୮୮)। ତେବେ ପରମାନନ୍ଦ ଆଚାର୍ଯ୍ୟଙ୍କ ମତ ବୋଲି ରଥ ଯାହା ବୁଝିଛନ୍ତି ପରମାନନ୍ଦ ଆଚାର୍ଯ୍ୟ ଠିକ୍ ତାହା କହିନାହାଁନ୍ତି। ରଥଙ୍କ ବକ୍ତବ୍ୟ ଅନୁଯାୟୀ ପରମାନନ୍ଦ ଆଚାର୍ଯ୍ୟଙ୍କ ମତ ହେଉଛି ଯେ ୧୭୪୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ଗୋଟିଏ ହେଲେ ରାଧା-କୃଷ୍ଣ ଯୁଗଳ ବିଗ୍ରହ ମିଳିଥିବାର ଜଣାଯାଇନାହିଁ। କିନ୍ତୁ ପରମାନନ୍ଦ ଆଚାର୍ଯ୍ୟ ଠିକ୍ ତାହା କହିନାହାଁନ୍ତି। ପରମାନନ୍ଦ ଆଚାର୍ଯ୍ୟଙ୍କ ମତରେ ସପ୍ତଦଶ ଶତକର ପ୍ରଥମ ପଚିଶି ବର୍ଷ ମଧ୍ୟରେ (ବିଶେଷ ଭାବରେ ୧୬୧୫ରୁ ୧୬୨୦ ମଧ୍ୟରେ) ରାଧାବିଗ୍ରହ ଓଡ଼ିଶାରୁ ବୃନ୍ଦାବନକୁ ପ୍ରେରିତ ହୋଇଥିଲା (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୮, ପୃ. ୬୩; ୧୯୬୯କ, ପୃ. ୪୩୪-୪୩୫)। ଅର୍ଥାତ୍ ଏହା ପୂର୍ବରୁ ଅନ୍ତତଃ ରାଧା ବିଗ୍ରହ ଓଡ଼ିଶାରେ ନିର୍ମିତ ହୋଇଥିଲା ବା ପୂଜିତ ହୋଇଥିଲା। [ଆଶୁତୋଷ ପଟ୍ଟନାୟକ ୧୯୮୬ରେ ପ୍ରକାଶିତ ତାଙ୍କର ଏକ ପ୍ରବନ୍ଧରେ ମଧ୍ୟ ମୋଟାମୋଟି ପରମାନନ୍ଦ ଆଚାର୍ଯ୍ୟଙ୍କ ମତକୁ ଗ୍ରହଣ କରିଥିଲେ। ଏଠାରେ କହିରଖିବା ଉଚିତ ଯେ ଆଶୁତୋଷ ପଟ୍ଟନାୟକଙ୍କର ପ୍ରବନ୍ଧ ୧୯୮୬ର ଫେବୃଆରୀରେ ପ୍ରକାଶ ପାଇବା ପରେ ସେଇ ୧୯୮୬ର ଜୁନ ମାସରେ ମୋର ଏଇ ପ୍ରବନ୍ଧର ପ୍ରାଥମିକ ରୂପ ପ୍ରଥମେ ପ୍ରକାଶ ପାଇଥିଲା (ଦ୍ର: ଦାଶ, ଗଗନେନ୍ଦ୍ର ନାଥ ୧୯୮୬)। ତା ପରେ ୧୯୮୮ରେ ଆଶୁତୋଷ ପଟ୍ଟନାୟକଙ୍କର ପୁସ୍ତକ ପ୍ରକାଶ ପାଇଲା। ୧୯୮୬ରେ ପ୍ରକାଶିତ ପ୍ରବନ୍ଧରେ ବ୍ୟକ୍ତ ତାଙ୍କର କେତେକ ମତକୁ ସେ ୧୯୮୮ରେ ପ୍ରକାଶିତ ତାଙ୍କ ପୁସ୍ତକରେ ପରିତ୍ୟାଗ କରି କିଛି ସ୍ୱାତନ୍ତ୍ର୍ୟ ଦେଖାଇଛନ୍ତି ଓ କେତେକ କ୍ଷେତ୍ରରେ ପରମାନନ୍ଦ ଆଚାର୍ଯ୍ୟଙ୍କ ମତକୁ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ ନ କରି ୧୯୮୬ ପ୍ରକାଶିତ ମୋ ପ୍ରବନ୍ଧରେ ପ୍ରଦତ୍ତ ଅଭିମତର ଅନୁବର୍ତ୍ତନ କରିଛନ୍ତି (ଦ୍ର: ପଟ୍ଟନାୟକ, ୧୯୮୮, ପୃ.୪୯-୫୩)। ତେବେ ଆଶୁତୋଷ ପଟ୍ଟନାୟକଙ୍କ କେତେକ ପରିବର୍ତ୍ତିତ ମତ ମୋ ମତର ଅନୁବର୍ତ୍ତୀ ହୋଇଥିଲେ ହେଁ ତାଙ୍କ ପୁସ୍ତକରେ ମୋ ପ୍ରବନ୍ଧ ବା ମତର ସୂଚନା ଆଦୌ ଦିଆଯାଇନାହିଁ, ଯାହା ଅବଶ୍ୟ ବିସ୍ମୟଜନକ। ତେଣୁ ଏହି ପ୍ରବନ୍ଧରେ ଉଭୟ ୧୯୮୬ ଓ ୧୯୮୮ରେ ପ୍ରଦତ୍ତ ଆଶୁତୋଷ ପଟ୍ଟନାୟକଙ୍କ ଅଭିମତର ସୂଚନା ଦେବାର ବିଶେଷ କୌଣସି ଆବଶ୍ୟକତା ନାହିଁ। ତେବେ ଯେଉଁଠାରେ ତାଙ୍କ ଅଭିମତ ଓ ମୋ ଅଭିମତ ମଧ୍ୟରେ ପାର୍ଥକ୍ୟ ରହିଛି ମାତ୍ର ସେପରି କେତେକ କ୍ଷେତ୍ରରେ ୧୯୮୮ରେ ବ୍ୟକ୍ତ ଆଶୁତୋଷ ପଟ୍ଟନାୟକଙ୍କ ଅଭିମତର ସୂଚନା ଦିଆଯିବ।]

କିନ୍ତୁ ଏହି ରାଧାକୃଷ୍ଣ ଯୁଗଳବିଗ୍ରହ ଉପାସନା ସମ୍ପର୍କରେ ସୁକୁମାର ସେନ ୧୯୭୦ରେ ପ୍ରକାଶିତ ତାଙ୍କ 'ବାଂଲା ସାହିତ୍ୟେର ଇତିହାସ' (ପ୍ରଥମ ଖଣ୍ଡ, ପୂର୍ବାର୍ଦ୍ଧ)ରେ କହନ୍ତି, "କୃଷ୍ଣ ମୂର୍ତ୍ତିର ପାର୍ଶେ ରାଧାମୂର୍ତ୍ତି ସ୍ଥାପନାୟ ଜାହ୍ନବାର ସମଧିକ ଉତ୍ସାହ ଛିଲ । ଇନି ଇ ବୃନ୍ଦାବନେ କୃଷ୍ଣ ମୂର୍ତ୍ତିର ପାର୍ଶେ ବସାଇବାର ଜନ୍ୟ ରାଧା ମୂର୍ତ୍ତି ଗଡ଼ାଇୟା ବାଂଲାଦେଶ ହଇତେ ପାଠାଇୟା ଛିଲେନ୍ ।" (ସେନ୍, ୧୯୭୦, ପୃ. ୪୪୬/ଷଷ୍ଠ ସଂସ୍କରଣ ୧୯୭୮, ଆନନ୍ଦ, ୨୦୦୪, ପୃ.୩୨୧) । ଏ ଜାହ୍ନବା ହେଉଛନ୍ତି ଚୈତନ୍ୟଙ୍କ ସଖା ନିତ୍ୟାନନ୍ଦଙ୍କ ପତ୍ନୀ ଜାହ୍ନବା ଦେବୀ । ଅବଶ୍ୟ ସେନ୍ ମଧ୍ୟ ସେ ପୁସ୍ତକର ଅନ୍ୟତ୍ର ଲେଖିଥିଲେ, "କୃଷ୍ଣେର ମୂର୍ତ୍ତିର ବାମେ ରାଧା ମୂର୍ତ୍ତିର ପ୍ରତିଷ୍ଠା ଏବଂ ଯୁଗଳମୂର୍ତ୍ତିର ଉପାସନା ଜୀବ ଗୋସ୍ୱାମୀର ସ୍ୱୀକୃତି ପାଇୟାଇ ପ୍ରଥମେ ବୃନ୍ଦାବନେ ଓ ପରେ ବାଂଲାଦେଶେ ପ୍ରଚଳିତ ହଇୟାଛିଲ । ଯୁଗଳମୂର୍ତ୍ତିର ସ୍ୱୀକୃତି ହଇତେଇ ବଲ୍ଲଭ ଭଟ୍ଟେର ସମ୍ପ୍ରଦାୟେର ସଙ୍ଗେ ଗୌଡ଼ୀୟ ସମ୍ପ୍ରଦାୟେର ଶେଷ ବିଚ୍ଛେଦ ହଇୟା ଗେଲ୍ ।" (ସେନ୍, ୧୯୭୦, ପୃ. ୩୧୮/ଷଷ୍ଠ ସଂସ୍କରଣ ୧୯୭୮, ଆନନ୍ଦ, ୨୦୦୪, ପୃ.୨୫୨) । ଅବଶ୍ୟ ଏଠାରେ ସୁକୁମାର ସେନ୍ ଜାହ୍ନବା ଦେବୀ ରାଧା-କୃଷ୍ଣ ଯୁଗଳ ଉପାସନାର ସୂତ୍ରପାତ କରାଇଥିଲେ ବୋଲି ସ୍ପଷ୍ଟ ଭାବରେ କହିନାହାଁନ୍ତି ।

ପରେ ସେନ୍ ତାଙ୍କର ଏକ ଦୀର୍ଘ ପ୍ରବନ୍ଧରେ ଲେଖିଛନ୍ତି ଯେ ନିତ୍ୟାନନ୍ଦ ଗୌଡ଼ ବା ବଂଗଦେଶରେ କୃଷ୍ଣ ନାମ ପରିବର୍ତ୍ତେ କେବଳ ଚୈତନ୍ୟଙ୍କ ନାମ ପ୍ରଚାରରେ ଲାଗିପଡ଼ିଥିଲେ । "ତା'ର ଫଳେ ଅନତି-ବିଳମ୍ବେ ଗୌଡ଼ଦେଶେ ଗୌର-ନିତାଇ ଏଇ ଯୁଗ୍ମ ଦେବତା ପୂଜାର ପତ୍ତନ ହୟେଛିଲ । ମନେହୟ ଏଇ ପ୍ରଚେଷ୍ଟାରଇ ପ୍ରତିକାରେର ଜନ୍ୟେ ଚୈତନ୍ୟେର ନିର୍ଦ୍ଦେଶେ ରୂପ ଗୋସ୍ୱାମୀ ବୃନ୍ଦାବନେ ଏକକ କୃଷ୍ଣେର ସ୍ଥାନେ ଯୁଗଳ ରାଧା-କୃଷ୍ଣ ଉପାସନା ପ୍ରବର୍ତ୍ତନ କରେଛିଲେନ୍ ।'' (ସେନ, ୧୯୮୫, ପୃ.୨୬) । ଅର୍ଥାତ୍ ସୁକୁମାର ସେନଙ୍କର ମତରେ ବୃନ୍ଦାବନର ଷଡ୍‌ଗୋସ୍ୱାମୀମାନଙ୍କ ମଧ୍ୟରୁ ରୂପ ଗୋସ୍ୱାମୀ ହିଁ ରାଧାକୃଷ୍ଣ ଯୁଗଳ ଉପାସନାର ସୂତ୍ରପାତ କରାଇଥିଲେ ଓ ଶ୍ରୀ ଚୈତନ୍ୟଙ୍କ ଜୀବଦ୍ଦଶାରେ ଓ ତାଙ୍କ ନିର୍ଦ୍ଦେଶରେ ତାହା ହୋଇଥିଲା ।

ଦେବ ପ୍ରସାଦ ମିତ୍ର ନାମକ ଜଣେ ଭ୍ରମଣକାରୀ ଏ ସମ୍ପର୍କରେ ବୃନ୍ଦାବନରେ ଏବେ ପ୍ରଚଳିତ ଏକ ଜନଶ୍ରୁତିରୁ ଉଦ୍ଧାର କରି ଲେଖିଛନ୍ତି, "ଶୁନଲାମ ଗୋବିନ୍ଦଜୀ, ଗୋପୀନାଥଜୀ ଓ ମଦନମୋହନଜୀର ପାଶେ ରାଧାରାଣୀର ମୂର୍ତ୍ତି ଛିଲ ନା । ଜାହ୍ନବା ଦେବୀ ବୃନ୍ଦାବନେ ଏସେ ରାଧାବିହୀନ ରାଧାକାନ୍ତେର ବିଗ୍ରହସମୂହ ଦେଖେ ମନେ ମନେ ଭୀଷଣ ଦୁଃଖ ଅନୁଭବ କରେନ ଏବଂ ମଧୁ ପଣ୍ଡିତେର କାଛେ ତା ପ୍ରକାଶ

କରେନ୍ । ମଧୁ ପଣ୍ଡିତ ମଶାଇ ବନ ବିଷ୍ଣୁପୁରେର ବୀର ହାମ୍ବିରକେ ଏଇ କଥା ଜାନାଲେ, ତିନି ତିନିଟି ରାଧାରାଣୀର ମୂର୍ତ୍ତି ତୈରୀ କରେ ପାଠିଯେ ଦେନ । ଜାହ୍ନବା ଦେବୀ ଗୋବିନ୍ଦଜୀ ଓ ମଦନମୋହନଜୀର ବାମେ ରାଧାରାଣୀର ମୂର୍ତ୍ତି ବସିଯେ ନିଜେ ଶ୍ରୀ ବିଗ୍ରହେର ବାମେ ଏସେ ଦାଁଡାନ । ସେଇ ଥେକେଇ ଗୋପୀନାଥଜୀ ଡ଼ାନେ ରାଧାରାଣୀ ଓ ବାମେ ଜାହ୍ନବା ଦେବୀକେ ନିଯେ ଦାଁଡିଯେ ଆଛେନ ।'' (ମିତ୍ର, ୧୩୮୮, ପୃ.୧୩୧) ।

ରାଧାକୃଷ୍ଣ ଯୁଗଳଉପାସନାର ଅୟମାରମ୍ଭ ବିଷୟରେ ସୁକୁମାର ସେନଙ୍କର ଦୁଇଟିଯାକ ବକ୍ତବ୍ୟ କିଛି ପରିମାଣରେ ପରସ୍ପରର ତଥା ପରମାନନ୍ଦ ଆଚାର୍ଯ୍ୟଙ୍କ ମତର ବିରୋଧ କରେ । ପୁଣି ଦେବ ପ୍ରସାଦ ମିତ୍ର ଯେଉଁ ଜନଶ୍ରୁତିର ଉଲ୍ଲେଖ କରିଛନ୍ତି ତା ସୁକୁମାର ସେନଙ୍କ ଗୋଟିଏ ବକ୍ତବ୍ୟର ବେଶ୍ ନିକଟବର୍ତ୍ତୀ ଓ ତା'ର ପରିପୋଷକତା ବି କରେ । ପରମାନନ୍ଦ ଆଚାର୍ଯ୍ୟ ଓ ସେନଙ୍କ ପରସ୍ପର ବିରୋଧୀ ମତ ଗୁଡ଼ିକୁ ଭଲ ଭାବରେ ପରୀକ୍ଷା କରି ସେ ସମ୍ପର୍କୀୟ କେତେକ ପ୍ରଶ୍ନର ଉତ୍ତର ପାଇବା ପାଇଁ ତଥା ଆଲୋଚନାର ଦିଗନ୍ତକୁ ପ୍ରସାରିତ କରିବା ପାଇଁ ନିମ୍ନରେ ପ୍ରଚେଷ୍ଟା କରାଯିବ ।

## (୨)

ପରମାନନ୍ଦ ଆଚାର୍ଯ୍ୟଙ୍କ ମତର ମୂଳଭିତ୍ତି ହେଉଛି ନରହରି ଚକ୍ରବର୍ତ୍ତୀ (ଓରଫ ଘନଶ୍ୟାମ ଦାସ) ବିରଚିତ 'ଭକ୍ତି ରତ୍ନାକର', ଗୋପୀଜନବଲ୍ଲଭ ଦାସ ବିରଚିତ 'ରସିକ ମଙ୍ଗଳ' ଓ ଗୋପାଳ ଭଟ୍ଟ ଗୋସ୍ୱାମୀଙ୍କ ନାମରେ ଚଳୁଥିବା 'ହରିଭକ୍ତି ବିଳାସ' । ବିଭିନ୍ନ ସମୟରେ ପ୍ରଦତ୍ତ (ଓ କିଛି ପରିମାଣରେ ପରସ୍ପର ବିରୋଧୀ) ସୁକୁମାର ସେନଙ୍କର ବକ୍ତବ୍ୟଦ୍ୱୟ ଯେଉଁ ତଥ୍ୟ ବା ଉପାଦାନର ମୂଳଭିତ୍ତି ଉପରେ ପ୍ରତିଷ୍ଠିତ ତାହାର କୌଣସି ସୂଚନା ସେ ଦେଇ ନାହାଁନ୍ତି (ଓ ମୁଁ ତାଙ୍କୁ ସେ ସମ୍ପର୍କରେ ବ୍ୟକ୍ତିଗତ ପତ୍ର ଲେଖି କୌଣସି ଉତ୍ତର ପାଇ ନାହିଁ) । ତେବେ ମନେହୁଏ ପୂର୍ବୋକ୍ତ 'ଭକ୍ତି ରତ୍ନାକର' ହିଁ ତାଙ୍କ ମତର ଭିତ୍ତିଭୂମି । 'ଭକ୍ତି ରତ୍ନାକର' ସମ୍ପର୍କରେ ନିମ୍ନରେ ଆଲୋଚନା କରାଯିବ । ଅବଶ୍ୟ ସୁକୁମାର ସେନ 'ପ୍ରେମ ବିଳାସ' ବା 'କର୍ଣ୍ଣାନନ୍ଦ' ଉପରେ ମଧ୍ୟ ନିର୍ଭର କରିଥାଇ ପାରନ୍ତି । କିନ୍ତୁ ମୁଁ ସେ ଗ୍ରନ୍ଥଦ୍ୱୟ ଦେଖିବାର ସୁଯୋଗ ପାଇ ନାହିଁ ।

'ଭକ୍ତି ରତ୍ନାକର' କିଛି ପରିମାଣରେ ଜନଶ୍ରୁତିର ଏକ ସଙ୍କଳନ । ଏଥିରେ ପୁଣି ହରିଦାସ ଗୋସ୍ୱାମୀଙ୍କ ଶିଷ୍ୟ ରାଧାକୃଷ୍ଣ ଗୋସ୍ୱାମୀ କୃତ 'ସାଧନ ଦୀପିକା' ଅବଲମ୍ବନରେ ଅନେକ ବିବରଣୀ ଦିଆଯାଇଛି । ଏହାର ଐତିହାସିକ ପ୍ରାମାଣିକତା ସମ୍ପର୍କରେ ଭକ୍ତିସିଦ୍ଧାନ୍ତ ସରସ୍ୱତୀ ଗୋସ୍ୱାମୀ ମତ ଦେଇ କହନ୍ତି, "ଐତିହାସିକ ହିସାବେ 'ଭକ୍ତି ରତ୍ନାକର' ଗ୍ରନ୍ଥେର ମୂଲ୍ୟ ଅତି ଅଳ୍ପ । ... ତତ୍ତ୍ୱ ଓ ପ୍ରକୃତ ଐତିହ୍ୟ ଏଇ ପୁସ୍ତକ ହଇତେ ଗୃହୀତ

ହଇତେ ପାରେ ନା - ଇହାଇ ଆମାର ବ୍ୟକ୍ତିଗତ ବିଚାର ।'' ('ଭକ୍ତି ରତ୍ନାକର'ର ଉପୋଦ୍‌ଘାତ, ପୃ. ୧ ରୁ ଉଦ୍ଧୃତ) । ସୁକୁମାର ସେନ ମଧ୍ୟ ଏ ଗ୍ରନ୍ଥର ଐତିହାସିକ ପ୍ରାମାଣିକତା ଉପରେ ବିଶେଷ ଗୁରୁତ୍ୱ ଆରୋପ କରିନାହାଁନ୍ତି ଓ ଏଥିପ୍ରଦତ୍ତ ତଥ୍ୟକୁ ସବୁ ସମୟରେ ଗ୍ରହଣ କରିନାହାଁନ୍ତି (ଦ୍ରଷ୍ଟବ୍ୟ, ସେନ, ୧୯୭୦, ପୃ.୩୬୪) । ତା ସତ୍ତ୍ୱେ ଅନ୍ୟ କୌଣସି ଉପାଦାନ ନ ଥିବା ସ୍ଥଳେ 'ଭକ୍ତି ରତ୍ନାକର' ପ୍ରଦତ୍ତ ବିବରଣକୁ ସମ୍ପୂର୍ଣ୍ଣ ଭାବରେ ଉପେକ୍ଷା କରିବା ବି ଉଚିତ ହେବ ନାହିଁ ।

ଜନଶ୍ରୁତି-ଭିତ୍ତିକ 'ଭକ୍ତି ରତ୍ନାକର' ଗ୍ରନ୍ଥ ଉପରେ ନିର୍ଭର କରି ପରମାନନ୍ଦ ଆଚାର୍ଯ୍ୟ ଓ ସୁକୁମାର ସେନ ରାଧା-କୃଷ୍ଣ ଯୁଗଳବିଗ୍ରହ ପୂଜାର ଇତିହାସ ସଙ୍କଳନ କରିବା ବେଳେ ପ୍ରଚଳିତ ଆଉ ଦୁଇଟି ଜନଶ୍ରୁତିକୁ ବିଚାରକୁ ନେଇ ନାହାଁନ୍ତି । ସେ ଦୁଇଟି ଜନଶ୍ରୁତିକୁ ମଧ୍ୟ ବିଚାରକୁ ନେବା ଉଚିତ । ସେ ଦୁଇଟି ଜନଶ୍ରୁତି ହେଲା -

(କ) 'ଗୀତଗୋବିନ୍ଦ'କାର ଜୟଦେବ ରାଧାମାଧବ ବିଗ୍ରହର ଉପାସନା କରୁଥିଲେ । କୃଷ୍ଣଦାସ ବିରଚିତ ବଙ୍ଗଳା 'ଭକ୍ତମାଳ' ଗ୍ରନ୍ଥରେ (ଦ୍ର: ମହାପାତ୍ର, କେଦାର ନାଥ, ୧୯୭୩, ପୃ ୨୩-୨୪ ଓ ପୃ ୬୭) ଓ ରାମଦାସ ବିରଚିତ ଓଡ଼ିଆ 'ଦାର୍ଢ୍ୟତାଭକ୍ତି' ପୁସ୍ତକରେ (ଦ୍ର: ମହାପାତ୍ର, କେଦାର ନାଥ, ୧୯୭୩, ପୃ ୨୬ ଓ ପୃ ୬୭-୬୮; 'ଦାର୍ଢ୍ୟତାଭକ୍ତି', ଦ୍ୱିତୀୟ ଭାଗ, ୫୫ତମ ବା ଶେଷ ଅଧ୍ୟାୟ) ଏହି ଜନଶ୍ରୁତିର ସୂଚନା ମିଳେ । (ଅବଶ୍ୟ 'ଦାର୍ଢ୍ୟତାଭକ୍ତି'ର ୫୧ରୁ୫୫ ଏହି ଶେଷ ପାଞ୍ଚ ଅଧ୍ୟାୟ, ଓ ବିଶେଷ ଭାବରେ ଶେଷ ଅଧ୍ୟାୟଟି, ପ୍ରକ୍ଷିପ୍ତ ହୋଇଥିବାର ଯଥେଷ୍ଟ ସମ୍ଭାବନା ମଧ୍ୟ ରହିଛି, ଦ୍ର: ଦାସ, ପଣ୍ଡିତ, ନୀଳକଂଠ, ୧୯୫୩, ଅଷ୍ଟମ ଅଧ୍ୟାୟ, ପୃ.୪୦୭-୧୨, ବିଶେଷ ଭାବରେ ପୃ.୪୧୦-୧୧ ଓ ତୃତୀୟ ଅଧ୍ୟାୟ, ୧୩୪-୩୬) । ଏହି ଜନଶ୍ରୁତି ଅନୁଯାୟୀ ଜୟଦେବ ରାଧା-ମାଧବ ବିଗ୍ରହର ଉପାସନା କରୁଥିଲେ ଓ ଏହି ରାଧାମାଧବ ବିଗ୍ରହ ସହ ବୃନ୍ଦାବନ ଯାତ୍ରା କରିଥିଲେ । ସେଠାରେ କେଶୀଘାଟର ନିକଟରେ ଜନୈକ ଭକ୍ତ ରାଧା-ମାଧବଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ ଓ ସେ ମନ୍ଦିରରେ ରାଧା-ମାଧବ ପୂଜିତ ହେଉଥିଲେ । ଜୟଦେବଙ୍କ ମୃତ୍ୟୁର ବହୁକାଳ ପରେ ଜୟପୁରର ରାଜା ରାଧା-ମାଧବଙ୍କୁ ଜୟପୁର ନେଇ ଯାଇଥିଲେ । କିନ୍ତୁ ଚୈତନ୍ୟଙ୍କ ପୂର୍ବରୁ ବୃନ୍ଦାବନ ଧାମ ଲୁପ୍ତ ଥିଲା । ପୁଣି ଚୈତନ୍ୟଙ୍କଦ୍ୱାରା ଅନୁପ୍ରେରିତ ହୋଇ ଗୌଡୀୟ ବୈଷ୍ଣବ ଗୋସ୍ୱାମୀଗଣ ସେଠାରେ ଲୁପ୍ତ ତୀର୍ଥଗୁଡ଼ିକର ପୁନରୁଦ୍ଧାର କରିବା ପୂର୍ବରୁ ସେଠାରେ ମାଧବେନ୍ଦ୍ର ପୁରୀଙ୍କ ଦ୍ୱାରା ପ୍ରତିଷ୍ଠିତ ଗୋପାଳ (ଶ୍ରୀ ନାଥ ?) ବିଗ୍ରହ ବ୍ୟତୀତ ଅନ୍ୟ କୌଣସି କୃଷ୍ଣ ବା ରାଧା-କୃଷ୍ଣ ବିଗ୍ରହ ପୂଜିତ ହେଉଥିବାର କୌଣସି ସଙ୍କେତ ବା

ସୂଚନା ମିଳେ ନାହିଁ । ଶେଷରେ ସୱାଇ ଜୟସିଂହଙ୍କଦ୍ୱାରା ବୃନ୍ଦାବନରୁ ନୀତ ହୋଇଥିବା କୌଣସି ରାଧାମାଧବ ବିଗ୍ରହ ଜୟପୁରରେ ବା ଗାଲତା (ବଙ୍ଗଳା 'ଭକ୍ତମାଳ' ଗ୍ରନ୍ଥର ଘାଟି)ରେ ପୂଜିତ ହେଉଥିଲେ ମଧ୍ୟ ସେହି ବିଗ୍ରହ ଯେ ଦିନେ ଜୟଦେବଙ୍କଦ୍ୱାରା ପୂଜିତ ହେଉଥିଲେ ତା ନିର୍ଦ୍ଦିଷ୍ଟ ଭାବରେ ଜାଣିବାର କୌଣସି ଉପାୟ ନାହିଁ । ତେବେ ଏଇ ଜନଶ୍ରୁତିର ମୂଳ ଖୋଜି ବାହାର କରିବାପାଇଁ ଚେଷ୍ଟା କରାଯିବା ଉଚିତ୍ ।

(ଖ) ବର୍ତ୍ତମାନ ପଶ୍ଚିମବଙ୍ଗ ବୀରଭୂମ୍ ଜିଲ୍ଲାର ଜୟଦେବ-କେନ୍ଦୁଲୀରେ ବର୍ଦ୍ଧମାନ ରାଜାଙ୍କଦ୍ୱାରା ନିର୍ମିତ ମନ୍ଦିରରେ ପୂଜିତ ହେଉଥିବା ରାଧାବିନୋଦ ବିଗ୍ରହ ଶ୍ୟାମରୂପାଗଡ଼ ବା ସେନ ପାହାଡ଼ୀରୁ ମିଳିଥିଲା । ଏହି ବିଗ୍ରହ ପ୍ରକୃତ ପକ୍ଷେ ସେନ ରାଜାମାନଙ୍କଦ୍ୱାରା ପୂଜିତ ହେଉଥିଲା, (ଦ୍ର : ରାଉତରାୟ, ୧୯୭୧, ପୃ ୪୫୬-୫୭୬) ।

ଏଇ ଦୁଇଟି ଜନଶ୍ରୁତିକୁ ଉଭୟ ପରମାନନ୍ଦ ଆଚାର୍ଯ୍ୟ ଓ ସେନ ବିଚାରକୁ ମଧ୍ୟ ନେଇନାହାଁନ୍ତି । ସେମାନେ ପୁଣି ଜନଶ୍ରୁତି-ଭିତ୍ତିକ 'ଭକ୍ତି ରତ୍ନାକର' ଉପରେ ନିର୍ଭର କରିଥିବା ବେଳେ ଏ ଦୁଇଟି ଜନଶ୍ରୁତିକୁ ବିଚାରକୁ ନ ନେବାର କୌଣସି କାରଣ ବି ଦର୍ଶାଇ ନାହାଁନ୍ତି ।

ପୁଣି 'ଭକ୍ତି ରତ୍ନାକର'କୁ ଅବଲମ୍ବନ କରି ଓ ତାର ଉଦ୍ଧୃତି ଦେଇ ପରମାନନ୍ଦ ଆଚାର୍ଯ୍ୟ ମତ ଦିଅନ୍ତି ଯେ (ପ୍ରତାପରୁଦ୍ରଙ୍କ ପୁତ୍ର) ପୁରୁଷୋତ୍ତମ ଜାନା ବୃନ୍ଦାବନସ୍ଥ ମଦନମୋହନ ଓ ଗୋବିନ୍ଦ ବିଗ୍ରହଙ୍କ ସହ ଯୁକ୍ତ ହେବାପାଇଁ ଦୁଇଟି ଠାକୁରାଣୀ ବିଗ୍ରହ ନିର୍ମାଣ କରାଇ ବୃନ୍ଦାବନ ପଠାଇଥିଲେ । କିନ୍ତୁ ମଦନମୋହନ ସ୍ୱପ୍ନାଦେଶ ଦେଲେ ଯେ ଏ ଦୁଇଟି ବିଗ୍ରହ ମଧ୍ୟରୁ ଗୋଟିଏ ରାଧା ଓ ଅନ୍ୟଟି ଲଳିତା ଭାବରେ ତାଙ୍କ ବିଗ୍ରହ ସହ ଯୁକ୍ତ ହୋଇ ପୂଜିତ ହେବେ । ତାହା ହିଁ ହେଲା । ଏହା ଶୁଣି ପୁରୁଷୋତ୍ତମ ଜାନା ଗୋବିନ୍ଦ ବିଗ୍ରହ ସହ ଯୁକ୍ତ ହୋଇ ରାଧା ଭାବରେ ପୂଜିତ ହେବା ଲକ୍ଷ୍ୟରେ ଆଉ ଏକ ଠାକୁରାଣୀ ବା ଦେବୀ ବିଗ୍ରହ ବୃନ୍ଦାବନ ପଠାଇବାପାଇଁ ଚିନ୍ତା କଲେ । ପୂର୍ବେ ରାଧାନଗର ଗ୍ରାମରେ ବୃହଦ୍‌ଭାନୁ ନାମକ ଜଣେ ଦାକ୍ଷିଣାତ୍ୟ ବ୍ରାହ୍ମଣ ରାଧାଙ୍କୁ (ବିଗ୍ରହକୁ) ତାଙ୍କ ଘରେ କନ୍ୟା ରୂପରେ ରଖିଥିଲେ । ବୃହଦ୍‌ଭାନୁଙ୍କ ମୃତ୍ୟୁ ପରେ ଓଡ଼ିଶାର ରାଜା ରାଧାଙ୍କଦ୍ୱାରା ସ୍ୱପ୍ନାବିଷ୍ଟ ହୋଇ ରାଧାନଗରରୁ ଏହି ରାଧା ବିଗ୍ରହକୁ ଆଣି ଜଗନ୍ନାଥ ମନ୍ଦିରର ଚକ୍ରବେଢ଼ାରେ ରଖାଇଥିଲେ । ଚକ୍ରବେଢ଼ାରେ ଏହି ବିଗ୍ରହକୁ ଲୋକେ ଭ୍ରମରେ ଲକ୍ଷ୍ମୀ ବିଗ୍ରହ ବୋଲି ଗ୍ରହଣ କଲେ ଓ ପୂଜା କଲେ । ପୁରୁଷୋତ୍ତମ ଜାନା ଗୋବିନ୍ଦଙ୍କ ସହ ପୂଜିତ ହେବାପାଇଁ ଆଉ ଏକ ଠାକୁରାଣୀ ବା ଦେବୀ ବିଗ୍ରହ ବୃନ୍ଦାବନ ପଠାଇବାକୁ ଚିନ୍ତା କରୁଥିବା ବେଳେ ଚକ୍ରବେଢ଼ରେ ଲକ୍ଷ୍ମୀ ରୂପରେ ପୂଜିତ ହେଉଥିବା ରାଧାଙ୍କଦ୍ୱାରା ସ୍ୱପ୍ନାବିଷ୍ଟ ହୋଇ ଚକ୍ରବେଢ଼ରୁ ସେଇ ବିଗ୍ରହକୁ ବୃନ୍ଦାବନକୁ ପ୍ରେରଣ କରିଥିଲେ ।

ସେଇ ରାଧା ବିଗ୍ରହ ବୃନ୍ଦାବନରେ ରୂପ ଗୋସ୍ୱାମୀ ପ୍ରକଟିତ ଗୋବିନ୍ଦ ବିଗ୍ରହ ସହ ଯୁକ୍ତ ହୋଇ ପୂଜା ପାଇଲା । (ଏ ସମ୍ପର୍କରେ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ କହନ୍ତି ଯେ ଓଡ଼ିଶାରୁ ବୃନ୍ଦାବନକୁ ପ୍ରଥମ ଛେକରେ ପ୍ରେରିତ ରାଧା ବିଗ୍ରହ ଗୋବିନ୍ଦଜୀଉଙ୍କ ପାର୍ଶ୍ୱରେ ସ୍ଥାପିତ ହୋଇଥିଲା ଓ ଦ୍ୱିତୀୟ ଛେକରେ ପ୍ରେରିତ ରାଧା ବିଗ୍ରହ ମଦନମୋହନଙ୍କ ପାର୍ଶ୍ୱରେ ସ୍ଥାପିତ ହେଲା । ଦ୍ର: ଆଚାର୍ଯ୍ୟ, ବୃନ୍ଦାବନ ଚନ୍ଦ୍ର, ୧୯୭୮, ପୃ ୪୯୬ । କିନ୍ତୁ 'ଭକ୍ତି ରତ୍ନାକର' ଅନୁଯାୟୀ ଏହାର ବିପରୀତଟାଇ ଘଟିଥିଲା ଅର୍ଥାତ୍ ରାଧା ବିଗ୍ରହ ପ୍ରଥମେ ମଦନମୋହନ ବିଗ୍ରହ ସହ ଓ ପରେ ଗୋବିନ୍ଦ ବିଗ୍ରହ ସହ ଯୁକ୍ତ ହୋଇଥିଲା) ।

କିନ୍ତୁ 'ଭକ୍ତି ରତ୍ନାକର'ରେ ସ୍ପଷ୍ଟ ଭାବରେ ଉଲ୍ଲେଖ ଅଛି ଯେ ଓଡ଼ିଶାର (ଶ୍ରୀ)ରାଧାନଗର ନାମକ ଗ୍ରାମରେ ପୂଜିତ ହେଉଥିବା / ଥିବା ରାଧା ବିଗ୍ରହ ପ୍ରକୃତ ପକ୍ଷେ ବୃନ୍ଦାବନ ଧାମରୁ ନୀତ । ଯଥା

"ଯୈଛେ ଶ୍ରୀଗୋପାଳ ଗୋବିନ୍ଦେର ସ୍ଥାନ ହୈତେ ।
ଆଇଲା ଦକ୍ଷିଣେ ପଦବ୍ରଜେ ସାକ୍ଷ୍ୟ ଦିତେ ।।
*** *** *** *** ***

କୋନ ଏକ ସମୟ ରାଧା ବୃନ୍ଦାବନ ହୈତେ ।
ଆଇଲା ଉତ୍କଳ ଦେଶେ ଭକ୍ତାଧୀନ ମତେ ।।
ଉତ୍କଳ ଦେଶେତେ ଗ୍ରାମ ଶ୍ରୀରାଧା ନଗର ।
ତଥା ବୈସେ ଏକ ଦାକ୍ଷିଣାତ୍ୟ ବିପ୍ରବର ।।
*** *** *** *** ***

ଶ୍ରୀ ରାଧିକା ଯେ ବୃହଦ୍‌ଭାନୁର କନ୍ୟା ପ୍ରାୟ ।
ତାର ଗୃହେ ବିଲସୟ ଉଲ୍ଲାସ ହିୟାୟ ।।" ଇତ୍ୟାଦି (୬ଷ୍ଠ ତରଙ୍ଗ)

'ଭକ୍ତି ରତ୍ନାକର'ର ଏହି ଅଂଶଟିକୁ ପରମାନନ୍ଦ ଆଚାର୍ଯ୍ୟ ତାଙ୍କ ଓଡ଼ିଆ ପ୍ରବନ୍ଧରେ ଉଦ୍ଧାର କରିଥିଲେ ମଧ୍ୟ ରାଧା ବୃନ୍ଦାବନରୁ (ଶ୍ରୀ)ରାଧାନଗର ଆସିଥିବା ପ୍ରଶ୍ନଟିକୁ ବିଚାରର ପରିସରକୁ ନେଇ ନାହାଁନ୍ତି ।

ରାଧା ବିଗ୍ରହ ବୃନ୍ଦାବନରୁ ଓଡ଼ିଶାର ରାଧାନଗର ଗ୍ରାମକୁ ଆସିବା ଯଦି ବିଶ୍ୱାସ ଯୋଗ୍ୟ ନୁହେଁ, ତା ହେଲେ ସେ ରାଧାନଗରରେ ବ୍ରାହ୍ମଣ ବୃହଦ୍‌ଭାନୁଙ୍କ ଘରେ ରହିବା / ପୂଜିତ ହେବା ମଧ୍ୟ ଅନୁରୂପ ଭାବରେ ବିଶ୍ୱାସ ଯୋଗ୍ୟ ନୁହେଁ । ଆଉ ଯଦି ଜନଶ୍ରୁତିର ଏଇ ଅଂଶଟି ଗ୍ରହଣ କରାଯିବ ତା ହେଲେ ଯେଉଁ ଅଂଶଟିରେ ରାଧାବିଗ୍ରହ ବୃନ୍ଦାବନ ଧାମରୁ ରାଧାନଗର ଗ୍ରାମକୁ ନୀତ ହୋଇଥିବାର ବିବରଣୀ ରହିଛି ସେହି ଅଂଶଟି

କାହିଁକି ଗ୍ରହଣ କରାନଯିବ ତାର କୌଣସି ସନ୍ତୋଷଜନକ କାରଣ ମଧ୍ୟ ନାହିଁ । ଏହି ଗ୍ରାମର ନାମ ରାଧାଙ୍କ ନାମାନୁଯାୟୀ ରାଧାନଗର ଥିବା ତଥା ଏହି ବ୍ରାହ୍ମଣଙ୍କ ନାମ ରାଧାଙ୍କ ପିତା ବୃଷଭାନୁଙ୍କ ନାମ ସହ ସାମଞ୍ଜସ୍ୟ ରକ୍ଷାକରି ବୃହଦ୍‌ଭାନୁ ଥିବା ମଧ୍ୟ ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ଗ୍ରାମ ତଥା ବ୍ରାହ୍ମଣଙ୍କ ନାମରୁ ମନେହୁଏ ଯେ ଏଇ ଜନଶ୍ରୁତି ବହୁ ପରବର୍ତ୍ତୀ କାଳରେ ପରିକଳ୍ପିତ ବା ସଂରଚିତ । ତେଣୁ ବୃନ୍ଦାବନରେ ରାଧାକୃଷ୍ଣ ଯୁଗଳ ଉପାସନାର ଆରମ୍ଭ ହେବାର ବହୁ ପୂର୍ବରୁ ଓଡ଼ିଶାରେ ରାଧାନଗର ଗ୍ରାମରେ ରାଧା ପୂଜାର ସୂତ୍ରପାତ ହୋଇଥିବା କଥାଟି ପ୍ରାମାଣିକ ନୁହେଁ । ବୋଧହୁଏ ପୁରୀସ୍ଥ ଜଗନ୍ନାଥ ମନ୍ଦିର ବେଢ଼ାରେ ଲକ୍ଷ୍ମୀ ଭାବରେ ପୂଜିତ ହେଉଥିବା ଏକ ଦେବୀ ବିଗ୍ରହକୁ ରାଧା ବିଗ୍ରହ ବୋଲି ବ୍ୟାଖ୍ୟା ଓ ପ୍ରତିପାଦନ କରିବାର ପ୍ରଚେଷ୍ଟାରୁ ଏପରି ଏକ ଜନଶ୍ରୁତି ସୃଷ୍ଟି ହୋଇଛି । କେବଳ ସେତିକି ନୁହେଁ, 'ଚୈତନ୍ୟ ଚରିତାମୃତ'ରେ (ଦ୍ର: ଚୈ. ଚ., ମଧ୍ୟ, ପଞ୍ଚମ ପରିଚ୍ଛେଦ) ଥିବା ସତ୍ୟବାଦୀ ବା (ସାକ୍ଷୀ)ଗୋପାଳ ଜନଶ୍ରୁତିର ପ୍ରଭାବରେ ଏପରି ଏକ ଜନଶ୍ରୁତି ସୃଷ୍ଟି ହୋଇଥିବାର ସମ୍ଭାବନା ବି ରହିଛି । ସ୍ମରଣ କରାଯାଇପାରେ ଯେ ବୃନ୍ଦାବନରୁ ଭକ୍ତାଧୀନ ଭାବରେ ସାକ୍ଷୀ ଦେବାପାଇଁ ଗୋପାଳ ଦାକ୍ଷିଣାତ୍ୟର କାଞ୍ଚି ପର୍ଯ୍ୟନ୍ତ ହିଁ ଯାଇଥିଲେ ଓ ସେହିପରି ବୃନ୍ଦାବନରୁ ରାଧା ଭକ୍ତାଧୀନ ହୋଇ ଓଡିଶାରେ ସେଇ ଦାକ୍ଷିଣାତ୍ୟାଗତ ବ୍ରାହ୍ମଣଙ୍କ ଘରେ ଅବସ୍ଥାନ କରିଥିଲେ । ପୁଣି ଗୋପାଳ ସାକ୍ଷୀ ଦେବାପାଇଁ ବୃନ୍ଦାବନରୁ ଦାକ୍ଷିଣାତ୍ୟକୁ ଯାଇଥିବା ବିଷୟର ସୂଚନା ବି 'ଭକ୍ତି ରତ୍ନାକର'ର ସେଇ ପ୍ରସଙ୍ଗର ପ୍ରାରମ୍ଭରେ ବି ସୂଚିତ ଯାହା ତାତ୍ପର୍ଯ୍ୟପୂର୍ଣ୍ଣ । ତେଣୁ ଆଶୁତୋଷ ପଟ୍ଟନାୟକଙ୍କ ଅନୁମାନ, "ରାଧା ମୂର୍ତ୍ତି କଳ୍ପନା ବୋଧହୁଏ ଓଡିଶାରେ ପୂର୍ବରୁ ନ ଥିଲା । ଦାକ୍ଷିଣାତ୍ୟବାସୀ ବୃହଭାନୁ ରାଧା ମୁର୍ତ୍ତିକୁ କନ୍ୟା ରୂପେ ରଖିଥିବାରୁ ଏହାକୁ ଦାକ୍ଷିଣାତ୍ୟର କଳ୍ପନା ରୂପେ ଅନୁମାନ କରାଯାଇପାରେ । ଓଡିଶାରେ ରାଧାମୂର୍ତ୍ତି ବିଶେଷ ଭାବେ ପରିଚିତ ନ ଥିବାରୁ ପୁରୀରାଜା କୌତୂହଳବଶତଃ ରାଧାମୂର୍ତ୍ତିକୁ ଦେଖିବାକୁ ରାଧାନଗର ଯାଇଥିଲେ । ବୋଧହୁଏ ସେଥିପାଇଁ ଚକ୍ରବେଢାରେ ସ୍ଥାପିତ ରାଧାମୂର୍ତ୍ତିକୁ ଲୋକେ ଲକ୍ଷ୍ମୀ ବୋଲି ଭାବିଥିଲେ ।" (ପଟ୍ଟନାୟକ, ଆଶୁତୋଷ, ୧୯୮୮, ପୃ.୫୨) ବି ଗ୍ରହଣୀୟ ନୁହେଁ ।

ମୋଟ ଉପରେ ପରମାନନ୍ଦ ଆଚାର୍ଯ୍ୟ ଓ ସୁକୁମାର ସେନ ମନ ଇଚ୍ଛା କେତେକ ଜନଶ୍ରୁତି ଓ ତାହାର କେତେକ ଅଂଶକୁ ବିଶ୍ୱାସ କରିଥିବା ବେଳେ ଆଉ କେତେକ ଜନଶ୍ରୁତି ବା ଜନଶ୍ରୁତିର କେତେକ ଅଂଶକୁ ବିଶ୍ୱାସ କରିନାହାଁନ୍ତି । ପୁଣି ସେଥିପାଇଁ କୌଣସି କାରଣ ମଧ୍ୟ ଦର୍ଶାଇ ନାହାଁନ୍ତି ।

(୩)

ତେବେ ପ୍ରଥମେ ପରମାନନ୍ଦ ଆଚାର୍ଯ୍ୟଙ୍କ ଅଭିମତର ଭିତ୍ତିଭୂମି ପରୀକ୍ଷା କରାଯାଉ । ପ୍ରସଙ୍ଗକ୍ରମେ ସେ କହନ୍ତି ଯେ କୃଷ୍ଣଦାସ କବିରାଜ ବିରଚିତ 'ଚୈତନ୍ୟ ଚରିତାମୃତ'ରେ ବୃନ୍ଦାବନସ୍ଥ ମଦନମୋହନ ଓ ଗୋବିନ୍ଦ ବିଗ୍ରହ ସହ ରାଧା ବିଗ୍ରହ ପୂଜିତ ହେଉଥିବାର କୌଣସି ସୂଚନା ନାହିଁ ଓ ତେଣୁ ମଦନମୋହନ ଓ ଗୋବିନ୍ଦ ବିଗ୍ରହଙ୍କ ସହ ରାଧା ବିଗ୍ରହ ଯୁକ୍ତ ହେଲେ 'ଚୈତନ୍ୟ ଚରିତାମୃତ' ରଚନା ପରେ (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୮, ପୃ.୬୦; ୧୯୬୯ କ, ପୃ.୪୩୨) । କେଦାର ନାଥ ମହାପାତ୍ର ମଧ୍ୟ ଏହି ମତ ଗ୍ରହଣ କରିଛନ୍ତି (ମହାପାତ୍ର, ୧୯୭୩, ପୃ.୧୭୯) ଓ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ମଧ୍ୟ ଠିକ୍ ଏହି କଥା କହିଛନ୍ତି (ଆଚାର୍ଯ୍ୟ, ବୃନ୍ଦାବନ, ୧୯୭୮, ପୃ.୪୯୪) । ଏହା କିନ୍ତୁ ଭ୍ରମାତ୍ମକ । 'ଚୈତନ୍ୟ ଚରିତାମୃତ'ର ଏକାଧିକ ସ୍ଥାନରେ ବୃନ୍ଦାବନସ୍ଥ ମଦନମୋହନ, ଗୋବିନ୍ଦ ଓ ଗୋପୀନାଥ ବିଗ୍ରହ ସହ ରାଧା ବିଗ୍ରହ ଯୁକ୍ତ ଥିବାର ସ୍ପଷ୍ଟ ଭାବରେ ଉଲ୍ଲେଖ ରହିଛି । ଉଦାହରଣ ସ୍ୱରୂପ ଆଦିଲୀଳାର ୧ମ ପରିଚ୍ଛେଦର ୧୫ଶ ଓ ୧୬ଶ ଶ୍ଳୋକରେ ରାଧା-ମଦନମୋହନ ଯୁଗଳ ବିଗ୍ରହ ଓ ରାଧା-ଗୋବିନ୍ଦ ଯୁଗଳ ବିଗ୍ରହର ଉଲ୍ଲେଖ ଅଛି । ଯଥା :

"ଜୟତାଂ ସୁରତୌ ପଙ୍ଗୋର୍ମମ ମନ୍ଦମତେର୍ଗତୀ ।
ମତ ସର୍ବସ୍ୱ ପଦାମ୍ଭୋଜୌ ରାଧାମଦନମୋହନୌ ॥"

(ଆଦି ୧/୧୫)

ଦିବ୍ୟଦ ବୃନ୍ଦାରଣ୍ୟ କଳ୍ପଦ୍ରୁମାଧଃ ଶ୍ରୀମଦ୍ରତ୍ନାଗାର ସିଂହାସନସ୍ଥୌ
ଶ୍ରୀମଦରାଧା-ଶ୍ରୀଳଗୋବିନ୍ଦଦେବୌ ପ୍ରେଷ୍ଠାଲୀଭିଃ - ସେବ୍ୟମାନୌ ସ୍ମରାମି ॥"

(ଆଦି ୧/୧୬)

ପୁନଶ୍ଚ ଆଦିଲୀଳା ୫ମ ପରିଚ୍ଛେଦରେ ଅଛି :

"ବୃନ୍ଦାବନ ପୁରନ୍ଦର ମଦନ ଗୋପାଳ ।
ରାସ ବିଳାସୀ ସାକ୍ଷାତ ବ୍ରଜେନ୍ଦ୍ର କୁମାର ॥ ୧୯୦
ଶ୍ରୀରାଧା ଲଳିତା ସଙ୍ଗେ ରାସ ବିଳାସ ।
ମନ୍ମଥ ମନ୍ମଥ ରୂପେ ଯାହାର ପ୍ରକାଶ ॥ ୧୯୧
ସ୍ୱମାଧୁର୍ଯ୍ୟେ ଲୋକେର ମନକରେ ଆକର୍ଷଣ
ଦୁଇପାଶେ ରାଧା ଲଳିତା କରେନ୍ ସେବନ ॥ ୧୯୨
ନିତ୍ୟାନନ୍ଦ ଦୟା ମୋର ତୋରେ ଦେଖାଇଲ ।
ଶ୍ରୀ ରାଧା-ମଦନମୋହନେ ପ୍ରଭୁ କରି ଦିଲ ॥ ୧୯୩

*** *** *** *** ***

ଶ୍ରୀ ଗୋବିନ୍ଦ ବସି ଆଛେନ ବ୍ରଜେନ୍ଦ୍ର ନନ୍ଦନ ।
ମାଧୁର୍ଯ୍ୟ ପ୍ରକାଶି କରେନ ଜଗତ-ମୋହନ ।। ୧୯୬
ବାମପାର୍ଶ୍ୱେ ଶ୍ରୀ ରାଧିକା ସଖୀଗଣ ସଙ୍ଗେ ।
ରାସାଦିକ ଲୀଳା ପ୍ରଭୁକରେ କତ ରଙ୍ଗେ ।।" ୧୯୭

ସେହିପରି ଅନ୍ତ୍ୟଲୀଳା ବିଂଶ ପରିଛେଦରେ ମଧ ତାହାର ଉଲ୍ଲେଖ ମିଳେ । ଯଥା :

"ଶ୍ରୀ ରାଧା ସହ ଶ୍ରୀ ମଦନମୋହନ ।
ଶ୍ରୀ ରାଧା ସହ ଶ୍ରୀ ଗୋବିନ୍ଦ ଚରଣ ।। ୧୩୩
ଶ୍ରୀ ରାଧା ସହ ଶ୍ରୀଳ ଶ୍ରୀ ଗୋପୀନାଥ
ଏଇ ତିନି ଠାକୁରୁ ହୟ ଗୌଡ଼ୀୟାର ନାଥ ।।" ୧୩୪

ପୁଣି ଆଦିଲୀଳାର ୧ମ ଓ ୫ମ ପରିଛେଦରେ ରାଧା-କୃଷ୍ଣ ଯୁଗଳ ବିଗ୍ରହର ସ୍ୱଷ୍ଟ ଉଲ୍ଲେଖ ଥିବାରୁ ମନେହୁଏ ଯେ 'ଚୈତନ୍ୟ ଚରିତାମୃତ'ର ରଚନା ଆରମ୍ଭ ହେବା ପୂର୍ବରୁ ହିଁ ବୃନ୍ଦାବନରେ ଗୋପୀନାଥ, ମଦନ ମୋହନ ଓ ଗୋବିନ୍ଦ ବିଗ୍ରହ ସହ ରାଧା ବିଗ୍ରହ ଯୁକ୍ତ ହୋଇ ସାରିଥିଲା ।

'ଚୈତନ୍ୟ ଚରିତାମୃତ'ର ସମାପ୍ତି କାଳ ସମ୍ପର୍କରେ ଗବେଷକ ପଣ୍ଡିତମାନେ ଏକମତ ନୁହନ୍ତି । ବିଭିନ୍ନ ଗବେଷକ ଏହାର ସମାପ୍ତି କାଳ ୧୫୮୦ରୁ ଆରମ୍ଭ କରି ୧୬୧୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ସ୍ଥିର କରିଛନ୍ତି । ଏହାର ସମାପ୍ତିକାଳ ୧୬୧୫ ବୋଲି ଧରି ନେଲେ ଏହାର ରଚନାରମ୍ଭ ଏହି ସମୟର ଦଶ ବର୍ଷ ପୂର୍ବେ ହୋଇଥିବ । ଏହାର ଅର୍ଥ ୧୬୦୫ ଖ୍ରୀଷ୍ଟାବ୍ଦ ବେଳକୁ ବୃନ୍ଦାବନରେ ଯୁଗଳ ଉପାସନାର ସୂତ୍ରପାତ ହୋଇ ସାରିଥିଲା । ସେହିପରି ସୁକୁମାର ସେନଙ୍କ ମତାବଲମ୍ବନରେ ଏହାର ସମାପ୍ତି କାଳ ୧୫୮୦ ବୋଲି ଧରିନେଲେ ଅନ୍ତତଃ ୧୫୭୦ ପୂର୍ବରୁ ବୃନ୍ଦାବନରେ ଯୁଗଳ ଉପାସନାର ସୂତ୍ରପାତ ହୋଇଥିଲା । (ସୁକୁମାର ସେନଙ୍କ ମତରେ 'ଚୈତନ୍ୟ ଚରିତାମୃତ' ୧୫୬୦ ରୁ ୧୫୮୦ ମଧ୍ୟରେ ରଚିତ ହୋଇଥିବ । ଦ୍ର : ସେନ, ୧୯୭୦, ପୃ.୩୫୪/ ଷଷ୍ଠ ସଂସ୍କରଣ ୧୯୭୮, ଆନନ୍ଦ, ୨୦୦୪, ପୃ.୨୮୦) । 'ଚୈତନ୍ୟ ଚରିତାମୃତ'ରେ ରାଧା-କୃଷ୍ଣ ଯୁଗଳ ଉପାସନାର ପ୍ରତିଫଳନ ରହିବାରେ ବିସ୍ମିତ ହେବାର ଅବଶ୍ୟ କୌଣସି କାରଣ ନାହିଁ, କାରଣ ପରେ ଆଲୋଚନା କରି ଦର୍ଶାଇଦିଆଯିବ ଯେ ଏହା ରଚିତ ହେବାର ବହୁ ପୂର୍ବେ ବୃନ୍ଦାବନରେ ଯୁଗଳ ଉପାସନାର ସୂତ୍ରପାତ ହୋଇଥିବ ।

(୪)

ପୁଣି ସେଇ ପରମାନନ୍ଦ ଆଚାର୍ଯ୍ୟଙ୍କ ଅଭିମତର ଆଉ ଏକ ଭିତ୍ତିଭୂମିର ପରୀକ୍ଷା ପ୍ରସଙ୍ଗରେ ଉପରେ ସୂଚିତ ପୁରୁଷୋତ୍ତମ ଜାନାଙ୍କ ପରିଚୟ କଅଣ ଓ ତାଙ୍କ ସମୟ କେବେ ପ୍ରଶ୍ନର ଆଲୋଚନା କରାଯାଉ । 'ଭକ୍ତି ରତ୍ନାକର' ଅନୁଯାୟୀ ସେ ଓଡ଼ିଶାର ରାଜା ପ୍ରତାପରୁଦ୍ର ଦେବଙ୍କ ପୁତ୍ର । ପରମାନନ୍ଦ ଆଚାର୍ଯ୍ୟ କିନ୍ତୁ ତାଙ୍କୁ ଭୋଇବଂଶୀୟ ରାଜା ପୁରୁଷୋତ୍ତମ ଦେବ (୧୬୦୭-୧୬୨୩)ଙ୍କ ସହ ଚିହ୍ନିତ କରିଛନ୍ତି (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୮, ପୃ. ୬୩, ୧୯୬୯କ, ପୃ. ୪୩୪; ୧୯୬୯ଖ, ପୃ ୪୧୪, ପାଦଟୀକା) । କାରଣ ପରମାନନ୍ଦ ଆଚାର୍ଯ୍ୟଙ୍କ ମତରେ ଗଜପତି ପ୍ରତାପରୁଦ୍ର ଦେବଙ୍କର ପୁରୁଷୋତ୍ତମ ନାମକ କୌଣସି ପୁତ୍ର ନ ଥିଲେ (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯ଖ, ପୃ. ୪୧୪, ପାଦଟୀକା) । କେଦାରନାଥ ମହାପାତ୍ର ମଧ୍ୟ ଏହି ମତ ଗ୍ରହଣ କରିଛନ୍ତି (ମହାପାତ୍ର, ୧୯୭୩, ପୃ. ୧୮୦) । ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ମଧ୍ୟ ପରମାନନ୍ଦ ଆଚାର୍ଯ୍ୟଙ୍କ ମତର ସମର୍ଥକ । କେବଳ ସେତିକି ନୁହେଁ ଏ କାରଣରୁ ଏଇ ପୁରୁଷୋତ୍ତମଙ୍କ ଉପରେ ସେ ରସିକାନନ୍ଦଙ୍କ ପ୍ରଭାବ ବି ଆବିଷ୍କାର କରିଛନ୍ତି (ଆଚାର୍ଯ୍ୟ, ବୃନ୍ଦାବନ, ୧୯୭୮, ପୃ.୪୯୬) । କିନ୍ତୁ 'ସରସ୍ୱତୀବିଳାସ'ରୁ ଗଜପତି ପ୍ରତାପରୁଦ୍ରଙ୍କର ପୁରୁଷୋତ୍ତମ ନାମକ ପୁତ୍ର ଥିବାର ଜଣାଯାଏ (ଦ୍ର : ମୁଖର୍ଜୀ, ପ୍ରଭାତ, ୧୯୫୩, ପୃ.୮୯ । 'ସରସ୍ୱତୀବିଳାସ'ରେ ପ୍ରତାପରୁଦ୍ରଙ୍କ ସମ୍ପର୍କରେ କୁହାଯାଇଛି, "ସ୍ୱୟଂ ପୁରୁଷୋତ୍ତମଃପି ପୁରୁଷୋତ୍ତମ ତନୟଃ, ସ୍ୱୟଂ ପୁରୁଷୋତ୍ତମତନୟୋଃପି ପୁରୁଷୋତ୍ତମଜନକଃ, ସ୍ୱୟଂ ପୁରୁଷୋତ୍ତମଜନକୋଃପି ପୁରୁଷୋତ୍ତମ ସେବକଃ" । ଏହାର ଅର୍ଥ ପ୍ରତାପରୁଦ୍ର ନିଜେ ପୁରୁଷୋତ୍ତମ ବା ପୁରୁଷମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସେ (ଗଜପତି) ପୁରୁଷୋତ୍ତମ(ଦେବ)ଙ୍କର ପୁତ୍ର, ସେ ପୁରୁଷୋତ୍ତମ(ଜେନା)ଙ୍କର ପିତା ଓ ପୁରୁଷୋତ୍ତମ ବା ଜଗନ୍ନାଥଙ୍କର ସେବକ ଦ୍ର: ରାଜଗୁରୁ, ସତ୍ୟନାରାୟଣ, ୧୩୩୭, ପୃ.୩୨୧) । ପୁଣି କୃଷ୍ଣଦାସ କବିରାଜ ବିରଚିତ 'ଚୈତନ୍ୟ ଚରିତାମୃତ'ର ଗୋପୀନାଥ ପଟ୍ଟନାୟକ ଉଦ୍ଧାର ପ୍ରସଙ୍ଗରେ (ଅନ୍ତ୍ୟଲୀଳା, ୯ମ ପରିଚ୍ଛେଦ) ମଧ୍ୟ ଗଜପତି ପ୍ରତାପରୁଦ୍ରଙ୍କର ପୁରୁଷୋତ୍ତମ ନାମକ ପୁତ୍ର ଥିବାର ସ୍ପଷ୍ଟ ଭାବରେ ଉଲ୍ଲେଖ ଅଛି । 'ଭକ୍ତି ରତ୍ନାକର' ମଧ୍ୟ ତାହାଙ୍କୁ ସ୍ପଷ୍ଟ ଭାବରେ ପ୍ରତାପରୁଦ୍ରଙ୍କ ପୁତ୍ର ବୋଲି ଉଲ୍ଲେଖ କରେ । ତେଣୁ ଏଇ ପୁରୁଷୋତ୍ତମଙ୍କୁ ଭୋଇ ବଂଶୀୟ ୧ମ ରାମଚନ୍ଦ୍ରଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କ ସହ ଚିହ୍ନିତ କରିବା ଅସଙ୍ଗତ । ଏ ହେତୁ ଏହି ପୁରୁଷୋତ୍ତମଙ୍କ ସମୟ ୧୬ଶ ଶତକର ପ୍ରଥମାର୍ଦ୍ଧ ହୋଇଥିବ କାରଣ ପ୍ରତାପରୁଦ୍ରଙ୍କ ଜୀବିତାବସ୍ଥାରେ ହିଁ ସେ ବୃନ୍ଦାବନକୁ ରାଧା

ବିଗ୍ରହ ପଠାଇଥିବାର ସମ୍ଭାବନା । ସେଥିପାଇଁ ତାଙ୍କୁ ପ୍ରତାପରୁଦ୍ରଙ୍କ ପୁତ୍ର ଓ ପୁରୁଷୋତ୍ତମ ଜାନା (ବା ଜେନା) ନାମରେ ଅଭିହିତ କରାଯାଇଛି । ପ୍ରତାପରୁଦ୍ରଙ୍କ ମୃତ୍ୟୁ ପରେ ସେ ରାଧା ବିଗ୍ରହ ବୃନ୍ଦାବନ ପଠାଇଥିଲେ ଯେତେଦୂର ସମ୍ଭବ ତାଙ୍କୁ ରାଜା ପୁରୁଷୋତ୍ତମ ଦେବ ନାମରେ ଅଭିହିତ କରାଯାଇ ଥାଆନ୍ତା । ପ୍ରତାପରୁଦ୍ରଙ୍କ ମୃତ୍ୟୁ ୧୫୩୮ରୁ ୧୫୪୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ହୋଇଥିବ ବୋଲି ଐତିହାସିକମାନେ ସିଦ୍ଧାନ୍ତ କରିଛନ୍ତି (ସୁବ୍ରମନ୍ୟମ, ୧୯୫୭, ପୃ. ୧୩୦ ଓ ମୁଖର୍ଜୀ, ୧୯୫୩, ପୃ.୮୯) । ତେଣୁ ତା ପୂର୍ବରୁ ହିଁ ପୁରୁଷୋତ୍ତମ ଜେନା ରାଧା ମୂର୍ତ୍ତି ବୃନ୍ଦାବନ ପଠାଇଥିଲେ ।

(୫)

ବ୍ରଜଭୂମିରେ, ବିଶେଷ ଭାବରେ ବୃନ୍ଦାବନରେ ରାଧାମୂର୍ତ୍ତି ପୂଜା ତଥା ରାଧାକୃଷ୍ଣ ଯୁଗଳବିଗ୍ରହ ଉପାସନାର ପ୍ରଚଳନ ସମ୍ପର୍କରେ ଅଧିକ ଆଲୋଚନା କରିବା ପୂର୍ବରୁ ବର୍ତ୍ତମାନ ପ୍ରଥମେ ସେଠାରେ ୧୫ଶ ଶତକର ଶେଷ ଭାଗ ତଥା ୧୬ଶ ଶତକରେ ପ୍ରତିଷ୍ଠିତ ପ୍ରସିଦ୍ଧ ଓ ପ୍ରଧାନ କୃଷ୍ଣ ବିଗ୍ରହ ଗୁଡ଼ିକର ସଂକ୍ଷିପ୍ତ ପରିଚୟ ଦେବା ଆବଶ୍ୟକ । ସେଗୁଡ଼ିକ ହେଲେ :

(୧) ଗୋପାଳ (ବା ଶ୍ରୀନାଥ) ବିଗ୍ରହ- କୃଷ୍ଣଦାସ କବିରାଜଙ୍କ 'ଚୈତନ୍ୟ ଚରିତାମୃତ' ଅନୁଯାୟୀ ଏହି ବିଗ୍ରହ ମାଧବେନ୍ଦ୍ର ପୁରୀଙ୍କଦ୍ୱାରା ଗିରି ଗୋବର୍ଦ୍ଧନରେ ପ୍ରତିଷ୍ଠିତ ହୋଇଥିଲା (ଦ୍ର : ଚୈ. ଚ., ମଧ୍ୟ, ୪ର୍ଥ/୪୦-୧୦୬, ୧୧୪, ୧୪୭-୧୪୯, ୧୫୬-୬୩, ୧୭୪-୭୫, ୧୮୫-୮୭), ବୋଧହୁଏ ୧୫ଶ ଶତକର ଶେଷ ଭାଗରେ । ଚୈତନ୍ୟ ବୃନ୍ଦାବନ ପର୍ଯ୍ୟଟନ ସମୟରେ (ଅର୍ଥାତ୍ ୧୫୧୪-୧୫ ଖ୍ରୀଷ୍ଟାବ୍ଦରେ) ଏହାଙ୍କୁ ଗାଁଠୁଲୀ ଗ୍ରାମରେ ଦର୍ଶନ କରିଥିଲେ । (ଦ୍ର: ଚୈ. ଚ., ମଧ୍ୟ,୧୮ଶ/୨୫,୩୦) । ଏ ବିଗ୍ରହ ବର୍ତ୍ତମାନ ବଲ୍ଲଭାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ପୁଷ୍ଟିମାର୍ଗାବଲମ୍ବୀ ସେବକପୂଜକମାନଙ୍କଦ୍ୱାରା ନାଥଦ୍ୱାରାଠାରେ ଶ୍ରୀନାଥ ନାମରେ ପୂଜିତ ହେଉଛନ୍ତି (ଏ ବିଗ୍ରହ ପ୍ରସଙ୍ଗରେ ମଧ୍ୟ ଦ୍ର:Entwistle, 1987, pp.137-39, 10; Verdia, H. S., 1982.) ।

(୨) ମଦନମୋହନ ବା ମଦନଗୋପାଳ ବିଗ୍ରହ - କୃଷ୍ଣଦାସ କବିରାଜ ସନାତନ ଓ ରୂପ ଗୋସ୍ୱାମୀଙ୍କ ସମ୍ପର୍କରେ 'ଚୈତନ୍ୟ ଚରିତାମୃତ'ରେ ଲେଖିଛନ୍ତି :

> "ତବେ ପ୍ରଭୁ ବ୍ରଜେ ପାଠାଇଲେ ରୂପ ସନାତନ ।
> ପ୍ରଭୁ ଆଜ୍ଞାୟ ଦୁଇଭାଇ ଆଇଲା ବୃନ୍ଦାବନ ।। (ମଧ୍ୟ, ୧/୨୬)
> ଭକ୍ତି ପ୍ରକାଶିୟା ସବ ତୀର୍ଥ ପ୍ରକାଶିଲ ।

ମଦନଗୋପାଳ ଗୋବିନ୍ଦେର ସେବା ପ୍ରଚାରିଲ ॥" (ମଧ୍ୟ, ୧/୨୭)

'ଭକ୍ତି ରତ୍ନାକର' ଅନୁଯାୟୀ ସନାତନ ଗୋସ୍ୱାମୀ ହିଁ ମଦନମୋହନଙ୍କୁ ପ୍ରତିଷ୍ଠା କରି ତାଙ୍କ ସେବା ପ୍ରଚଳନ କରିଥିଲେ :

"ମଦନଗୋପାଳ ସନାତନ ପ୍ରେମଧୀନ ।
ସ୍ୱପ୍ନଛଳେ ସନାତନେ କହେ ଏକଦିନ ॥ ୪୫୭
ସନାତନ ତୋମାର କୁଟିର ମୋର ଭାୟ ।
ମହାବନ ହତେ ଆମି ଆସିବ ଏଥାୟ ॥ ୪୫୮
ଏତ କହି ପ୍ରଭୁ ହଇଲେନ୍ ଅଦର୍ଶନ ।
ପ୍ରେମାବେଶେ ବିହ୍ୱଳ ହଇଲ ସନାତନ ॥ ୪୫୯
ପ୍ରଭୁର ଭଙ୍ଗୀମା ଜାନେ ଭାଲ ମତେ ।
ମଦନଗୋପାଳ ଆଇଲା ରଜନୀ ପ୍ରଭାତେ ॥ ୪୬୦
ସନାତନ ମନେ ହୈଲ ଆନନ୍ଦ ପ୍ରଚୁର ।
ପତ୍ର କୁଟିରେତେ ସେବା କରେନ ପ୍ରଭୁର ॥' ୪୬୧ (୨ୟ ତରଙ୍ଗ)

ଏ ବିଗ୍ରହ ବର୍ତ୍ତମାନ କରୌଲୀରେ ପୂଜିତ ହେଉଛନ୍ତି (ଏ ବିଗ୍ରହ ପ୍ରସଙ୍ଗରେ ମଧ୍ୟ ଦ୍ର:Entwistle, 1987, p185) ।

(୩) ଗୋବିନ୍ଦ ବିଗ୍ରହ – 'ସାଧନ ଦୀପିକା' ଅବଲମ୍ବନରେ 'ଭକ୍ତି ରତ୍ନାକର' କହେ ଯେ ରୂପ ଗୋସ୍ୱାମୀ ଏଇ ଗୋବିନ୍ଦ ବିଗ୍ରହର ପ୍ରତିଷ୍ଠାତା । ଯଥା :

"ଏକ ଦିନ ଏକ ବ୍ରଜବାସୀ ଅକସ୍ମାତ ।
ଶ୍ରୀରୂପ ଗୋସ୍ୱାମୀ ଆଗେ, ହଇଲା ସାକ୍ଷାତ । । ୪୦୮
*** *** *** *** ***

ବ୍ରଜବାସୀ କହେ ଚିନ୍ତା ନ କରିହ ମନେ ।
ଗୋମଟିଲା ଖ୍ୟାତି ଯୋଗପୀଠ ବୃନ୍ଦାବନେ ॥ ୪୧୧
*** *** *** *** ***

ଶ୍ରୀ ଗୋବିନ୍ଦଦେବ ତଥା ଆଛେନ ଗୋପନେ ।
ଏତ କହି ରୂପେ ଲୟା ଗେଲ ସେଇ ସ୍ଥାନେ ॥ ୪୧୩
*** *** *** *** ***

ଯତ୍ନେ ଗୋପପୀଠ ଭୂମି ଖନନେର କାଳେ ।
କୈଲ ବଳରାମ ଆଜ୍ଞା ଦେଖ ମଧ୍ୟ ସ୍ଥଳେ ॥ ୪୨୦

ଯୋଗପୀଠ ମଧ୍ୟେ ପ୍ରଭୁ ବ୍ରଜେନ୍ଦ୍ରନନ୍ଦନ ।
ହଇଲା ସାକ୍ଷାତ କୋଟି କନ୍ଦର୍ପମୋହନ ॥ ୪୨୧
*** *** *** *** ***

ଆହେ ଶ୍ରୀନିବାସ ! କତ କହିବ ତୋମାରେ ।
ଶ୍ରୀ ଗୋବିନ୍ଦ ପ୍ରକଟ ହଇଲା ରୂପଦ୍ୱାରେ ॥" ୪୪୮ (୨ୟ ତରଙ୍ଗ)

ବର୍ତ୍ତମାନ ଏ ବିଗ୍ରହ ଜୟପୁରରେ ଅଛି (ଏ ବିଗ୍ରହ ପ୍ରସଙ୍ଗରେ ମଧ୍ୟ ଦ୍ର:Entwistle, 1987, pp.191-93) ।

(୪) ଗୋପୀନାଥ ବିଗ୍ରହ – 'ଭକ୍ତି ରତ୍ନାକର' ଅନୁଯାୟୀ :

"ବଂଶୀବଟ ନିକଟ ପରମ ରମ୍ୟ ହୟ ।
ତଥା ଗୋପୀନାଥ ମହାରଙ୍ଗେ ବିଳସୟ ॥ ୪୭୭
*** *** *** *** ***

ଅକସ୍ମାତ ଦର୍ଶନ ଦିଲେନ କୃପାକରି ।
ଶ୍ରୀ ମଧୁ ପଣ୍ଡିତ ହୈଲ ସେବା ଅଧିକାରୀ ॥" ୪୭୯ (୨ୟ ତରଙ୍ଗ)

ବର୍ତ୍ତମାନ ଏ ବିଗ୍ରହ ଜୟପୁରରେ ଅଛି (ଏ ବିଗ୍ରହ ପ୍ରସଙ୍ଗରେ ମଧ୍ୟ ଦ୍ର:Entwistle, 1987, pp.185, 191-93.) ।

(୫) ରାଧାଦାମୋଦର ବିଗ୍ରହ – 'ଭକ୍ତି ରତ୍ନାକର' ଅନୁଯାୟୀ ଶ୍ରୀରୂପ ଗୋସ୍ୱାମୀ ଏ ବିଗ୍ରହର ପ୍ରତିଷ୍ଠାତା । ଯଥା :

"ସ୍ୱପ୍ନାଦେଶେ ଶ୍ରୀରୂପ ଶ୍ରୀରାଧାଦାମୋଦରେ ।
ସ୍ୱହସ୍ତେ ନିର୍ମାଣ କରି ଦିଲ ଶ୍ରୀ ଜୀବରେ ॥" ୨୮୬ (୪ର୍ଥ ତରଙ୍ଗ)

'ଭକ୍ତି ରତ୍ନାକର'ରେ ଉଦ୍ଧୃତ 'ସାଧନ ଦୀପିକା' ଅନୁଯାୟୀ :

"ରାଧାଦାମୋଦର ଦେବଃ ଶ୍ରୀରୂପେଣ ପ୍ରତିଷ୍ଠିତ ।
ଜୀବ ଗୋସ୍ୱାମୀନେ ଦତ୍ତଃ ଶ୍ରୀରୂପେଣ ରୂପାହ୍ୱିନା ॥" ୨୯୦ (୪ର୍ଥ ତରଙ୍ଗ)

ଏ ବିଗ୍ରହ ବର୍ତ୍ତମାନ ଜୟପୁରରେ ଅଛି । (ମନେହୁଏ 'ଭକ୍ତି ରତ୍ନାକର'ର ଏହି ଅଂଶ ସୁକୁମାର ସେନଙ୍କ ଦ୍ୱିତୀୟ ମତର ଭିତ୍ତିଭୂମି । ଏ ବିଗ୍ରହ ପ୍ରସଙ୍ଗରେ ମଧ୍ୟ ଦ୍ର:Entwistle, 1987, pp.185, 219 f.n. No.471.) ।

(୬) ରାଧାବିନୋଦ ବିଗ୍ରହ – 'ଭକ୍ତି ରତ୍ନାକର' ଅନୁଯାୟୀ ଏ ବିଗ୍ରହ ଲୋକନାଥ ଦାସ ଗୋସ୍ୱାମୀଙ୍କଦ୍ୱାରା ପ୍ରତିଷ୍ଠିତ । ଲୋକନାଥ ଗୋସ୍ୱାମୀ,

"ସେଇ ସ୍ଥାନେ କତଦିନ ରହେନ ନିର୍ଜନେ ।

କରିବ ବିଗ୍ରହ ସେବା ଏଇ ଚେଷ୍ଟା ମନେ ।। ୩୨୬
ଜାନିଲେନ ପ୍ରଭୁ ଲୋକନାଥ ଉତ୍କଣ୍ଠିତ ।
ଅନ୍ୟରୂପେ ବିଗ୍ରହ ଲଇୟା ଉପସ୍ଥିତ ।। ୩୨୭
ରାଧାବିନୋଦ ନାମ କହି ସମର୍ପିଲା ।
ସେଇକ୍ଷଣେ ତେହଁ ତଥା ଅଦର୍ଶନ ହୈଲା ।। ୩୨୮
*** *** *** *** ***

ଶୀଘ୍ର କରି ଏକ ଝୋଲା ନିର୍ମାଣ କରିଲ ।
ରାଧାବିନୋଦେର ଯେନ ମନ୍ଦିର ହୈଲ ।।" ୩୩୭ (୧ମ ତରଙ୍ଗ)

(ଆହୁରି ମଧ୍ୟ ଦ୍ର: ତତ୍ରୈବ, ୫ମ ତରଙ୍ଗ, ୧୨୬୧-୬୬) ଏହି ବିଗ୍ରହ ବର୍ତ୍ତମାନ ଜୟପୁରରେ ଅଛି (ଏ ବିଗ୍ରହ ପ୍ରସଙ୍ଗରେ ମଧ୍ୟ ଦ୍ର:Entwistle, 1987, p.185.) ।

(୭) ରାଧାରମଣ ବିଗ୍ରହ – 'ଭକ୍ତି ରତ୍ନାକର' ଅନୁଯାୟୀ ଏ ବିଗ୍ରହ ଷଡ୍‌ଗୋସ୍ୱାମୀଙ୍କ ମଧ୍ୟରୁ ଅନ୍ୟତମ ଗୋପାଳଭଟ୍ଟ ଗୋସ୍ୱାମୀଙ୍କଦ୍ୱାରା ପ୍ରତିଷ୍ଠିତ । ଏହା 'ସାଧନଦୀପିକା'ଦ୍ୱାରା ବି ସମର୍ଥିତ । ଯଥା :

"ତବେ କତଦିନ ପରେ ଶାଳଗ୍ରାମ ହୈତେ ।
ଆପନି ପ୍ରକଟ ହେଲି ଲୋକେର ବିଦିତେ ।। ୩୧୯
*** *** *** *** ***

ଶ୍ରୀ ଗୋପାଳ ଭଟ୍ଟ ଗୋସାଇଁର ଜାନି ଅଭିଳାଷ ।
ସ୍ୱୟଂରୂପ ଶ୍ରୀଗୋପାଲ କରିଲା ପ୍ରକାଶ ।। ୩୩୪
ସଗଣ ଉତ୍ସବ କରି ଅଭିଷେକ କୈଲ ।
ଶ୍ରୀରାଧାରମଣ ସେବା ପ୍ରକଟ ହଇଲ ।।" ୩୩୫ (୪ର୍ଥ ତରଙ୍ଗ)

(ଆହୁରି ମଧ୍ୟ ଦ୍ର: ତତ୍ରୈବ ୪ର୍ଥ ତରଙ୍ଗ, ୩୧୫-୧୮) ଏ ବିଗ୍ରହ ବର୍ତ୍ତମାନ ବୃନ୍ଦାବନରେ ଅଛି (ଏ ବିଗ୍ରହ ପ୍ରସଙ୍ଗରେ ମଧ୍ୟ ଦ୍ର:Entwistle, 1987, pp.185-86, 219.) ।

ଏଇ ସାତଟି ବିଗ୍ରହଙ୍କ ମଧ୍ୟରୁ ମଦନମୋହନ, ଗୋବିନ୍ଦ ଓ ଗୋପୀନାଥ ଗୌଡ଼ୀୟ ବୈଷ୍ଣବମାନଙ୍କ ମୁଖ୍ୟ ଆରାଧ୍ୟ ଦେବତା । ଏମାନଙ୍କୁ ହିଁ ଗୌଡ଼ୀୟାର 'ତିନ୍ ଠାକୁର' ବୋଲି କୁହାଯାଏ । କୃଷ୍ଣଦାସ କବିରାଜଙ୍କ ଭାଷାରେ :

"ଏଇ ତିନ୍ ଠାକୁର ଗୌଡ଼ୀୟାକେ କରିୟାଛେନ ଆତ୍ମସାତ୍ ।
ତିନୋର ଚରଣ ବନ୍ଦେ ତିନୋ ଆମାର ନାଥ ।।" (ବୈ.ଚ. ଆଦି ୧/୨)

'ଭକ୍ତି ରତ୍ନାକର' ପ୍ରଣେତା ନରହରି ଚକ୍ରବର୍ତ୍ତୀଙ୍କ ଭାଷାରେ :
"ଶ୍ରୀ ଗୋବିନ୍ଦ ଗୋପୀନାଥ ମଦନମୋହନ ।
ସବାର ସର୍ବସ୍ୱ ଏଇ ତିନେର ଚରଣ ॥" ୧୯୫୭ (୫ମ ତରଙ୍ଗ)
ଓ
"ଶ୍ରୀ ଗୋବିନ୍ଦ ଗୋପୀନାଥ ମଦନମୋହନ ।
ଏ ତିନି ଠାକୁର ଗୌଡ଼ୀୟାର ପ୍ରାଣଧନ ॥ ୧୧୩
ଏ ତିନି ଗୌଡ଼ୀୟାର ସର୍ବସ୍ୱ ସବେ ଜାନେ ।
ଗୌଡ଼ୀୟାକେ ଆତ୍ମସାତ କଲା ଏଇତିନେ ॥" ୧୧୪ (୬ଷ୍ଠ ତରଙ୍ଗ)

(୬)

ଏଠାରେ ସୂଚାଇ ଦେବା ଆବଶ୍ୟକ ଯେ ଗୋପାଳ, ଗୋବିନ୍ଦ, ମଦନମୋହନ ବା ଏପରିକି ଗୋପୀନାଥ ଏହି ନାମରୁ ବିଗ୍ରହଟି ଏକକ କୃଷ୍ଣ ବିଗ୍ରହ ବା ରାଧା ବିଗ୍ରହ ଯୁକ୍ତ କୃଷ୍ଣ ବିଗ୍ରହ (ବା ଯୁଗଳବିଗ୍ରହ) - ଏପରି ଦୁଇ ପ୍ରକାରର ବିଗ୍ରହ ମଧ୍ୟରୁ ଗୋଟିଏ ପ୍ରକାରର ବିଗ୍ରହ - ହେବାର ସମ୍ଭାବନା ରହିପାରେ । କିନ୍ତୁ ରାଧାଦାମୋଦର, ରାଧାବିନୋଦ ଓ ରାଧାରମଣ ନାମରୁ କେବଳ ଯୁଗଳ ବିଗ୍ରହ ବା ରାଧା ବିଗ୍ରହ ଯୁକ୍ତ କୃଷ୍ଣ ବିଗ୍ରହ ସୂଚିତ ହୁଏ । (ଜନଶ୍ରୁତିରେ ଜୟଦେବ ପୂଜିତ ରାଧାମାଧବ ଓ ସେନ ପାହଡୀ ବା ଶ୍ୟାମ ରୂପାଗଡ଼ରୁ ଆନୀତ ଓ ଜୟଦେବ କେନ୍ଦୁଲୀରେ ପୂଜିତ ରାଧାବିନୋଦ ବିଗ୍ରହ ପ୍ରତି ମଧ୍ୟ ଏ ଉକ୍ତି ଓ ଯୁକ୍ତି ସମାନ ଭାବରେ ପ୍ରଯୁଜ୍ୟ ।) ଏହି ଯୁକ୍ତିକୁ ସ୍ୱୀକାର କରିନେଲେ ବୁଝିବା ପାଇଁ ହେବ ଯେ ବୃନ୍ଦାବନରେ ରୂପଗୋସ୍ୱାମୀ ପ୍ରତିଷ୍ଠିତ ରାଧାଦାମୋଦର, ଲୋକନାଥ ଗୋସ୍ୱାମୀ ପ୍ରତିଷ୍ଠିତ ରାଧାବିନୋଦ ଓ ଗୋପାଳଭଟ୍ଟ ଗୋସ୍ୱାମୀଙ୍କଦ୍ୱାରା ପ୍ରତିଷ୍ଠିତ ରାଧାରମଣ ମୂଳରୁ ଯୁଗଳ ବିଗ୍ରହ ଥିଲେ । ସନାତନ ଗୋସ୍ୱାମୀଙ୍କ ମୃତ୍ୟୁର ଅଳ୍ପ ଦିନ ପରେ ହିଁ ରୂପ ଗୋସ୍ୱାମୀଙ୍କ ମୃତ୍ୟୁ ହୋଇଥିଲା । ଜୀବ ଗୋସ୍ୱାମୀ ସନାତନ ଓ ରୂପଙ୍କ ଭ୍ରାତୃଷ୍ପୁତ୍ର ତ ଥିଲେ ଓ ତାଙ୍କ ପରେ ବହୁ ବର୍ଷ ଜୀବିତ ମଧ୍ୟ ଥିଲେ । ଏଥିରୁ ମନେହୁଏ ଯେ ବୃନ୍ଦାବନରେ ରାଧାକୃଷ୍ଣ ଯୁଗଳ ଉପାସନାର ସୂତ୍ରପାତ ହେବା ବେଳକୁ ଷଡ଼-ଗୋସ୍ୱାମୀଙ୍କ ମଧ୍ୟରୁ ଅଧିକାଂଶ ଓ ହୁଏତ ସମସ୍ତେ ଜୀବିତ ଥିଲେ । ରଘୁନାଥଦାସ ଗୋସ୍ୱାମୀଙ୍କ ସମ୍ପର୍କରେ ରୂପଗୋସ୍ୱାମୀ ରଚିତ 'ଦାନକେଳି କୌମୁଦୀ'ରେ ନିମ୍ନ ଶ୍ଳୋକଟି ସ୍ଥାନ ପାଇଛି;

"ରାଧାକୁଣ୍ଡତଟୀ କୁଟୀର ବସତିସ୍ତ୍ୟକ୍ତ୍ୟାନ୍ୟ କର୍ମା ଜନଃ ।
ସେବାମେବ ସମକ୍ଷମତ୍ର ଯୁବୟୋର୍ଯଃ କର୍ତ୍ତୁମୁତ୍‌କଣ୍ଠ୍ୟତେ ।।

ବୃନ୍ଦାରଣ୍ୟସମୃଦ୍ଧିଦୋହଦପଦକ୍ରୀଡ଼ାକଟାକ୍ଷଦ୍ୟୁତେସ୍ ।
ତ୍ତର୍ଷାଖ୍ୟସ୍ତରୁରସ୍ୟ ମାଧବ ଫଳୀଂତୂର୍ଣ୍ଣଂ ବିଧେୟସ୍ତ୍ୱୟା ।”

(ଦ୍ର: ସେନ, ୧୯୭୦, ପୃ.୩୦୦-୩୦୧; ଷଷ୍ଠ ସଂସ୍କରଣ ୧୯୭୮, ଆନନ୍ଦ, ୨୦୦୪, ପୃ.୨୩୯) । ଏହାର ଅର୍ଥ ହେଉଛି,

‘ରାଧାକୁଣ୍ଡ ତଟରେ କୁଟୀରବାସ କରି ଓ ଅନ୍ୟକର୍ମ ତ୍ୟାଗକରି ଯେଉଁ ବ୍ୟକ୍ତି ପ୍ରତ୍ୟକ୍ଷରେ ତୁମ ଦୁଇଜଣଙ୍କ ସେବା କରିବା ପାଇଁ ଉତ୍କଣ୍ଠିତ ହୋଇଅଛି, ହେ ମାଧବ, ତୁମର ଲୀଳାକଟାକ୍ଷଛଟାରେ ବୃନ୍ଦାବନର ସମୃଦ୍ଧି-ସାଧକ ପଦକ୍ଷେପଦ୍ୱାରା ତାହାଙ୍କ ବାସନାତରୁକୁ ଶୀଘ୍ର ଫଳବାନ କର ।’ ଏଥିରୁ ମଧ୍ୟ ରଘୁନାଥ ଦାସ ଗୋସ୍ୱାମୀଙ୍କ ରାଧାକୃଷ୍ଣ ଯୁଗଳ-ଉପାସନା ପ୍ରତି ଆଗ୍ରହ ସୂଚିତ । ଏ ଶ୍ଳୋକର ରଚନା କାଳ ୧୫୪୯ ଖ୍ରୀଷ୍ଟାବ୍ଦ । ମୋଟ ଉପରେ ୧୬ଶ ଶତକର ମଧ୍ୟଭାଗ ସୁଦ୍ଧା ବୃନ୍ଦାବନରେ ରାଧାକୃଷ୍ଣ ଯୁଗଳଉପାସନାର ସୂତ୍ରପାତ ହୋଇ ସାରିଥିଲା । (ଏପରିକି ଏହା ଚୈତନ୍ୟଙ୍କ ଜୀବଦ୍ଦଶାରେ ମଧ୍ୟ ଘଟିଥାଇ ପାରେ ।) ଅବଶ୍ୟ ରାଧାଦାମୋଦର, ରାଧାରମଣ ଓ ରାଧାବିନୋଦ ଏଇ ତିନଟି ଯୁଗଳବିଗ୍ରହ ମଧ୍ୟରୁ କେଉଁ ଯୁଗଳ ବିଗ୍ରହର ପ୍ରତିଷ୍ଠା କେବେ ହୋଇଥିଲା ବା କେଉଁ ଯୁଗଳବିଗ୍ରହର ପ୍ରତିଷ୍ଠା ପ୍ରଥମେ ହୋଇଥିଲା ତା ଜାଣିବାର କୌଣସି ଉପାୟ ନାହିଁ । ତେବେ ରୂପ ଗୋସ୍ୱାମୀ ଯୁଗଳ-ଉପାସନାର ପ୍ରବର୍ତ୍ତକ ବୋଲି ସୁକୁମାର ସେନ ଦେଇଥିବା ଅଭିମତ ସତ୍ୟ ହୋଇଥିବାର ବେଶ୍ ସମ୍ଭାବନା ରହିଛି । ପରେ ହୁଏତ ଜୀବ ଗୋସ୍ୱାମୀ ମଧ୍ୟ ଏହାକୁ ସମର୍ଥନ (ସ୍ୱୀକୃତି ନକହି ସମର୍ଥନ କହିବା ବୋଧହୁଏ ଅଧିକ ଯୁକ୍ତିଯୁକ୍ତ ହେବ) ଜଣାଇ ଥିଲେ ।

ଉପରୋକ୍ତ ବକ୍ତବ୍ୟର ପରିପୋଷକ ପ୍ରମାଣ ମଧ୍ୟ ରହିଛି । ପୂର୍ବରୁ କୁହାଯାଇଛି ‘ଭକ୍ତି ରତ୍ନାକର’ ଅନୁଯାୟୀ ଗଜପତି ପ୍ରତାପରୁଦ୍ରଙ୍କ ପୁଅ ପୁରୁଷୋତ୍ତମ ଜାନା ବୃନ୍ଦାବନରେ ମଦନମୋହନ ଓ ଗୋବିନ୍ଦଙ୍କ ସହ ଯୁକ୍ତ ହୋଇ ପୂଜିତ ହେବାପାଇଁ ଓଡ଼ିଶାରୁ ରାଧାବିଗ୍ରହ ଦୁଇ ଛେକରେ ପଠାଇଥିଲେ । ତେବେ ସେ ଗୌଡ଼ୀୟାର ‘ତିନ୍ ଠାକୁର’ ମଧ୍ୟରୁ ଅନ୍ୟତମ ଗୋପୀନାଥଙ୍କପାଇଁ ରାଧା ବିଗ୍ରହ ପଠାଇବାକୁ କୌଣସି ଚେଷ୍ଟା କଲେ ନାହିଁ କି ପଠାଇଲେ ନାହିଁ କାହିଁକି ? ଗୋପୀନାଥଙ୍କ ସହ ଯୁକ୍ତହେବାପାଇଁ ରାଧା ବିଗ୍ରହ ନ ପଠାଇ କେବଳ ମଦନମୋହନ ଓ ଗୋବିନ୍ଦଙ୍କ ସହ ଯୁକ୍ତ ହେବାପାଇଁ ରାଧା ବିଗ୍ରହ ପଠାଇବାର କାରଣ କ’ଣ ହୋଇପାରେ ? ଅନୁମିତ ହୁଏ ଯେ ଏହା ପୂର୍ବରୁ ଗୋପୀନାଥ ବିଗ୍ରହ ସହ ରାଧା ବିଗ୍ରହ ଯୁକ୍ତ ହୋଇ ସାରିଥିବାରୁ ତାହାର

ଆବଶ୍ୟକତା ଇ ନ ଥିଲା । ତେଣୁ ବୃନ୍ଦାବନରେ ଯୁଗଳ ଉପାସନାର ସୂତ୍ରପାତ ହୋଇଥିଲା ପୁରୁଷୋତ୍ତମ ଜାନା ଓଡ଼ିଶାରୁ ରାଧା ବିଗ୍ରହ ବୃନ୍ଦାବନକୁ ପ୍ରେରଣ କରିବା ପୂର୍ବରୁ ।

ପୁଣି ରୂପ, ଲୋକନାଥ ଓ ଗୋପାଳ ଭଟ୍ଟ ଗୋସ୍ୱାମୀମାନଙ୍କଦ୍ୱାରା ପ୍ରତିଷ୍ଠିତ ଯଥାକ୍ରମେ ରାଧାଦାମୋଦର, ରାଧାବିନୋଦ ଓ ରାଧାରମଣ ଯୁଗଳବିଗ୍ରହର ଉପାସନା ମଧ୍ୟ ଏହି ସମୟରେ କେବେ ହୋଇଥିବ । ତେବେ ତାହା ଗୋପୀନାଥ ବିଗ୍ରହ ସହ ରାଧା ବିଗ୍ରହ ଯୁକ୍ତ ହେବା ପୂର୍ବରୁ ବା ପରର ସେ କଥା ଜାଣିବାର କୌଣସି ଉପାଦାନ ଏବେ ବି ଆବିଷ୍କୃତ ହୋଇନାହିଁ । ଏଇ ଆଲୋଚନାରୁ ଅନୁମିତ ହୁଏ ଯେ ବୃନ୍ଦାବନରେ ରାଧା-କୃଷ୍ଣ ଯୁଗଳ ଉପାସନାର ଅୟମାରମ୍ଭ ହୋଇଥିଲା ଓ ତା ଯେତେଦୂର ସମ୍ଭବ ୧୫୪୦ ପୂର୍ବରୁ ହୋଇଥିଲା ଓ ଶେଷରେ ତା ଚୈତନ୍ୟଙ୍କ ଜୀବଦ୍ଦଶାରେ ହୋଇଥିବାର ସମ୍ଭାବନା ମଧ୍ୟ ରହିଛି । ଏଇ ପରିପ୍ରେକ୍ଷୀରେ ୧୫୭୯ରେ ରଚିତ କବିକର୍ଣ୍ଣପୁର ପରମାନନ୍ଦ ସେନଙ୍କ 'ଚୈତନ୍ୟଚନ୍ଦ୍ରୋଦୟ' ନାଟକରେ ଯୁଗଳ ଉପାସନାର ସୂଚନା (ଦ୍ର: ଆଚାର୍ଯ୍ୟ, ପରମାନନ୍ଦ, ୧୯୬୮, ପୃ.୫୯ ; ୧୯୬୯କ, ପୃ. ୪୩୧) ଅତ୍ୟନ୍ତ ସ୍ୱାଭାବିକ୍ । ଅବଶ୍ୟ ଗୋପାଳ ଭଟ୍ଟଙ୍କ ନାମରେ ପ୍ରଚଳିତ 'ହରିଭକ୍ତିବିଳାସ'ରେ ରାଧାମୂର୍ତ୍ତି ବା ଯୁଗଳଉପାସନା ସମ୍ପର୍କରେ ଆଲୋଚନା ବା ସୂଚନା ନ ଥିବା ଅତ୍ୟନ୍ତ ଅସ୍ୱାଭାବିକ ମନେ ହୁଏ । ('ହରିଭକ୍ତି ବିଳାସ' ୧୫୪୧ ପୂର୍ବରୁ ରଚିତ ହୋଇଥିଲା, ଦ୍ର: ଦେ', ସୁଶୀଲ କୁମାର, ୧୯୬୧, ପୃ.୧୩୯ ।) କାରଣ ଏହି ବୈଷ୍ଣବ ସ୍ମୃତି ଗ୍ରନ୍ଥରେ ଲକ୍ଷ୍ମୀନାରାୟଣ, କୃଷ୍ଣ ଓ ରୁକ୍ମିଣୀ ମୂର୍ତ୍ତି ଗଠନ ସମ୍ପର୍କରେ ଆଲୋଚନା କରାଯାଇଛି । ଏହାର ଅନ୍ୟ କୌଣସି କାରଣ ମଧ୍ୟ ଥାଇପାରେ । ହୁଏତ 'ହରିଭକ୍ତି ବିଳାସ'ର ରଚନା ପରେ ପରେ ହିଁ ଯୁଗଳ ଉପାସନାରୁ ସୂତ୍ରପାତ ହେଲା ।

ବୃନ୍ଦାବନରେ ରାଧାକୃଷ୍ଣ ଯୁଗଳବିଗ୍ରହ ପୂଜାର ସୂତ୍ରପାତ ପ୍ରଥମେ ହୋଇଥିବାର ଆଉ ଏକ ପରିପୋଷକ ପରୋକ୍ଷ ପ୍ରମାଣ ବି ରହିଛି । ବୃନ୍ଦାବନର ଗୋସ୍ୱାମୀମାନେ, ବିଶେଷଭାବରେ ସନାତନ ଗୋସ୍ୱାମୀ, ଶ୍ରୀମଦ୍ ଭାଗବତରେ ରାଧାଙ୍କର ଉଲ୍ଲେଖ ନ ଥିଲେ ମଧ୍ୟ ତାହାର ୧୦ମ ସ୍କନ୍ଧ, ୩୦ଶତମ ଅଧ୍ୟାୟର

"ଅନୟାରାଧିତନୂନଂ ଭଗବାନହରିରୀଶ୍ୱରଃ
ଯନ୍ନ ବିହାୟ ଗୋବିନ୍ଦଃ ପ୍ରୀତୋୟାମନୟଦ୍ରହ ।" (୨୮)

ଶ୍ଳୋକରେ ରାଧାଙ୍କୁ ଆବିଷ୍କାର (ହୁଏତ ବା କୃତ୍ରିମ ବା ଅସ୍ୱାଭାବିକ ଭାବରେ) କରିପାରିଥିଲେ (ଦ୍ର: ଦାଶ, ଗଗନେନ୍ଦ୍ର ନାଥ, ୧୯୮୭, ପୃ.୧୫୪-୫୯) । ଭାଗବତର

ପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ ବି ତାଙ୍କର 'ଶ୍ରୀ ସୁବୋଧିନୀ' ଟୀକାରେ ଉକ୍ତ ଶ୍ଳୋକର ବ୍ୟାଖ୍ୟା ପ୍ରସଙ୍ଗରେ ରାଧାଙ୍କର କୌଣସି ସୂଚନା ଦେଇନାହାଁନ୍ତି, ଯାହା ତାତ୍ପର୍ଯ୍ୟପୂର୍ଣ୍ଣ । ସେ ପ୍ରସଙ୍ଗରେ ଆହୁରି ସ୍ମରଣୀୟ ଯେ ଶ୍ରୀଧରସ୍ୱାମୀଙ୍କ ଉକ୍ତ ଟୀକାକୁ ନିଜେ ଶ୍ରୀଚୈତନ୍ୟ ପ୍ରାମାଣିକ ବୋଲି ଗ୍ରହଣ କରିଥିଲେ ଓ ସେଇ ଟୀକାର ସମାଲୋଚକମାନଙ୍କ ସମ୍ପର୍କରେ ତାଚ୍ଛଲ୍ୟ କରି ଶ୍ଳେଷରେ କହିଥିଲେ,

"ପ୍ରଭୁ ହାସି କହେ ସ୍ୱାମୀ ନା ମାନେ ଯେଇ ଜନ ।
ବେଶ୍ୟାର ଭିତରେ ତାରେ କରିଯେ ଗଣନ ।। (୯୯)
*** *** *** *** ***

ଶ୍ରୀଧର ସ୍ୱାମୀ ନାହି ମାନି ଏତ ଗର୍ବ ଧର ।
ଶ୍ରୀଧର ସ୍ୱାମୀ ନିନ୍ଦି ନିଜେ ଟୀକା କର ।। (୧୧୬)
ଶ୍ରୀଧର ସ୍ୱାମୀ ପ୍ରସାଦେତେ ଭାଗବତ ଜାନି ।
ଜଗଦଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।।" (୧୧୭)

(ଦ୍ର: 'ଚୈତନ୍ୟ ଚରିତାମୃତ', ଅନ୍ତ୍ୟଲୀଳା, ୭ମ ପରିଚ୍ଛେଦ ) ଯାହା ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ।

ଅନ୍ୟ କଥାରେ ଭାଗବତରେ ରାଧାଙ୍କୁ ଆବିଷ୍କାର କରିବା ହେଉଛି ବୃନ୍ଦାବନର ଗୋସ୍ୱାମୀମାନଙ୍କର ଅବଦାନ । ତେଣୁ ବୃନ୍ଦାବନର ସେହି ଗୋସ୍ୱାମୀମାନେ ହିଁ ପ୍ରଥମେ ବୃନ୍ଦାବନରେ କୃଷ୍ଣଙ୍କ ବିଗ୍ରହ ସହ ସେଇ ରାଧାଙ୍କ ବିଗ୍ରହକୁ ଯୁକ୍ତ କରି ରାଧାକୃଷ୍ଣ-ଯୁଗଳବିଗ୍ରହ ଉପାସନାର ସୂତ୍ରପାତ କରାଇଥିବେ ବୋଲି ସହଜରେ ସିଦ୍ଧାନ୍ତ କରାଯାଇପାରେ ।

## (୭)

ଓଡ଼ିଶାର ରାଜପୁତ୍ର (ଗଜପତି ପ୍ରତାପରୁଦ୍ରଙ୍କ ପୁତ୍ର) ପୁରୁଷୋତ୍ତମ ଜେନା ବୃନ୍ଦାବନର ମଦନ ମୋହନ ଓ ଗୋବିନ୍ଦ ବିଗ୍ରହ ପାର୍ଶ୍ୱରେ ପୂଜିତ ହେବା ପାଇଁ ଓଡ଼ିଶାରୁ ରାଧା ବିଗ୍ରହ ପଠାଇଥିବାରୁ ଓଡ଼ିଶାରେ ହିଁ ପ୍ରଥମେ ରାଧା ବିଗ୍ରହ ପୂଜାର ଅୟମାରମ୍ଭ ହୋଇଥିଲା ବୋଲି ପରମାନନ୍ଦ ଆଚାର୍ଯ୍ୟ ଓ ତାଙ୍କ ଅନୁଗାମୀମାନେ ସିଦ୍ଧାନ୍ତ କରିଛନ୍ତି । ପରମାନନ୍ଦ ଆଚାର୍ଯ୍ୟ କହନ୍ତି, "ବଙ୍ଗଳା ଭାଷାରେ ଲିଖିତ ଉଦ୍ଧୃତାଂଶରୁ ଏତିକି ପ୍ରତିପାଦିତ ହେଉଅଛି ଯେ ଓଡିଶାରେ ପ୍ରଥମେ ରାଧାମୂର୍ତ୍ତି ସ୍ଥାପିତ ହୋଇଥିଲା ଓ

ତାହା ପରେ ଜଗନ୍ନାଥ ମନ୍ଦିରର ଚକ୍ରବେଢାରେ ମଧ୍ୟ ପୂଜିତ ହେଉଥିଲା । ତତ୍ପରେ ରାଧାମୂର୍ତ୍ତି ପୁରୀ ଧାମରୁ ବୃନ୍ଦାବନକୁ ସ୍ଥାନାନ୍ତରିତ ହୋଇ ସେଠାରେ ଯୁଗଳ ମୂର୍ତ୍ତି ରାଧାକୃଷ୍ଣଙ୍କର ପୂଜା ପ୍ରଚଳିତ ହୋଇଥିଲା ।" (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯ଖ, ପୃ.୪୧୮) । ଆଶୁତୋଷ ପଟ୍ଟନାୟକ ବି ଓଡିଆ ଜାତୀୟତାବାଦରେ ଉଦ୍‌ବୁଦ୍ଧ ହୋଇ କହନ୍ତି, "ଅନ୍ୟ କୌଣସି ପ୍ରାମାଣିକ ତଥ୍ୟ ଆବିଷ୍କୃତ ନ ହେବା ପର୍ଯ୍ୟନ୍ତ ରାଧାମୂର୍ତ୍ତି ଉପାସନା ପ୍ରଚଳନ ପଛରେ ଓଡିଶାର ପ୍ରଚେଷ୍ଟାକୁ ପ୍ରଥମ ଗୌରବ ଦିଆଯିବାରେ ଦ୍ୱିରୁକ୍ତି ରହିବା ଉଚିତ ନୁହେଁ ।" (ପଟ୍ଟନାୟକ, ଆଶୁତୋଷ, ୧୯୮୮, ପୃ.୫୩) । କିନ୍ତୁ ଏ ମତ ଗ୍ରହଣୀୟ ନୁହେଁ ବୋଲି ପୂର୍ବେ ପ୍ରତିପାଦନ କରାଯାଇଛି । କାରଣ ତାହା ପୂର୍ବରୁ ବୃନ୍ଦାବନରେ ଅନ୍ତତଃ ଗୋପୀନାଥ ବିଗ୍ରହ ସହ ରାଧା ବିଗ୍ରହ ଯୁକ୍ତ ହୋଇଥିବ ବୋଲି ଦର୍ଶାଯାଇଛି । କେବଳ ସେତିକି ନୁହେଁ, ଏ ପ୍ରସଙ୍ଗରେ କୃଷ୍ଣଚନ୍ଦ୍ର ପ୍ରାଣିଗ୍ରାହୀ ବି କହନ୍ତି, "It is mentioned in the above mentioned article of Mr Acharya that an image of Radha was taken from Orissa to Vrindavan where it was associated with the image of Srikrisna. We have seen earlier that Narahari Tirth also took the images Rama and Sita from Orissa and presented them to his teacher Madhava Tirtha. The transportation of the images of Radha, Rama and Sita to the other rigions of India does not indicate that the cult of these images originated in Orissa. It only indicates that Orissa had the best sculptors who produced the most beautiful cult images." (ପାଣିଗ୍ରାହୀ, ୧୯୮୧, ପୃ.୩୨୯) । ପାଣିଗ୍ରାହୀଙ୍କ ଉକ୍ତି ଯୁକ୍ତିଯୁକ୍ତ ମନେହୁଏ ।

(୮)

ଅଧିକ ଅଗ୍ରସର ହେବା ପୂର୍ବରୁ ଏଠାରେ ୧୯୭୦ରେ ପ୍ରଦତ୍ତ ସୁକୁମାର ସେନଙ୍କ ପ୍ରଥମ ବକ୍ତବ୍ୟ ଉପରେ ସାମାନ୍ୟ ଆଲୋକପାତ କରାଯାଉ । ସୁକୁମାର ସେନଙ୍କ ପ୍ରଥମ ବକ୍ତବ୍ୟ ଅନୁଯାୟୀ ନିତ୍ୟାନନ୍ଦଙ୍କ ପତ୍ନୀ ଜାହ୍ନବା ଦେବୀ ବୃନ୍ଦାବନରେ କୃଷ୍ଣ ବିଗ୍ରହ ପାର୍ଶ୍ୱରେ ବସାଇବା ପାଇଁ ବଙ୍ଗଦେଶରେ ରାଧା ବିଗ୍ରହ ନିର୍ମାଣ କରାଇ ବୃନ୍ଦାବନ ପଠାଇଥିଲେ । ଜାହ୍ନବା ଖଡଦହରେ ରାଧାବିଗ୍ରହ ନିର୍ମାଣ କରାଇ ବୃନ୍ଦାବନ ପଠାଇଥିବା ସତ୍ୟ । (ଏ ବିବରଣ 'ଭକ୍ତି ରତ୍ନାକର'ରେ ଅଛି ଓ 'ଭକ୍ତି ରତ୍ନାକର'ର ଏଇ ଅଂଶ ସୁକୁମାର ସେନଙ୍କ ପ୍ରଥମ ବକ୍ତବ୍ୟର ଭିତ୍ତିଭୂମି ବୋଲି ଅନୁମିତ ହୁଏ) । କିନ୍ତୁ ଏହା ବୃନ୍ଦାବନରେ ତଥା ଅନ୍ୟତ୍ର ଯୁଗଳ ଉପାସନା ପ୍ରବର୍ତ୍ତନର ପରବର୍ତ୍ତୀ ।

ଶ୍ରୀନିବାସ ଆଚାର୍ଯ୍ୟ ବୈଷ୍ଣବ ଗ୍ରନ୍ଥଗୁଡ଼ିକ ସହ ବୃନ୍ଦାବନରୁ ପ୍ରତ୍ୟାବର୍ତ୍ତନ କରିବାର ପୂର୍ବରୁ ସେଠାରେ ଯୁଗଳ ଉପାସନା ହୋଇଥିବାର ଦର୍ଶାଯାଇଛି । ଏହାପରେ ଶ୍ରୀନିବାସ ଆଚାର୍ଯ୍ୟ ଆଉ ଥରେ ବୃନ୍ଦାବନ ଯାଇଥିଲେ । ସେ ଦ୍ୱିତୀୟ ବାର ବୃନ୍ଦାବନରୁ ଫେରିବାପରେ ଖେତୁରୀଠାରେ ନରୋତ୍ତମ ଠାକୁର ଛଅଟି ବିଗ୍ରହ ପ୍ରତିଷ୍ଠା କରିଥିଲେ । ଏଇ ଛଅଟି ବିଗ୍ରହ ହେଲେ : ଗୌରାଙ୍ଗ, ବଲ୍ଲବୀକାନ୍ତ, ଶ୍ରୀ ବ୍ରଜମୋହନ, ଶ୍ରୀକୃଷ୍ଣ, ଶ୍ରୀରାଧାକାନ୍ତ ଓ ଶ୍ରୀରାଧାରମଣ । (ଅର୍ଥାତ୍ ଏ ଛଅଟି ବିଗ୍ରହ ମଧ୍ୟରୁ ଗୋଟିଏ ଗୌରାଙ୍ଗ ବା ଶ୍ରୀ ଚୈତନ୍ୟଙ୍କର ବି ଥିଲା ।) ଏଇ ବିଗ୍ରହ ପ୍ରତିଷ୍ଠା ଉତ୍ସବରେ ଯୋଗଦେବା ପରେ ଜାହ୍ନବା ଦେବୀ ବୃନ୍ଦାବନ ଯାଇଥିଲେ । ତାଙ୍କର ବୃନ୍ଦାବନ ପର୍ଯ୍ୟଟନ ପ୍ରସଙ୍ଗରେ 'ଭକ୍ତି ରତ୍ନାକର' କହେ :

"ଏକ ଦିନେ ଶ୍ରୀଗୋପୀନାଥେର ଆଗେ ଗିୟା ।
ରାଧା ଗୋପୀନାଥେ ଦେଖି ରହେ ଦାଣ୍ଡାଇୟା ।। ୨୩୬
ପରମ କୌତୁକେ ମନେ ମନେ ବିଚାରୟ ।
– ଶ୍ରୀରାଧିକା କିଛୁ ଉଚ୍ଚ ହୈଲେ ଭାଲହୟ ।। ୨୩୭
ଇହା ମନେକରି କାରେ କିଛୁ ନ କହିଲା ।
ଶୟନ ଆରତି ଦେଖି ବାସାୟ ଆଇଲା ।। ୨୩୮
ସ୍ୱପ୍ନ ଛଳେ ଗୋପୀନାଥ ଦିୟା ଦରଶନ ।
ଶ୍ରୀ ଜାହ୍ନବା ପ୍ରତି କହେ ମଧୁର ବଚନ ।। ୨୩୯
ଆମି ଯୈଛେ ଉଚ୍ଚ ତୈଛେ ନହେ ମୋର ପ୍ରିୟା
– ହଇୟାଛେ କୌତୁକ ଅସଦୃଶ ନିରିଖିୟା ।। ୨୪୦
ଗୌଡ଼େ ଗିୟା ଶୀଘ୍ର ପ୍ରିୟା ପ୍ରକାଶି ପାଠାବେ ।
ବାମେ ବସିବେକ ତେହଁ ଇହାଓ ଦେଖିବେ ।। ୨୪୧
ଶ୍ରୀ ରାଧିକା ହାସିୟା ଜାହ୍ନବା ପ୍ରତି କୟ ।
ନା କର ସଙ୍କୋଚ ଏ ଇଚ୍ଛା ଓ ମୋର ହୟ ।।" ୨୪୨ ଇତ୍ୟାଦି (୧୧ଶ ତରଙ୍ଗ)

ଏହାପରେ ଜାହ୍ନବା ଦେବୀ ରାଧା ବିଗ୍ରହ ନିର୍ମାଣ କରାଇ ଖଡ଼ଦହରୁ ବୃନ୍ଦାବନ ପଠାଇଥିଲେ ବୋଲି 'ଭକ୍ତି ରତ୍ନାକର'ରୁ ଜଣାଯାଏ । ଯଥା :

"ସକଲ ମଙ୍ଗଳ ଖଡ଼ଦହେ ଶ୍ରୀ ଈଶ୍ୱରୀ ।
ବିତରୟେ ପ୍ରେମ ଭକ୍ତି ଜୀବେ କୃପାକରି ।। ୬୯

ରାଧିକାର ଶ୍ରୀମୂର୍ତ୍ତି ନିର୍ମାଣ କରାଇୟା ।
ହୈଲା ମହା ବିହ୍ୱଳ ସେ ଶୋଭା ନିରିଖିୟା ।। ୭୦
ଶ୍ରୀ ପରମେଶ୍ୱରୀ ଦାସ ଆଦି ବିଜ୍ଞ ଗଣେ
ଆଜ୍ଞା କୈଲା ଲଇୟା ଯାଇତେ ବୃନ୍ଦାବନେ ।। ୭୧
*** *** *** *** ***

ସେବାଧିକାରୀରେ ଗୋପୀନାଥ ଆଜ୍ଞା କୈଲା ।
ଲୟାଁ ଗେନୁ ଯାରେ ତାରେ ବାମେ ବସାଇଲା ।। ୨୨୯
ପୂର୍ବ ଠାକୁରାଣୀ ହର୍ଷେ ବସିଲା ଦକ୍ଷିଣେ ।
ହଇଲ ଅଦ୍ଭୁତ ଶୋଭା-ଦେଖିନୁ ନୟନେ ।।" ୨୩୦ (୧୩ଶ ତରଙ୍ଗ)

ଏଥିରୁ ଜଣାଯାଏ ଯେ ବୃନ୍ଦାବନରେ ଯୁଗଳଉପାସନା ପ୍ରଚଳନର ପରେ, ବହୁତ ପରେ, ଜାହ୍ନବା ଦେବୀ ଖଡ଼ଦହରେ ରାଧାବିଗ୍ରହ ନିର୍ମାଣ କରାଇ ବୃନ୍ଦାବନ ପଠାଇଥିଲେ । ସେଠାରେ ଗୋପୀନାଥ ବିଗ୍ରହ ପାର୍ଶ୍ୱରେ ଥିବା ଅଳ୍ପ ଉଚ୍ଚତା ବିଶିଷ୍ଟ ରାଧାବିଗ୍ରହ ସହ ଏହି ବିଗ୍ରହ ମଧ୍ୟ ଗୋପୀନାଥ ବିଗ୍ରହର ପାର୍ଶ୍ୱରେ, ବାମ ପାର୍ଶ୍ୱରେ, ସ୍ଥାପିତ ହୋଇଥିଲା । (ଆଶୁତୋଷ ପଟ୍ଟନାୟକ ଜାହ୍ନବାଙ୍କୁ 'ଜାହ୍ନବୀ' ବୋଲି ଅଭିହିତ ତ କରିଛନ୍ତି, ପୁଣି ଗୋବିନ୍ଦ ଓ ଗୋପୀନାଥଙ୍କୁ ଏକ ବୋଲି ଧରି ନେଇଥିବାରୁ ଭ୍ରମରେ ଜାହ୍ନବା ପ୍ରେରିତ ରାଧାବିଗ୍ରହ ଗୋବିନ୍ଦବିଗ୍ରହ ପାର୍ଶ୍ୱରେ ସ୍ଥାପିତ ହୋଇଥିଲା ବୋଲି ପ୍ରଥମେ କହିଥିଲେ, ଦ୍ର : ପଟ୍ଟନାୟକ, ୧୯୮୬ । ତେବେ ପରେ ୧୯୮୮ରେ ସେ ତାଙ୍କ ଅଭିମତ ପରିବର୍ତ୍ତନ କରି ଜାହ୍ନବା ପ୍ରେରିତ ରାଧାମୂର୍ତ୍ତି ଗୋପୀନାଥ ବିଗ୍ରହଙ୍କ ପାର୍ଶ୍ୱରେ ସ୍ଥାପିତ ହୋଇଥିଲେ ବୋଲି ମୋର ମତ ଗ୍ରହଣ କରିଛନ୍ତି, ଦ୍ର ପଟ୍ଟନାୟକ, ୧୯୮୮, ପୃ.୫୧) । କେବଳ ସେତିକି ନୁହେଁ ଜାହ୍ନବା ଦେବୀ ପରମେଶ୍ୱରୀ ଦାସଙ୍କଦ୍ୱାରା ତଡ଼ାଆଠପୁରରେ ମଧ୍ୟ ରାଧାଗୋପୀନାଥ ଯୁଗଳ ବିଗ୍ରହ ଉପାସନାର ପ୍ରଚଳନ କରାଇଥିଲେ । ତେଣୁ ଏ ସମ୍ପର୍କରେ ପୂର୍ବେ ସୂଚିତ ଦେବ ପ୍ରସାଦ ମିତ୍ରଙ୍କଦ୍ୱାରା ଉଦ୍ଧୃତ ଏବକାର ଜନଶ୍ରୁତି ମଧ୍ୟ ଗ୍ରହଣୀୟ ନୁହେଁ ।

(୯)

ପରମାନନ୍ଦ ଆଚାର୍ଯ୍ୟଙ୍କର ଅନ୍ୟ ଏକ ସିଦ୍ଧାନ୍ତ ହେଉଛି, ବୃନ୍ଦାବନରେ ଯେବେ ରାଧାକୃଷ୍ଣ ଯୁଗଳଉପାସନାର ସୂତ୍ରପାତ ହେଲା ପ୍ରାୟ ସେହି ସମୟରେ ରସିକାନନ୍ଦ ଦେବଗୋସ୍ୱାମୀ ସୁବର୍ଣ୍ଣରେଖା ନଦୀର ଉତ୍ତର ତୀରରେ ବର୍ତ୍ତମାନ ପଶ୍ଚିମବଙ୍ଗର

ମେଦିନୀପୁର ଜିଲ୍ଲାର ଗୋପୀବଲ୍ଲଭପୁରରେ ରାଧାକୃଷ୍ଣ ଯୁଗଳଉପାସନାର ସୂତ୍ରପାତ କଲେ (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୮, ପୃ.୬୧; ୧୯୬୯କ, ପୃ. ୪୩୨-୩୩; ୧୯୬୯ଖ, ପୃ.୪୧୯) । ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ମଧ୍ୟ ଏ କାରଣରୁ ଭ୍ରମରେ ପୁରୁଷୋତ୍ତମ ଜେନାଙ୍କ ଉପରେ ରସିକାନନ୍ଦଙ୍କ ପ୍ରଭାବ ଆବିଷ୍କାର କରିବାର ଚେଷ୍ଟା କରିଛନ୍ତି । ଏ ସବୁ ମତ ଭ୍ରମାତ୍ମକ । 'ଚୈତନ୍ୟ ଚରିତାମୃତ'ରେ ବୃନ୍ଦାବନରେ ରାଧାକୃଷ୍ଣ ଯୁଗଳଉପାସନାର ପ୍ରତିଫଳନ ନାହିଁ ବୋଲି ଧରି ନେଇଥିବାରୁ ତଥା ଓଡ଼ିଶାରୁ ବୃନ୍ଦାବନ ଧାମକୁ ରାଧା ବିଗ୍ରହ ପ୍ରେରଣ କରିଥିବା ପୁରୁଷୋତ୍ତମ ଜେନାଙ୍କୁ ଭୋଇ ବଂଶୀୟ ପୁରୁଷୋତ୍ତମ ଦେବଙ୍କ ସହ ଚିହ୍ନିତ କରିଥିବାରୁ ପରମାନନ୍ଦ ଆଚାର୍ଯ୍ୟ ଏପରି ଭ୍ରମାତ୍ମକ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । କିନ୍ତୁ ପରମାନନ୍ଦ ଆଚାର୍ଯ୍ୟଙ୍କର ପୂର୍ବୋକ୍ତ ଦୁଇଟି ଯାକ ସିଦ୍ଧାନ୍ତ କିପରି ଭ୍ରମାତ୍ମକ ତାହା ପୂର୍ବେ ଦର୍ଶାଯାଇଛି ଓ ବୃନ୍ଦାବନରେ ରାଧାକୃଷ୍ଣ ଯୁଗଳଉପାସନାର ସୂତ୍ରପାତ କିପରି ୧୬ଶ ଶତକର ମଧ୍ୟ ଭାଗରେ (ଏପରିକି ୧୫୪୦ ପୂର୍ବେ) ହୋଇଥିବାର ସମ୍ଭାବନା ରହିଛି ତାହା ମଧ୍ୟ କୁହାଯାଇଛି । କିନ୍ତୁ ମେଦିନୀପୁର ଅନ୍ତର୍ଗତ ରୋହିଣୀ ଗ୍ରାମର ଜମିଦାର ଅଚ୍ୟୁତାନନ୍ଦ ପଟ୍ଟନାୟକଙ୍କ ପୁତ୍ର ରସିକମୁରାରୀ ପଟ୍ଟନାୟକ ବା ରସିକାନନ୍ଦ ଦେବଗୋସ୍ୱାମୀଙ୍କଦ୍ୱାରା ଯୁଗଳଉପାସନା ପ୍ରସାରର ସମୟ ୧୭ଶ ଶତକର ଆଦ୍ୟଭାଗ । ତେଣୁ ରସିକାନନ୍ଦ ୧୭ଶ ଶତକର ଆଦ୍ୟରେ ଓଡ଼ିଶାର ସୀମାନ୍ତ ଗୋପୀବଲ୍ଲଭପୁରଠାରେ ଯେଉଁ ରାଧାକୃଷ୍ଣ ଯୁଗଳଉପାସନାର ପ୍ରବର୍ତ୍ତନ କଲେ ତାହା ବୃନ୍ଦାବନରେ ଯୁଗଳ ଉପାସନା ପ୍ରବର୍ତ୍ତନର ସମସାମୟିକ ତ ହୋଇ ପାରିବ ନାହିଁ ବରଂ ତାର ବହୁ ପରବର୍ତ୍ତୀ ଓ ତା'ଦ୍ୱାରା ପ୍ରତ୍ୟକ୍ଷ ଭାବରେ ପ୍ରଭାବିତ ବୋଲି ପ୍ରମାଣ କରାଯାଇ ପାରିବ ।

ରସିକାନନ୍ଦଙ୍କ ଗୁରୁ ଶ୍ୟାମାନନ୍ଦ ବୃନ୍ଦାବନରୁ ଶ୍ରୀନିବାସ ଆଚାର୍ଯ୍ୟ ଓ ନରୋତ୍ତମ ଠାକୁରଙ୍କ ସହ ବୈଷ୍ଣବ ଗ୍ରନ୍ଥଗୁଡିକ ସହ ଗୌଡ ଦେଶକୁ ଫେରିବା ବେଳକୁ 'ଚୈତନ୍ୟ ଚରିତାମୃତ'ର ରଚନା ଶେଷ ହୋଇଥିଲା ଓ ସେମାନେ ଅନ୍ୟାନ୍ୟ ବୈଷ୍ଣବ ଗ୍ରନ୍ଥର ପାଣ୍ଡୁଲିପି ସହ ଏହି ଗ୍ରନ୍ଥର ଏକମାତ୍ର ପାଣ୍ଡୁଲିପି ସାଙ୍ଗରେ ଧରି ବୃନ୍ଦାବନ ଛାଡ଼ିଥିଲେ ବୋଲି କୁହାଯାଏ (ଯଦିଓ ସେ ସମ୍ପର୍କରେ ଭିନ୍ନ ମତ ବି ରହିଛି) । ପୁଣି କୁହାଯାଏ ଯେ ବାଟରେ ଏହି ଗ୍ରନ୍ଥଗୁଡିକ ବନ ବିଷ୍ଣୁପୁରର ରାଜା ହାମ୍ବୀରଙ୍କଦ୍ୱାରା ଅପହୃତ ହୋଇଥିଲା । ରାଧାଗୋବିନ୍ଦ ନାଥଙ୍କ ମତରେ ଗ୍ରନ୍ଥ ଅପହରଣର ସମୟ ୧୬୦୦ ଖ୍ରୀଷ୍ଟାବ୍ଦ ହେବ (ନାଥ, ୧୯୮୫, ପୃ.୨୪) । 'ଚୈତନ୍ୟ ଚରିତାମୃତ'ରେ ବୃନ୍ଦାବନରେ ସେତେବେଳେ ହେଉଥିବା ଯୁଗଳଉପାସନାର ସ୍ପଷ୍ଟ ପ୍ରତିଫଳନ ଥିବାରୁ ଶ୍ୟାମାନନ୍ଦ

ବୃନ୍ଦାବନରେ ଯୁଗଳଉପାସନା ଦେଖି ଆସିଥିଲେ ଓ ତାଙ୍କ ପ୍ରଭାବରେ ତାଙ୍କ ଶିଷ୍ୟ ରସିକାନନ୍ଦ ୧୬୦୦ ଖ୍ରୀଷ୍ଟାବ୍ଦ ପରେ ଗୋପୀବଲ୍ଲଭପୁରରେ ଏହି ଯୁଗଳଉପାସନାର ପ୍ରବର୍ତ୍ତନ କରିଥିଲେ ବୋଲି ଅନୁମାନ କରାଯାଇପାରେ । ପୁଣି 'ଭକ୍ତି ରତ୍ନାକର'ରେ ରସିକାନନ୍ଦଙ୍କ ଗୁରୁ ଶ୍ୟାମାନନ୍ଦଙ୍କ ବୃନ୍ଦାବନ ଅବସ୍ଥାନ ସମ୍ପର୍କରେ କୁହାଯାଇଛି :

"ଶ୍ୟାମାନନ୍ଦ ସଦା ହରିରସେ ମାତୋୟାର ।
ସର୍ବତ୍ର ଦର୍ଶନେ ସୁଖ ବାଢ଼ୟେ ଅପାର ।। ୫୮
ଶ୍ରୀରାଧାଗୋବିନ୍ଦ ରାଧା-ମଦନମୋହନ ।
ରାଧା-ଗୋପୀନାଥେ ଦେଖି ନିଛୟ ଜୀବନ ।।" ୫୯ (୬ଷ୍ଠ ତରଙ୍ଗ)

ତେଣୁ ଶ୍ୟାମାନନ୍ଦ ବୃନ୍ଦାବନରେ ଯୁଗଳଉପାସନା ଦେଖି ଆସିଥିଲେ ଓ ତାଙ୍କର ପ୍ରଭାବରେ ତାଙ୍କ ଶିଷ୍ୟ ରସିକାନନ୍ଦ ଗୋପୀବଲ୍ଲଭପୁର ଓ ଅନ୍ୟତ୍ର ରାଧାକୃଷ୍ଣ ଯୁଗଳ ଉପାସନାର ପ୍ରବର୍ତ୍ତନ କଲେ ବୋଲି ଆପାତତଃ ମନେ ହୋଇପାରେ । କାରଣ ଓଡିଶାରେ ଚୈତନ୍ୟ ପ୍ରବର୍ତ୍ତିତ ପ୍ରେମଧର୍ମ ପ୍ରଚାର କରିବାର ଦାୟିତ୍ୱ ଏଇ ଶ୍ୟାମାନନ୍ଦଙ୍କ ଉପରେ ନ୍ୟସ୍ତ ଥିଲା ଓ ସେ ତାଙ୍କ ଶିଷ୍ୟ ରସିକାନନ୍ଦଙ୍କ ସହ ସେଇ କାମରେ ଲାଗିପଡିଥିଲେ । (ତତ୍କାଳୀନ ରାଜନୀତିକ ଓଡିଶା ମଧ୍ୟରେ ମେଦିନୀପୁର ଅନ୍ତର୍ଗତ ଥିଲା ଓ ସେଠାରେ ତଥା ଓଡିଶାର ଅନ୍ୟତ୍ର ଶ୍ୟାମାନନ୍ଦ ଓ ରସିକାନନ୍ଦଙ୍କ ବୈଷ୍ଣବଧର୍ମ ପ୍ରଚାର ବିଷୟକ କିଛି ବିବରଣୀପାଇଁ ଦ୍ର: ଚକ୍ରବର୍ତ୍ତୀ, ରମାକାନ୍ତ, ୧୮୮୫, ପୃ.୨୪୪-୫୬) ।

କିନ୍ତୁ କେବଳ ସେତିକି ନୁହେଁ, ଶ୍ୟାମାନନ୍ଦଙ୍କ ସହ ସାକ୍ଷାତ ଓ ତାଙ୍କଠାରୁ ବୈଷ୍ଣବ ଦୀକ୍ଷା ଗ୍ରହଣ ପରେ ନିଜେ ରସିକାନନ୍ଦ ମଧ୍ୟ ବ୍ରଜଧାମ ବା ବୃନ୍ଦାବନ ଯାଇଥିଲେ ଓ ସେଠାରେ ଯୁଗଳବିଗ୍ରହ ଉପାସନା ଦେଖିଥିଲେ । ପୁଣି ସେଠାରୁ ପ୍ରତ୍ୟାବର୍ତ୍ତନ ପରେ ସେ ତାଙ୍କ ଗୁରୁ ଶ୍ୟାମାନନ୍ଦଙ୍କ ସହ ଖେତୁରୀ/ଖେତରୀ ଯାଇ ସେଠାରେ ପୂର୍ବୋକ୍ତ ନରୋତ୍ତମ ଠାକୁରଙ୍କଦ୍ୱାରା ଗୌରାଙ୍ଗ ବା ଚୈତନ୍ୟଙ୍କ ବିଗ୍ରହ ସହ ମୋଟରେ ଛଅଟି ବିଗ୍ରହ ପ୍ରତିଷ୍ଠା ଉତ୍ସବରେ ଯୋଗ ବି ଦେଇଥିଲେ ବୋଲି 'ରସିକମଙ୍ଗଳ' ଓ ଅନ୍ୟାନ୍ୟ ସୂତ୍ରରୁ ଜଣାଯାଏ ।। ସେଇ ବିଗ୍ରହମାନଙ୍କ ମଧ୍ୟରୁ କେତୋଟି ରାଧା-କୃଷ୍ଣ ଯୁଗଳ ବିଗ୍ରହ ଥିଲା ବୋଲି ମଧ୍ୟ ଅନୁମିତ ହୁଏ (ଖେତୁରୀ ଉତ୍ସବ ସମ୍ପର୍କରେ କିଛି ବିବରଣପାଇଁ ଦ୍ର: ଚକ୍ରବର୍ତ୍ତୀ, ରମାକାନ୍ତ, ୧୮୮୫, ପୃ. ୧୭୫-୭୬,୨୨୯-୪୩) । ତା ପରେ ହିଁ ରସିକାନନ୍ଦ ଯୁଗଳବିଗ୍ରହ ଉପାସନା ଆରମ୍ଭ କଲେ । ତେଣୁ ବୃନ୍ଦାବନରେ ତଥା ଅନ୍ୟତ୍ର ହେଉଥିବା ରାଧା-କୃଷ୍ଣ ଯୁଗଳବିଗ୍ରହ ଉପାସନାର ପ୍ରଭାବରେ ସେ ମଧ୍ୟ ଗୋପୀବଲ୍ଲଭପୁର ତଥା ଅନ୍ୟତ୍ର ଯୁଗଳଉପାସନାର ସୂତ୍ରପାତ କରାଇଥିଲେ ।

ରସିକାନନ୍ଦ ପ୍ରଥମେ ଧାରନ୍ଦାରେ ଥିବା ଦୁର୍ଦ୍ଦାନ୍ତ ପ୍ରକୃତିର ଦୁଇ ଭାଇ ଭୀମ ଓ ଶ୍ରୀକରଙ୍କୁ ବୈଷ୍ଣବ ଦୀକ୍ଷାରେ ଦୀକ୍ଷିତ କରିବା ପରେ ସେମାନଙ୍କ ଗୃହରେ ପ୍ରସ୍ତୁତ ଏକ ରାଧା ବିଗ୍ରହ ସହ ଗୋପୀବଲ୍ଲଭପୁରରେ ଥିବା ତାଙ୍କ କୁଳବିଗ୍ରହ ଗୋପୀବଲ୍ଲଭ ରାୟ ବା କୃଷ୍ଣ ବିଗ୍ରହଙ୍କୁ ଗୋପୀବଲ୍ଲଭପୁରରୁ ଆଣି ଧାରନ୍ଦାରେ ହିଁ ଉଭୟ ବିଗ୍ରହଙ୍କର ବିବାହ ଉତ୍ସବ କରାଇଲେ । ତା ପରେ ଉଭୟ ବିଗ୍ରହଙ୍କୁ ଧାରନ୍ଦାରୁ ଗୋପୀବଲ୍ଲଭପୁରକୁ ଆଣି ସେଠାରେ ଯୁଗଳବିଗ୍ରହଙ୍କର ଉପାସନା କଲେ (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯କ, ପୃ.୪୩୨-୩୩; ଦେବଗୋସ୍ୱାମୀ, ୧୩୯୭, ପୃ.୭୮) । ଏହା ହିଁ ଓଡିଆ ଭାଷାଭାଷୀ ଅଞ୍ଚଳର ଉତ୍ତର ସୀମାନ୍ତରେ ପ୍ରଥମ ଯୁଗଳବିଗ୍ରହ ଉପାସନା ।

କ୍ରମେ ତାହା ପରିବ୍ୟାପ୍ତ ହେବାକୁ ଲାଗିଲା । ମୟୂରଭଞ୍ଜର ରାଜା ବୈଦ୍ୟନାଥ ଭଞ୍ଜ ଓ ତାଙ୍କର ଦୁଇ ଭାଇ ରସିକାନନ୍ଦଙ୍କଦ୍ୱାରା ବୈଷ୍ଣବ ଦୀକ୍ଷାରେ ଦୀକ୍ଷିତ ହୋଇ ତାଙ୍କ ରାଜଧାନୀ ବାରିପଦାରେ ରାଧା ବିଗ୍ରହ ପ୍ରସ୍ତୁତ କରାଇ ସେଇ ବିଗ୍ରହଙ୍କ ସହ ଗୋପୀବଲ୍ଲଭପୁରରେ ଥିବା ଅନ୍ୟତମ କୃଷ୍ଣ ବିଗ୍ରହ ଗୋବିନ୍ଦଙ୍କ ବିବାହ ପ୍ରସ୍ତାବ ଆଣି ଗୋପୀବଲ୍ଲଭପୁର ଆସିଲେ । ବିବାହର ଦିନ ଧାର୍ଯ୍ୟ ହେଲା । କଥିତ ଅଛି ବର ବେଶରେ ଗୋବିନ୍ଦଙ୍କୁ ଚଉଦୋଳାରେ ଆଲୋକସଜ୍ଜା ଓ ବାଣରୋଷଣୀ ସହ ଶୋଭାଯାତ୍ରାରେ ବାରିପଦା ନିଆଯାଉଥିବା ସମୟରେ ଠିକ ଅର୍ଦ୍ଧପଥ ଖଡିଆଶୋଳ ଗ୍ରାମରେ ଚଉଦୋଳା ବସିଗଲା ଓ ଆଉ ଉଠିଲା ନାହିଁ । ଉଭୟ ଭଞ୍ଜରାଜା ଓ ରସିକାନନ୍ଦଙ୍କୁ ଗୋବିନ୍ଦଙ୍କ ସ୍ୱପ୍ନାଦେଶ ହେଲା ଯେ ବିବାହ ସେଇ ସ୍ଥାନରେ ହିଁ ହେବ । ଫଳରେ କନ୍ୟା ରାଧା ବିଗ୍ରହଙ୍କୁ ସସମ୍ମାନେ ଖଡିଆଶୋଳ ଅଣାଗଲା ଓ ସେଠାରେ ହିଁ ବିବାହ କର୍ମ ସମ୍ପାଦନ କରାଗଲା । (ଅଲୌକିକତାକୁ ବାଦ ଦେଲେ କୌଣସି କାରଣରୁ ଗୋପୀବଲ୍ଲଭପୁର ଓ ଭଞ୍ଜ ରାଜଧାନୀ ବାରିପଦାର ଠିକ ମଧ୍ୟ ସ୍ଥଳରେ ଅବସ୍ଥିତ ଖଡିଆଶୋଳ ଗ୍ରାମରେ ହିଁ ରାଧା-ଗୋବିନ୍ଦ ଯୁଗଳବିଗ୍ରହଙ୍କର ବିବାହ କର୍ମ ସମ୍ପାଦିତ ହୋଇଥିଲା ।) ତା ପରେ ଗୋବିନ୍ଦ ଓ ରାଧା ବିଗ୍ରହଙ୍କୁ ଗୋପୀବଲ୍ଲଭପୁର ନିଆଗଲା । କନ୍ୟା ଶ୍ରୀରାଧାଙ୍କୁ ସେଇ ଖଡିଆଶୋଳ (ସହ ଅନ୍ୟାନ୍ୟ କେତେକ) ଗ୍ରାମ ଭଞ୍ଜ ରାଜା ଯୌତୁକ ରୂପେ ଗୋପୀବଲ୍ଲଭପୁର ମଠକୁ ଦେଇଥିବାର କୁହାଯାଏ (ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯କ, ପୃ,୪୩୩; ଦେବଗୋସ୍ୱାମୀ, ୧୯୮୯, ପୃ.୫୧-୫୨ ଓ ୧୩୯୭ ସାଲ୍, ପୃ.୯୨-୯୩ । ଏ ବିବାହ ୧୬୨୬ ଖ୍ରୀଷ୍ଟାବ୍ଦରେ ହୋଇଥିବା ଅନୁମିତ ହୋଇଛି । ଶ୍ୟାମାନନ୍ଦ ଓ ରସିକାନନ୍ଦ ଆଉ ଅନେକ ସ୍ଥାନରେ ମଧ୍ୟ ଯୁଗଳଉପାସନାର ସୂତ୍ରପାତ କରାଇଥିଲେ ।

ଏଠାରେ ଉଲ୍ଲେଖନୀୟ ଯେ ପରବର୍ତ୍ତୀ କାଳରେ ଗୌଡୀୟ ବୈଷ୍ଣବମାନେ ରାଧାଙ୍କୁ କେନ୍ଦ୍ର କରି ସ୍ୱକୀୟାବାଦୀ ଓ ପରକୀୟାବାଦୀ, ଏହିପରି ଦୁଇଗୋଟି ଗୋଷ୍ଠୀରେ ବିଭକ୍ତ ହୋଇଥିଲେ । ରସିକାନନ୍ଦ ରାଧା ଓ କୃଷ୍ଣ ବିଗ୍ରହଙ୍କ ମଧ୍ୟରେ ଏହିପରି ବିବାହର ଆୟୋଜନ କରାଇଥିବାରୁ ସେ ସ୍ୱକୀୟାବାଦୀ ଥିବା ଜଣାଯାଏ । ବୃନ୍ଦାବନର ଗୋସ୍ୱାମୀମାନେ, ବିଶେଷ ଭାବରେ ଜୀବ ଗୋସ୍ୱାମୀ, ପରକୀୟାବାଦୀ ଥିଲେ ବୋଲି କେତେକ ବିଶ୍ୱାସ କରୁଥିବା ସମୟରେ ସେମାନଙ୍କର କେତେକ କୃତିର ବିଶ୍ଳେଷଣ ପୂର୍ବକ ସେମାନେ ସ୍ୱକୀୟାବାଦୀ ଥିଲେ ବୋଲି ସୁଶୀଲ କୁମାର ଦେ' ସିଦ୍ଧାନ୍ତ କରିଛନ୍ତି (ଦେ' ୧୯୬୧, ପୃ.୩୪୮, ୩୪୯-୫୦, ପାଦଟୀକା) । ଅବଶ୍ୟ ପରବର୍ତ୍ତୀ କାଳରେ କେତେକ ବୈଷ୍ଣବ ଗ୍ରନ୍ଥରେ ସେମାନଙ୍କୁ ପରକୀୟାବାଦୀ ବୋଲି ପ୍ରତିପନ୍ନ କରିବାର ପ୍ରଚେଷ୍ଟା ବି ହୋଇଛି (ତତ୍ରୈବ) । ଅବଶ୍ୟ 'କାବ୍ୟପ୍ରକାଶ'ରୁ "ଯଃ କୌମାରହରଃ..." ଶ୍ଳୋକକୁ ବାରମ୍ବାର ଉଦ୍ଧାର କରିଥିବା (ଯଥା, ଚୈ. ଚ, ମଧ୍ୟ,୧/୫୨ତମ ପଦ ପରେ, ମଧ୍ୟ ୧୩/୧୧୫ଦଶ ପଦ ପରେ ଓ ଅନ୍ତ୍ୟ ୧/୭) ତଥା "ପରକୀୟା ଭାବେ ଅତି ରସେର ଉଲ୍ଲାସ ।" ବୋଲି ମତ ବ୍ୟକ୍ତ କରିଥିବା (ଚୈ. ଚ. ଆଦି, ୪/୪୨) ବୃନ୍ଦାବନବାସୀ 'ଚୈତନ୍ୟ ଚରିତାମୃତ'ର ପ୍ରଣେତା କୃଷ୍ଣଦାସ କବିରାଜ ନିଶ୍ଚିତ ଭାବରେ ପରକୀୟାବାଦୀ ଥିଲେ । ଏପରି କି, ରସିକାନନ୍ଦଙ୍କ ଗୁରୁ ଶ୍ୟାମାନନ୍ଦ ମଧ୍ୟ ପରକୀୟାବାଦୀ ଥିଲେ ବୋଲି ସୁଶୀଳ କୁମାର ଦେ' ମତ ଦିଅନ୍ତି (ଦେ' ୧୯୬୧, ପୃ.୩୫୦, ପାଦଟୀକା) । କିନ୍ତୁ ତାଙ୍କ ଶିଷ୍ୟ ରସିକାନନ୍ଦଙ୍କଦ୍ୱାରା ରାଧା-କୃଷ୍ଣ ଯୁଗଳବିଗ୍ରହଙ୍କର ବିବାହ ସମ୍ପାଦନ ପଛରେ ତାଙ୍କର ସମ୍ମତି ନିଶ୍ଚୟ ଥିଲା । କେବଳ ସେତିକି ନୁହେଁ, କେଶିଆଡୀରେ ରସିକାନନ୍ଦଙ୍କ ସହଯୋଗୀତାରେ ସେ ନିଜ କୁଳବିଗ୍ରହ ଶ୍ୟାମରାୟ ଜୀଉଙ୍କ ସହ ରାଧା ବିଗ୍ରହଙ୍କର ବିବାହ କରାଇ ସେଠାରେ ଯୁଗଳଉପାସନାର ବ୍ୟବସ୍ଥା କରାଇଥିଲେ (ଦେବଗୋସ୍ୱାମୀ, ୧୯୮୯, ପୃ.୪୦) ତେଣୁ ସେ ସ୍ୱକୀୟାବାଦୀ ଥିଲେ ।

ଏହା ବ୍ୟତୀତ ମୁସଲମାନ୍ (କଳାପାହଡ) ଆକ୍ରମଣ ଭୟରେ ରେମୁଣାର କ୍ଷୀରଚୋରା ଗୋପୀନାଥଙ୍କୁ ତାଙ୍କ ମନ୍ଦିରରୁ ଅପସାରିତ କରାଯାଇଥିଲା ଓ ଗୋପନରେ ରଖାଯାଇଥିଲା । ରସିକାନନ୍ଦ ସ୍ୱପ୍ନାଦେଶରେ ସେ ଚଣ୍ଡୀ ରୂପରେ ସିନ୍ଦୂର ପରିଶୋଭିତ ହୋଇ ଅନ୍ୟତ୍ର ପୂଜିତ ହେଉଥିବା ଜାଣି ତାଙ୍କୁ ଆବିଷ୍କାର ଓ ସେ ସ୍ଥାନରୁ ଉଦ୍ଧାର କରି ପୁନଶ୍ଚ ରେମୁଣାର ମନ୍ଦିରରେ ପୁନଃପ୍ରତିଷ୍ଠିତ କରାଇଥିଲେ ବୋଲି ବି କୁହାଯାଏ (ଦ୍ର: ଦେବଗୋସ୍ୱାମୀ, ୧୯୮୯, ପୃ.୩୮) । ତା ଛଡା, ଓଡିଶାର ପୂର୍ବାଞ୍ଚଳରେ ଉତ୍ତର ସୀମାନ୍ତରୁ ଆରମ୍ଭ କରି

ଦକ୍ଷିଣ ସୀମାନ୍ତ ଯାଏ (ଓ ଏପରିକି ଉଭୟ ଦିଗରେ ସେ ସୀମାନ୍ତଦ୍ୱୟକୁ ସାମାନ୍ୟ ଅତିକ୍ରମ କରି) ଫାଲ୍ଗୁନ ପୂର୍ଣ୍ଣିମାର ପୂର୍ବ ପାଞ୍ଚ ଦିନ ଓ ପର ପାଞ୍ଚ ଦିନ (ଅର୍ଥାତ୍ ପଞ୍ଚୁଦୋଳ) ବହୁ ସ୍ଥାନରେ ମେଳଣ ବା ମେଲଣ ଉତ୍ସବ ଅନୁଷ୍ଠିତ ହୁଏ । ଏହି ମେଲଣ ଉତ୍ସବର ସୃଷ୍ଟି ୧୮ଶ ଶତକର ଶେଷ ବା ୧୯ଶ ଶତକର ଆରମ୍ଭରେ ହୋଇଥିଲା ବୋଲି ମନେହୁଏ । କାରଣ ତା ପୂର୍ବରୁ ଏପରି ମେଲଣ ଉତ୍ସବ ଅନୁଷ୍ଠିତ ହେଉଥିବାର କୌଣସି ତଥ୍ୟ ଅନ୍ତତଃ ଏ ଲେଖକର ଦୃଷ୍ଟିକୁ ଆସିନାହିଁ । ତେବେ ୧୭ଶ ଶତକରେ ରସିକାନନ୍ଦ ଓ ତାଙ୍କ ଗୁରୁ ଶ୍ୟାମାନନ୍ଦ ଦୋଳ ଉତ୍ସବ ପାଳନ କରୁଥିବାର ଜଣାଯାଏ । ଉଦାହରଣ ସ୍ୱରୂପ ଶ୍ୟାମାନନ୍ଦ ଓ ରସିକାନନ୍ଦ ୧୬୧୬ ଖ୍ରୀଷ୍ଟାବ୍ଦର ବୈଶାଖ ପୂର୍ଣ୍ଣିମାରେ କଂସାବତୀ ନଦୀର ଦକ୍ଷିଣ ତୀରରେ (ଏହି ସ୍ଥାନରେ ନଦୀର ଉତ୍ତର ତୀରରେ ପୁରୁଣା ମେଦିନୀପୁର ସହର ଅବସ୍ଥିତ ) ଅବସ୍ଥିତ ବଡକୋଷା ଗ୍ରାମରେ ପଞ୍ଚ ଦିବସ ବ୍ୟାପୀ ଦୋଳଉତ୍ସବ ପାଳନ କରିଥିଲେ (ଦେବଗୋସ୍ୱାମୀ, ୧୯୮୯, ପୃ.୩୧) । ଅନୁମିତ ହୁଏ ଯେ ସେମାନଙ୍କର ଏପରି ମେଲଣ ଉତ୍ସବ ପାଳନ ହିଁ ଓଡିଶାର ପୂର୍ବାଞ୍ଚଳରେ ମେଲଣ ଉତ୍ସବ ସୃଷ୍ଟି ମୂଳରେ ରହିଛି । ତେବେ ଏହା ନିଛକ ଅନୁମାନ ମାତ୍ର, କାରଣ ଏପରି ଅନୁମାନ ପଛରେ କୌଣସି ବଳିଷ୍ଠ ତଥ୍ୟ ଆବିଷ୍କୃତ ହୋଇପାରିନାହିଁ ଓ ତାହା ଅଧିକ ଗବେଷଣାସାପେକ୍ଷ (ଦୋଳମେଲଣ ସମ୍ପର୍କରେ କିଛି ବିବରଣପାଇଁ ଦ୍ର: Stietencron, Heinrich von, 2001, pp.363-401.)

## (୧୦)

ମୋଟ ଉପରେ ଉପର୍ଯୁକ୍ତ ଆଲୋଚନା ଭିତ୍ତିରେ ନିମ୍ନ ସିଦ୍ଧାନ୍ତ କରାଯାଇପାରେ :

(କ) ରାଧାକୃଷ୍ଣ ଯୁଗଳଉପାସନାର ଇତିହାସ ସଙ୍କଳନ ପ୍ରସଙ୍ଗରେ ପୂର୍ବୋକ୍ତ ରାଧାମାଧବ ବିଗ୍ରହ ଜୟଦେବଙ୍କଦ୍ୱାରା ଓ ବର୍ତ୍ତମାନ ଜୟଦେବ କେନ୍ଦୁଳୀରେ ପୂଜିତ ରାଧାବିନୋଦ ବିଗ୍ରହ ବଙ୍ଗର ସେନ ରାଜାମାନଙ୍କଦ୍ୱାରା ପୂଜିତ ହେଉଥିଲା ବୋଲି ଥିବା ଜନଶ୍ରୁତି ଦ୍ୱୟର ମୂଳ ଅନୁସନ୍ଧାନ କରାଯିବା ଉଚିତ୍ ।

(ଖ) ସେଇ ଜନଶ୍ରୁତି ଦୁଇଟିକୁ ବାଦ ଦେଲେ ରାଧାକୃଷ୍ଣ ଯୁଗଳ ଉପାସନାର ସୂତ୍ରପାତ ଯେତେଦୂର ସମ୍ଭବ ପ୍ରଥମେ ବୃନ୍ଦାବନରେ ୧୬ଶ ଶତକର ମଧ୍ୟ ଭାଗରେ ହୋଇଥିଲା ଓ ତାହାର ବହୁପରେ ୧୭ଶ ଶତକର ଆଦ୍ୟ ଭାଗରେ ରସିକାନନ୍ଦଙ୍କଦ୍ୱାରା ଓଡ଼ିଶାର ଉତ୍ତର ସୀମାନ୍ତ ଅଞ୍ଚଳରେ ଏହି ଯୁଗଳ ଉପାସନାର ପ୍ରବର୍ତ୍ତନ ହୋଇଥିଲା । ଯେତେଦୂର ଜଣାଯାଏ ଓଡ଼ିଶାର କେନ୍ଦ୍ରାଞ୍ଚଳକୁ ତାହାର ବ୍ୟାପ୍ତି ହେଲା ଆହୁରି ପରେ ।

# ପରିଶିଷ୍ଟ

ବର୍ତ୍ତମାନ ସତ୍ୟବାଦୀ/ସାକ୍ଷୀଗୋପାଳ ଠାରେ ପୂଜିତ ହେଉଥିବା ସାକ୍ଷୀଗୋପୀନାଥ ବା ଗୋପାଳ ବିଗ୍ରହକୁ ସୂର୍ଯ୍ୟବଂଶୀ ଗଜପତି ପୁରୁଷୋତ୍ତମ ଦେବ (୧୪୬୭-୧୪୯୭) ବିଦ୍ୟାନଗରରୁ ନେଇ ଆସିଥିଲେ ବୋଲି କୁହାଯାଏ । ଏ ପ୍ରଥମେ କଟକରେ ଥିଲେ ଓ ୧୬ଶ ଶତକର ପ୍ରାରମ୍ଭରେ ଚୈତନ୍ୟ ଏ ବିଗ୍ରହକୁ କଟକରେ ଦର୍ଶନ କରିଥିଲେ । ପରେ ଏ ଖୋରଧା, ଜଟଣିପାଖ ରଥୀପୁର, ଚିଲିକା କୂଳସ୍ଥ କନ୍ତଳବାଇ ଗ୍ରାମ ଓ ପୁରୀକୁ ଏଇପରି ବାରମ୍ବାର ସ୍ଥାନାନ୍ତରିତ ହୋଇ ଶେଷରେ ସତ୍ୟବାଦୀକୁ ଆସିଲେ ୧୮୪୦ ବେଳକୁ । ଏ ବିଗ୍ରହ ପାଇଁ ନାଗପୁର ଭୌଁସଲାଙ୍କ ଗୁରୁ ବାବା ବ୍ରହ୍ମଚାରୀ ଓ ତାଙ୍କ ଶିଷ୍ୟ ଲକ୍ଷ୍ମୀନାରାୟଣ ବ୍ରହ୍ମଚାରୀଙ୍କ ପ୍ରଚେଷ୍ଟାରେ ସତ୍ୟବାଦୀରେ ବର୍ତ୍ତମାନର ମନ୍ଦିର ନିର୍ମାଣ କରାଯାଇ ୧୮୬୨ ବେଳକୁ ତାହାର ପ୍ରତିଷ୍ଠା କରାଗଲା (ଦ୍ର : ଦାସ, ପଣ୍ଡିତ ନୀଳକଣ୍ଠ, ୧୯୬୭ ପୃ. ୨୧୦-୨୨୦; ଦାସ, ବିକ୍ରମ, ୧୯୮୫, ପୃ. ୫୨-୫୩) । ସେ ପର୍ଯ୍ୟନ୍ତ ଏ ବିଗ୍ରହ ସହ ରାଧା ବିଗ୍ରହ ଯୁକ୍ତ ହୋଇ ନ ଥିଲା । (ଦାସ, ପଣ୍ଡିତ ନୀଳକଣ୍ଠ, ୧୯୬୭, ପୃ. ୨୨୦) । ଏହାର ଅଳ୍ପଦିନ ପରେ ଏ ବିଗ୍ରହଙ୍କ ସହ ଛଣା ପିତଳରେ (ଓ ସୁନାମିଶା ପିତଳରେ ତିଆରି ଚକ୍ ଚକ୍ ମୁହଁ ସହ) ଓ ଏକ ପୁରା ଓଡ଼ିଆଣୀ ପରି ବ୍ରୀଡ଼ାରସାଣିତ ଭଙ୍ଗୀରେ ଠିଆ ହୋଇଥିବା ରାଧା ବିଗ୍ରହ ଯୁକ୍ତ ହେଲା ରଣପୁର ରାଜାଙ୍କ ଦ୍ୱାରା (ତତ୍ରୈବ, ପୃ.୨୧୦-୨୨୦) ।

ଏଇ ରାଧା ବିଗ୍ରହ ସମ୍ପର୍କରେ ନିମ୍ନ ଜନଶ୍ରୁତି ଏବେ ପ୍ରଚଳିତ ! ଗୋପାଳ ବିଗ୍ରହଙ୍କ ସେବାପୂଜା ପାଇଁ ସେବକମାନଙ୍କୁ ଅଣାଯାଇ ସେଠାରେ ସେବକ ସାଇରେ ରଖାଯାଇଥିଲା । ସେମାନଙ୍କ ମଧ୍ୟରୁ ଜଣେ ସେବକ ବେଲ ମହାପାତ୍ରଙ୍କର ରାଧା ଅଂଶରେ ଜନ୍ମ ହୋଇଥିବା ଲକ୍ଷ୍ମୀ ନାମକ ଏକ ଅବିବାହିତ/ବାଳୁତ ବିଧବା ଝିଅ ଥିଲା । ଗୋପାଳ ରାତିରେ ସେ ସେବକଙ୍କୁ ସ୍ୱପ୍ନଯୋଗେ ତାଙ୍କ ଝିଅ ଲକ୍ଷ୍ମୀର ସ୍ଖଳନ ପାଇଁ ନିଜେ ଦାୟୀ ବୋଲି ପ୍ରକାଶ କଲେ । ପୁଣି ତାଙ୍କ ପାଖରେ ରାଧା ବିଗ୍ରହ ନ ଥିବାରୁ ତାଙ୍କର ଏପରି ସ୍ଖଳନ ହୋଇଛି ବୋଲି ମାନିଲେ । କେବଳ ସେତିକି ନୁହେଁ ଏହାକୁ ସର୍ବସମକ୍ଷରେ ପ୍ରମାଣିତ କରି ଲକ୍ଷ୍ମୀ ଓ ତା'ର ପିତାଙ୍କୁ ନିନ୍ଦା, ସମାଲୋଚନା ତଥା ସାମାଜିକ ନିଗ୍ରହରୁ ରକ୍ଷା କରିବାପାଇଁ ରାତିରେ ଲକ୍ଷ୍ମୀର ଶେଯରେ ନିଜର ବଂଶୀକୁ ପକାଇ ଦେଇ ଆସିଲେ । ସକାଳୁ ମନ୍ଦିରରୁ ବଂଶୀ ଚୋରୀ ଯାଇଛି ବୋଲି ଚହଳ ପଡ଼ିଲା ଓ ଖୋଜାଗଲା । ବଂଶୀ ଲକ୍ଷ୍ମୀର ଶେଯରୁ ମିଳିବାରୁ ଲକ୍ଷ୍ମୀସହ ରାଧା-ବିଗ୍ରହ-ହୀନ-ଗୋପାଳଙ୍କ ପ୍ରଣୟ ବ୍ୟାପାର ସମସ୍ତେ ଜାଣିଲେ । ଲକ୍ଷ୍ମୀ ଓ ତା'ର ବାପା, ନିନ୍ଦା, ସମାଲୋଚନା ତଥା ସାମାଜିକ

ନିଗ୍ରହରୁ ରକ୍ଷା ପାଇଲେ । କେବଳ ସେତିକି ନୁହେଁ ରାଧା ବିରହ ବିଧୁର ଏକକ ଗୋପାଳ ବିଗ୍ରହ ଏପରି କାମ କରିବା ପାଇଁ ବାଧ୍ୟ ହୋଇଥିବାରୁ ଛଣା ପିତଳର ରାଧା ମୂର୍ତ୍ତିଟି ଗଢ଼ାଗଲା । ଏହି ମୂର୍ତ୍ତି ଗଢ଼ା ଆରମ୍ଭରୁ ଲକ୍ଷ୍ମୀକୁ ଜର ହୋଇ କ୍ରମେ ବଢ଼ିଲା । ମୂର୍ତ୍ତିଟି ସିଂହାସନରେ ପ୍ରତିଷ୍ଠା ହେବାବେଳେ ଲକ୍ଷ୍ମୀର ମୃତ୍ୟୁ ହେଲା ଓ ଲୋକେ ଦେଖିଛନ୍ତି ଯେ ଲକ୍ଷ୍ମୀର ଶରୀରରୁ ଏକ ଆଲୋକ ରେଖା ବାହାରି ଶୂନ୍ୟରେ ଯାଇ ସିଂହାସନରେ ପ୍ରତିଷ୍ଠିତ ହେଉଥିବା ରାଧା-ବିଗ୍ରହ ସହ ମିଶିଗଲା (ତତ୍ରୈବ) ।

ପ୍ରଥମେ ମନେ ହୋଇପାରେ ଯେ ଗର୍ଭବତୀ ହୋଇଥିବା କୌଣସି ଏକ କୁମାରୀ ବା ବିଧବା ସେବକ ପରିବାରର ଝିଅକୁ ଓ ତା'ର ଆତ୍ମୀୟମାନଙ୍କୁ ନିନ୍ଦା, ଅପମାନ ଓ ସାମାଜିକ ନିଗ୍ରହରୁ ରକ୍ଷା କରିବାପାଇଁ ଏ ଜନଶ୍ରୁତିର ସୃଷ୍ଟି କରାଯାଇଥିଲା ବା ଏପରି ଜନଶ୍ରୁତି ସୃଷ୍ଟି ହେବା ପରି କେତେକ ଘଟଣା ଘଟାଇ ଦିଆଯାଇଥିଲା । ତେବେ ୧୮୬୨ ପୂର୍ବରୁ ଏ ଜନଶ୍ରୁତି ସୃଷ୍ଟିର ପ୍ରଶ୍ନ ଉଠି ନ ପାରେ । କିନ୍ତୁ ବୃନ୍ଦାବନରୁ ସୱାଇ ଜୟସିଂହଙ୍କଦ୍ୱାରା ଆନୀତ ଓ ଏବେ ଜୟପୁରରେ ପୂଜିତ ହେଉଥିବା ଗୋବିନ୍ଦଙ୍କ ସମ୍ପର୍କରେ ଏକ ଅନୁରୂପ ଜନଶ୍ରୁତି ୧୮୬୨ ପୂର୍ବରୁ ପ୍ରଚଳିତ ଥିବାର ଜଣାଯାଏ । 'ରମ୍ୟାଣି ବୀକ୍ଷ୍ୟ' ପୁସ୍ତକର ୪ର୍ଥ ରାଜସ୍ଥାନ ପର୍ବରେ ଲେଖକ ସୁବୋଧ କୁମାର ଚକ୍ରବର୍ତ୍ତୀ ଲେଖିଛନ୍ତି – "ଏକଶୋ ବଚ୍ଛର ଆଗେ ଯଦୁନାଥ ସର୍ବାଧିକାରୀ ମହାଶୟ ଏସେଛିଲେନ୍ ଜୟପୁର ଭ୍ରମଣେ, ପଦବ୍ରଜେ ଓ ଗରୁର ଗାଡ଼ିତେ । ତିନି ଯେ ରୋଜନାମଚା ଲେଖିଛିଲେନ, ବିଶ୍ୱକୋଷେର ସମ୍ପାଦକ ନଗେନ୍ଦ୍ରନାଥ ବସୁ ମହାଶୟ ତା ପ୍ରକାଶ କରେଛେନ୍ । ...... ଏକଟି ମଜାର କାହିନୀ ପଡ଼ିଛେ ଏଇ ବହିୟେ । ଗୋବିନ୍ଦଜୀ'ର ମନ୍ଦିରେ ନାକି ରାଜକନ୍ୟାର ମୂର୍ତ୍ତି ଆଛେ ପାନେର ବାଟା ହାତେ । ଏଇ ରାଜକନ୍ୟା ଜୟସିଂହେର କନ୍ୟା । ମନ୍ଦିରେର ଭିତର ତାର ମୂର୍ତ୍ତି ସ୍ଥାପନେର ଏକ ଅଲୌକିକ କାହିନୀ ଆଛେ । ରାଜକନ୍ୟାର ଜନ୍ମ ଲକ୍ଷ୍ମୀର ଅଂଶେ । କାଜେଇ ତାର ନାରାୟଣେର ପ୍ରୟୋଜନ । ... ... ତାର ବୟସ ହଲ ଷୋଳ, କିନ୍ତୁ ବିବାହେ ସମ୍ମତି ନେଇ । ଜାନା ଗେଲ, ରାତେ ଗୋବିନ୍ଦଜୀ ଥାକେନ ରାଜକନ୍ୟାର କାଛେ । ସକାଲେ ତାର ଶଯ୍ୟାୟ କଖନଓ ନୂପର କଖନଓ ବା ଅଲଙ୍କାର ଖୁଜେ ପାଓୟା ଜାୟ । ଏକ ଦିନ ରାଜା ତାଦେର ଏକ ସଙ୍ଗେ ନିଦ୍ରିତ ଦେଖେ ନିଜେର ଗାୟେର ଚାଦରେ ତାଁ'ଦେର୍ ଢେ଼କେ ଦେନ । ସକାଲେ ଏଇ ଚାଦର ଦେଖେ ରାଜକନ୍ୟା ଗୋବିନ୍ଦଜୀକେ ବଲଲେନ ଯେ, ସବଇ ଯଖନ ପ୍ରକାଶ ହୟେ ଗେଲ ତଖନ ଆର ଏ ଦେହ ରଖା ଉଚିତ ନୟ । କେଉ ବଲେନ, ରଜାଇ କନ୍ୟାକେ ବଲେଛିଲେନ ସାବଧାନ ହତେ । ଆର ରାଜକନ୍ୟା ଗୋବିନ୍ଦଜୀର କାଛେ

କଳଙ୍କ ମୋଚନେର ଆବେଦନ ଜାନିୟେଛିଲେନ । ଗୋବିନ୍ଦଜୀ ତାକେ ଶ୍ରୀଅଙ୍ଗେ ଲିପ୍ତ କରେ ଉଦ୍ଧାର କରେନ ।" (ଚକ୍ରବର୍ତ୍ତୀ ୧୯୬୮, ପୃ. ୩୮-୩୯୬) ।

ଦେଖାଯାଉଛି ଯେ ଉଭୟ ଜନଶ୍ରୁତିରେ ବହୁ ସାମଞ୍ଜସ୍ୟ ଅଛି । ପୁଣି ରାଜସ୍ଥାନ (ଜୟପୁର)ରେ ପ୍ରଚଳିତ ଜନଶ୍ରୁତି ଓଡ଼ିଶାର ସାକ୍ଷୀଗୋପାଳ/ସତ୍ୟବାଦୀରେ ପ୍ରଚଳିତ ଜନଶ୍ରୁତିଠାରୁ ପ୍ରାଚୀନ ବା ପୁରୁଣା । ତେଣୁ ଜୟପୁରର ଜନଶ୍ରୁତିକୁ ସାମାନ୍ୟ ପରିବର୍ତ୍ତିତ ଆକାରରେ ଓଡ଼ିଶାରେ ସତ୍ୟବାଦୀରେ ଚଳାଇ ଦିଆଯାଇଛି ବୋଲି ମନେହୁଏ । ସତ୍ୟବାଦୀ ମନ୍ଦିରରେ ଗୋପାଳଙ୍କ ପାର୍ଶ୍ୱରେ ରାଧାମୂର୍ତ୍ତିର ପ୍ରତିଷ୍ଠା ଏଥିପାଇଁ ଯୋଗାଇ ଥିଲା ସୁଯୋଗ ଓ ତାହାହିଁ ଥିଲା ଜନଶ୍ରୁତି ପ୍ରଚଳନର କାରଣ । ଶତାବ୍ଦୀ ଶତାବ୍ଦୀ ଧରି ଏକକ ରହି ଆସିଥିବା ଐତିହାସିକ ଗୋପାଳ ବିଗ୍ରହ ପାର୍ଶ୍ୱରେ ରାଧା ବିଗ୍ରହ ସ୍ଥାପନ କରିବାର ଉଦ୍ୟମ ବିରୁଦ୍ଧରେ ପ୍ରତିବାଦର ସ୍ୱରକୁ ନିରବ କରିଦେବାପାଇଁ ହୁଏତ ସୁଦୂର ରାଜସ୍ଥାନରେ ପ୍ରଚଳିତ ଜନଶ୍ରୁତିକୁ ସାମାନ୍ୟ ପରିବର୍ତ୍ତନ କରି ସତ୍ୟବାଦୀରେ ପ୍ରଚଳନ କରାଯାଇଥିଲା । ଅବଶ୍ୟ କୌଣସି ସେବକର କୁମାରୀ ବା ବିଧବା କନ୍ୟାର କଳଙ୍କ ମୋଚନ ମଧ୍ୟ ଏହାର ଆଉ ଏକ କାରଣ ହୋଇ ପାରିଥାଏ । ମୋଟଉପରେ ଜନଶ୍ରୁତିଟି ଯେତେଦୂର ସମ୍ଭବ ରାଜସ୍ଥାନରୁ ଓଡ଼ିଶାକୁ ଆମଦାନୀ କରାଯାଇଛି । ତେବେ ଭାରତର ଅନ୍ୟତ୍ର ମଧ୍ୟ ଏପରି ଜନଶ୍ରୁତି ପ୍ରଚଳିତ ଥାଇପାରେ ଓ ସେଠାରୁ ଓଡ଼ିଶାକୁ ଆସିଥାଇପାରେ ।

## ଉପାଦାନ ପଞ୍ଜିକା

**(କ) ପ୍ରାଥମିକ ଉପାଦାନ**

ଚୈତନ୍ୟଚରିତାମୃତ - କୃଷ୍ଣଦାସ କବିରାଜ ।

ଦାର୍ଢ୍ୟତାଭକ୍ତି – ରାମ ଦାସ ।

ଭକ୍ତିରତ୍ନାକର - ନରହରି ଚକ୍ରବର୍ତ୍ତୀ ଓରଫ ଘନଶ୍ୟାମ ଦାସ (ସଂପାଦନା, ନବୀନକୃଷ୍ଣ ବିଦ୍ୟାଳଙ୍କାର, ୧୯୪୦)

ରସିକମଙ୍ଗଳ - ଗୋପୀଜନବଲ୍ଲଭ ଦାସ ।

**(ଖ) ଅନ୍ୟାନ୍ୟ ଉପାଦାନ**

ଆଚାର୍ଯ୍ୟ, ପରମାନନ୍ଦ, ୧୯୬୮, On the Worship of Images of Radha-Krisna. In: Souvenir on Sri Jayadev. Bhubaneswar.

ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯କ. On the Worship of Images of Radha-Krisna. In:Studies in Orissan History, Archaeology and Archives. Cuttack, Cuttack Student's Store.

ଆଚାର୍ଯ୍ୟ, ପରମାନନ୍ଦ, ୧୯୬୯ଖ. ରାଧାକୃଷ୍ଣ ମୂର୍ତ୍ତି ପୂଜାର ଇତିହାସ (ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ) । ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ ।

ଆଚାର୍ଯ୍ୟ, ବୃନ୍ଦାବନଚନ୍ଦ୍ର, ୧୯୭୮ (ଅପ୍ରକାଶିତ), ଓଡ଼ିଶାରେ କୃଷ୍ଣ ଉପାସନାର ପରମ୍ପରା ଓ ଓଡ଼ିଆ ସାହିତ୍ୟରେ ତାହାର ପ୍ରଭାବ । (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର D.Litt. ଉପାଧି ପାଇଁ ପ୍ରସ୍ତୁତ ସନ୍ଦର୍ଭ) ।

(କାବ୍ୟରତ୍ନ) କିଶୋରୀ ମୋହନ, ୧୯୮୭. ଗୁପ୍ତ ବୃନ୍ଦାବନ ଶ୍ରୀ ଶ୍ରୀ କ୍ଷୀରଚୋରା ଗୋପୀନାଥ ଧାମ । (ଅନୁବାଦ- ଯତିଶେଖର ଦାସ) କଟକ, ଗୋପବନ୍ଧୁ ସାହିତ୍ୟ ମନ୍ଦିର ।

ଚକ୍ରବର୍ତ୍ତୀ, ରମାକାନ୍ତ, ୧୮୮୫, Vainsnavism in Bengal (1486 - 1900). Calcutta, Sanskrit Pustak Bhandar..

ଚକ୍ରବର୍ତ୍ତୀ, ସୁବୋଧ କୁମାର, ୧୩୬୫ (୧ମ ସଂସ୍କାରଣ), ୧୩୭୪ (୧୯୬୮) ରାଜସ୍ଥାନ ପର୍ବ । ରମ୍ୟାଣିବୀକ୍ଷ୍ୟ, ୪ର୍ଥ ।

ଦାସ, ପଣ୍ଡିତ ନୀଳକଂଠ, ୧୯୫୩, ଓଡିଆ ସାହିତ୍ୟର କ୍ରମପରିଣାମ, ୨ୟ ଭାଗ । କଟକ, ନବଭାରତ ଗ୍ରନ୍ଥାଳୟ ।

ଦାସ, ପଣ୍ଡିତ ନୀଳକଂଠ, ୧୯୬୭ ନୀଳକଣ୍ଠ ଗ୍ରନ୍ଥାବଳୀ (୩ୟ ଖଣ୍ଡ) । କଟକ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ।

ଦାସ, ବିକ୍ରମ, ୧୯୫୮, ଏ ଯୁଗର ସଂପାତି ସତ୍ୟବାଦୀ ବକୁଳ ବନ । (ସମାଜ, ବାର୍ଷିକ ସଂଖ୍ୟା, ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା)

ଦାଶ, ଗଗନେନ୍ଦ୍ର ନାଥ ୧୯୮୬, ରାଧାକୃଷ୍ଣ ଯୁଗଳ ବିଗ୍ରହ ଉପାସନାର ଇତିହାସ । ନବପତ୍ର, ୧୩/୪, ଏପ୍ରିଲ-ଜୁନ୍ ।

ଦାଶ, ଗଗନେନ୍ଦ୍ର ନାଥ ୧୯୮୭ Oriya Bhagabata by Jagannatha Das and Oppositions to it. In: Studies in the Bhagabata. Ed. K. C. Mishra, 1987, Bhubaneswar, Institute of Orissan Culture. pp.149-164.

ଦେ, ସୁଶୀଲ କୁମାର, ୧୯୬୧, The Early History of Vaisnava Faith and Movement in Bengal. Calcuuta. Firma K. L. Mukhopadhyaya.

ଦେବଗୋସ୍ୱାମୀ, ଶ୍ରୀ ଶ୍ରୀ ବ୍ରଜେନ୍ଦ୍ରନନ୍ଦନାନନ୍ଦ, ୧୯୮୯, ଅନିରୁଦ୍ଧାବତାର ଶ୍ରୀରସିକମୁରାରୀ । ଶ୍ରୀ ପାଟ ଗୋପୀବଲ୍ଲଭପୁର (ମେଦିନୀପୁର) ।

ଦେବଗୋସ୍ୱାମୀ, ଶ୍ରୀ ଶ୍ରୀ ବ୍ରଜେନ୍ଦ୍ରନନ୍ଦନାନନ୍ଦ, ୧୩୯୭ ସାଲ୍ (= ୧୯୯୦), କନକମଞ୍ଜରୀ-ଶ୍ରୀ ଶ୍ରୀ ଶ୍ୟାମାନନ୍ଦ । ଶ୍ରୀ ପାଟ ଗୋପୀବଲ୍ଲଭପୁର (ମେଦିନୀପୁର) ।

ନାଥ, ରାଧାଗୋବିନ୍ଦ, ୧୯୫୮, ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତେର ଭୂମିକା (୪ର୍ଥ ସଂସ୍କରଣ) । କଲିକତା, ସାଧନା ପ୍ରକାଶନୀ ।

ପଟ୍ଟନାୟକ, ଆଶୁତୋଷ, ୧୯୮୬, ଶ୍ରୀ ଚୈତନ୍ୟ ପ୍ରବର୍ତ୍ତିତ ନବ୍ୟବୈଷ୍ଣବ ଧର୍ମ ଓ ଓଡ଼ିଶା (ସମ୍ବାଦ ତା ୧୦ ଓ ୧୧ ଫେବୃଆରୀ, ୧୯୮୬) ।

ପଟ୍ଟନାୟକ, ଆଶୁତୋଷ, ୧୯୮୮, ଓଡିଆ ରାଧା ସାହିତ୍ୟ । ଭୁବନେଶ୍ୱର, ଆଶୁତୋଷ ପଟ୍ଟନାୟକ ।

ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର, ୧୯୮୧, History of Orissa. Cuttack, Kitabmahal.

ପ୍ରଧାନ, ନଗେନ୍ଦ୍ର ନାଥ, ୧୯୭୧, ଓଡ଼ିଆ ସାହିତ୍ୟରେ ଜୟଦେବ ।

ମହାପାତ୍ର, କେଦାରନାଥ, ୧୯୭୩, ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ । ଭୁବନେଶ୍ୱର, ଗ୍ରନ୍ଥକର୍ତ୍ତା ।

ମିତ୍ର, ଦେବପ୍ରସାଦ, ୧୩୮୮, ଶ୍ରୀଧାମ ବ୍ରଜମଣ୍ଡଳ ପରିକ୍ରମା । ଆଁଟପୁର (ହୁଗୁଳି), ଦେବପ୍ରସାଦ ମିତ୍ର ।

ମୁଖର୍ଜୀ, ପ୍ରଭାତ, ୧୯୫୩, Gajapati Kings of Orissa. Calcutta, General Trading Co.

ରଥ, ବନମାଳୀ ୧୯୮୩, A Study on Sri Krishnalilamritam. Berhampur, Banamali Rath.

ରାଜଗୁରୁ, ସତ୍ୟନାରାୟଣ, ୧୩୩୭, ଦକ୍ଷିଣ ଓଡିଶା । in: ଉତ୍କଳ ସାହିତ୍ୟ, ୩୩/୯ (ପୌଷ, ୧୩୩୭), ପୃ.୩୨୦-୨୧ ।

ରାଉତରାୟ, ସଚ୍ଚିଦାନନ୍ଦ, ୧୯୭୬ ସଚ୍ଚିରାଉତରାୟ ଗ୍ରନ୍ଥାବଳୀ (୨ୟ ଭାଗ) ।

ସୁବ୍ରମନ୍ୟମ୍ (Subramanyam R.) ୧୯୫୭ Suryavamsi Gajapatis of Orissa. Waltair, Andhra University.

ସେନ, ସୁକୁମାର ୧୯୭୦, ବାଂଲା ସାହିତ୍ୟେର ଇତିହାସ (୧ମ ଖଣ୍ଡ, ପୂର୍ବାର୍ଦ୍ଧ)

ସେନ, ସୁକୁମାର ୧୯୮୫, ଚୈତନ୍ୟବଦାନ - ୮ (ଦେଶ, ୫୨/୫୨ ଅକ୍ଟୋବର ତା ୨୬ ରିଖ)

ସେନ, ସୁକୁମାର, ୨୦୦୪, ବାଙ୍ଗାଲା ସାହିତ୍ୟେର ଇତିହାସ (ପ୍ରଥମ ଖଣ୍ଡ, ?- ଷୋଡଶ ଶତାବ୍ଦୀ), ଷଷ୍ଠ ସଂସ୍କରଣ, ୧୯୭୮, ଆନନ୍ଦ, ସପ୍ତମ ମୁଦ୍ରଣ ।

Entwistle, Alen W., 1987, Braj. Centre of Krishna Pilgrimage. Groningen, Egbert Forsten, The Netherlands.

Stietencron, Heinrich von, 2001, A Congregation of Gods:The *Dolamelana* Festival in Orissa.in : Jagannath Revisited. Studying Society, Religion and State in Orissa. Eds. H. Kulke, B. Schnepel, New Delhi, Manohar, pp.363-401.

Verdia, H. S., 1982, Religion and Social Structure in a Sacred Town : Nathdwara. New Delhi, Research Publications.

[ଏହାର ପ୍ରାଥମିକ ରୂପ 'ରାଧା-କୃଷ୍ଣ ଯୁଗଳବିଗ୍ରହ ଉପାସନାର ଇତିହାସ' ଶିରୋନାମା ତଳେ ପ୍ରଥମେ ୧୯୮୬ରେ 'ନବପତ୍ର' ୧୩/୪, ଏପ୍ରିଲ-ଜୁନ୍ ସଂଖ୍ୟାରେ ପ୍ରକାଶ ପାଇଥିଲା । ଏବେ ନୂତନ ଉପାଦାନ ସାହାଯ୍ୟରେ ଏଥିରେ ପରିବର୍ତ୍ତନ ଓ ପରିବର୍ଦ୍ଧନର ସ୍ପର୍ଶ ଦିଆଯାଇଛି ।] ।



# ପତିତପାବନ ଜଗନ୍ନାଥ
# (ଜନଶ୍ରୁତି ଓ ଇତିହାସ)

(କ)

'ରାଣୀ' ନାମରେ ପରିଚିତା, କିନ୍ତୁ ପ୍ରକୃତରେ ପୁରୀର ରାଜମାତା, ସୂର୍ଯ୍ୟମଣି ପାଟମହାଦେଈ ପୁରୀର କଲେକ୍ଟରଙ୍କ ନିକଟକୁ ୧୮୮୩ର ଜୁଲାଇ ୩୦ ତାରିଖରେ ଏକ ସ୍ମାରକପତ୍ରରେ ଲେଖିଥିଲେ:

> "As a precedent, I take the liberty to bring to your notice that one of my ancestors named Raja Ramchandra Dev, who ascended the throne in 1649 Shakabda (1725 AD) having been compelled to be associated with a daughter of the then Mahammedan Noble was not allowed to perform the services of Jagannath or to enter the Temple and as he expressed his desire to worship the idol, the Patitapaban Deb, a representative of Jagannath, was set up at Singhaduar 'Lion-gate of the temple' inorder that he (the fallen Rajah) might be able to see and worship it from the outside." (ଜଗନ୍ନାଥ ମନ୍ଦିର ପତ୍ରାବଳୀ, ୬ଷ୍ଠ ଖଣ୍ଡ, ପୃ.୧୪୩୩; ମହାନ୍ତି, ସୁରେନ୍ଦ୍ର, ୧୯୭୦, ପୃ, ୩୧୭ ଓ ୧୯୭୩, ଭୂମିକା, ପୃ.୪)।

ରାଣୀଙ୍କ ଓକିଲ ମଧୁବାବୁ (ଉତ୍କଳଗୌରବ ମଧୁସୂଦନ) ଏହି ସ୍ମାରକପତ୍ରର ଚିଠା କରିଥିଲେ ବୋଲି ଅନୁମାନ କରାଯାଏ । ରାଣୀ ସୂର୍ଯ୍ୟମଣିଙ୍କ ଏହି ସ୍ମାରକପତ୍ରର ଉପରୋକ୍ତ ଉଦ୍ଧୃତାଂଶଟିରେ ପରସ୍ପର ସହ ସମ୍ପର୍କାନ୍ୱିତ, କିନ୍ତୁ ଦୁଇଟି ସ୍ୱତନ୍ତ୍ର ବକ୍ତବ୍ୟ ରହିଅଛି:

(୧) ଖୋର୍ଦ୍ଧାରାଜା ଭୋଇ ୨ୟ ରାମଚନ୍ଦ୍ର ଦେବ (୧୭୨୭-୧୭୩୬) ଏକ ମୁସଲମାନ ରମଣୀର ସଙ୍ଗ ଓ ସାନ୍ନିଧ ଲାଭକରି ଓ ଏପରି କି ତାଙ୍କୁ ବିବାହ କରି ଜାତିଚ୍ୟୁତ (ତଥା ହିନ୍ଦୁଧର୍ମଚ୍ୟୁତ) ହୋଇଥିଲେ । (ସ୍ମାରକପତ୍ରରେ ୨ୟ ରାମଚନ୍ଦ୍ରଙ୍କ ସିଂହାସନ ଆରୋହଣର ସମୟ ସେତେବେଳେ ଉପଲବ୍ଧ ହଣ୍ଟରଙ୍କ ପୁସ୍ତକ ଅନୁଯାୟୀ ଦିଆଯାଇଥିଲା, ଯାହା ସ୍ୱାଭାବିକ । ଦ୍ର: Sahu, N. K. ed., 1956, Part I, p. 203 । କିନ୍ତୁ କେଦାରନାଥ ମହାପାତ୍ରଙ୍କ ମତ ଅନୁଯାୟୀ ତାହା ୧୭୨୭ ଖ୍ରୀଷ୍ଟାବ୍ଦ ହେବ । ଦ୍ର: ମହାପାତ୍ର, କେଦାରନାଥ, ୧୯୬୯, ପୃ.୧୮୧ । 'ମାଦଳାପାଞ୍ଜି' ଅନୁଯାୟୀ ୨ୟ ରାମଚନ୍ଦ୍ରଙ୍କ ସିଂହାସନ ଆରୋହଣ ସମୟ ୧୬୪୯ ଶକାବ୍ଦ ଓ ସେ ୧୬୬୦ ଶକାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଦ୍ର: ମାଦଳାପାଞ୍ଜି, ୧୯୪୦, ପୃ. ୭୩ ଓ ୭୭ ।)

(୨) ଏହି ହିନ୍ଦୁଧର୍ମଚ୍ୟୁତ ତଥା ଜଗନ୍ନାଥ ମନ୍ଦିରରେ ପ୍ରବେଶାଧିକାର ଓ ସେ କାରଣରୁ ଜଗନ୍ନାଥଙ୍କ ଆଦ୍ୟସେବକ ହେବାର ଅଧିକାର ଓ ତାଙ୍କ ସେବା ଅର୍ଚ୍ଚନା କରିବାର ଅଧିକାରରୁ ବଞ୍ଚିତ ଭୋଇ ୨ୟ ରାମଚନ୍ଦ୍ର ଦେବଙ୍କୁ ଜଗନ୍ନାଥ ଦର୍ଶନ ଓ ତାଙ୍କ ସେବାପୂଜାର ସୁଯୋଗ ଦେବା ନିମିତ୍ତ ତାଙ୍କରି ସମୟରେ ବଡଦେଉଳର ସିଂହଦ୍ୱାରଠାରେ ପତିତପାବନ ମୂର୍ତ୍ତି(relief)ଙ୍କ ପ୍ରତିଷ୍ଠା କରାଯାଇଥିଲା ।

ସେମାନଙ୍କ ମଧ୍ୟରେ କିଛି ଭିନ୍ନତା ଥିଲେ ମଧ୍ୟ ରାଣୀଙ୍କର ଏହି ସ୍ମାରକପତ୍ରଟିର ପ୍ରଥମ ବକ୍ତବ୍ୟ ତଥା ପରବର୍ତ୍ତୀ କାଳର ବହୁ ଐତିହାସିକ, ଗବେଷକ ଓ ଏପରି କି କେତେକ ସାହିତ୍ୟସ୍ରଷ୍ଟାଙ୍କ ଅଭିମତ ହୁଏତ ସିଧାସଳଖ ବା ପ୍ରକାରାନ୍ତରରେ, ସମ୍ପୂର୍ଣ୍ଣ ବା ଆଂଶିକ ଭାବରେ ସମାନ । ଏମାନେ ହେଲେ: M.M.Chakravarti, କୃପାସିନ୍ଧୁ ମିଶ୍ର, R. D. Banerji, ଜଗବନ୍ଧୁ ସିଂହ, N. K.Sahu, H. K. Mahatab, ଚକ୍ରଧର ମହାପାତ୍ର, କେଦାରନାଥ ମହାପାତ୍ର, Hermann Kulke, M. A. Haque, ରାମଚନ୍ଦ୍ର ଆଚାର୍ଯ୍ୟ ଓ ସୁରେନ୍ଦ୍ର ମହାନ୍ତି । ତେବେ ଏଠାରେ ସୂଚାଇ ଦେବା ଆବଶ୍ୟକ ଯେ ଭୋଇ ୨ୟ ରାମଚନ୍ଦ୍ର ଏକ ମୁସଲମାନ ରମଣୀଙ୍କର ପ୍ରଣୟ ପାଶରେ ଆବଦ୍ଧ ହୋଇ ତାହାଙ୍କୁ ବିବାହ କରିଥିଲେ ବୋଲି ଉଭୟ ଚକ୍ରଧର ମହାପାତ୍ର ଓ କେଦାର ନାଥ ମହାପାତ୍ର ଗ୍ରହଣ କରିଥିଲେ ବି ପରିଣାମରେ ସେ ହିନ୍ଦୁଧର୍ମଚ୍ୟୁତ ହୋଇଥିଲେ ବୋଲି ଗ୍ରହଣ କରିବାପାଇଁ କୁଣ୍ଠା ପ୍ରକାଶ କରିଛନ୍ତି । (ଦ୍ର: Chakravarti, M. M. 1898, p.383; ମିଶ୍ର, କୃପାସିନ୍ଧୁ, ୧୯୨୬, ପୃ.୨୫୦; Banerji, R. D.,1931, pp.80, 87 and 89; ସିଂହ, ଜଗବନ୍ଧୁ, ୧୯୬୪, ପୃ. ୩୮୬; Sahu. N. K., ed. 1956, Part II, p. 392; Mahatab, H. K., Part II, 1960, pp. 467-68; ମହାପାତ୍ର,

ଚକ୍ରଧର, ୧୯୬୯, ପୃ.୨୩୨-୩୪ ଓ ୨୪୨-୪୩ ତଥା ୧୯୮୯, ପୃ.୨୦୬-୭ ଓ ୨୧୦; ମହାପାତ୍ର, କେଦାରନାଥ, ୧୯୬୯, ପୃ.୧୮୭-୧୮୮; Kulke, Hermann, 1979, p.175 & p.187; Sahu, N. K., Mishra, Sahu, 1979, p.335; Haque, M. A. 1980, p.189; ଆଚାର୍ଯ୍ୟ, ରାମଚନ୍ଦ୍ର, ୧୯୯୦, ପୃ,୪୬୩, 'ବୀର ଓଡିଆ' ଉପନ୍ୟାସର ଶେଷ ପରିଛେଦ ଓ ମହାନ୍ତି, ସୁରେନ୍ଦ୍ର, ୧୯୬୮/୧୯୭୩, ୩୦୫/୨୩୬ ଓ ୧୯୭୦/୧୯୭୭, ପୃ. ୩୨୬-୨୭/୨୫୨) । )

ସେହିପରି ସେମାନଙ୍କ ମଧ୍ୟରେ କିଛି କିଛି ମତ ପାର୍ଥକ୍ୟ ଥିବା ସତ୍ତ୍ୱେ, ଐତିହାସିକ ଓ ଗବେଷକ କୃପାସିନ୍ଧୁ ମିଶ୍ର, ଜଗବନ୍ଧୁ ସିଂହ, ଚକ୍ରଧର ମହାପାତ୍ର, R. K. Das, କେଦାରନାଥ ମହାପାତ୍ର, Hermann Kulke, Surendra Mohanty ତଥା ଔପନ୍ୟାସିକ ଭୂମିକାରେ ଅବତୀର୍ଣ୍ଣ ସୁରେନ୍ଦ୍ର ମହାନ୍ତିଙ୍କ ଅଭିମତ ମଧ ରାଣୀଙ୍କ ସ୍ମାରକପତ୍ରର ଦ୍ୱିତୀୟ ବକ୍ତବ୍ୟ ସହ ସିଧାସଳଖ ବା ପ୍ରକାରାନ୍ତରରେ ସମାନ ବୋଲି ମନେହୁଏ । ଅବଶ୍ୟ ସୁରେନ୍ଦ୍ର ମହାନ୍ତି୧୯୬୮ରେ ପ୍ରଥମଥରପାଇଁ ପ୍ରକାଶିତ 'ନୀଳଶୈଳ' ଉପନ୍ୟାସରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ମୂଳରେ ରାଣୀଙ୍କ ଦ୍ୱିତୀୟ ବକ୍ତବ୍ୟରେ ଦର୍ଶିତ କାରଣ କେବଳ ନୁହେଁ, ଆହୁରି ଏକ ଗୂଢ ରାଜନୀତିକ କାରଣର, ଅର୍ଥାତ୍ ସେ ମୁସଲମାନ୍ ଧର୍ମ ଗ୍ରହଣ କରି ଜଣେ ମୁସଲମାନ୍ ନାରୀଙ୍କୁ ବିବାହ କରିଥିଲେ ମଧ୍ୟ ଖୋର୍ଦ୍ଧାର ରାଜା ରାମଚନ୍ଦ୍ର ଦେବ ଭାବରେ ଓଡିଶାର ଜନସାଧାରଣଙ୍କଠାରୁ ଜଗନ୍ନାଥଙ୍କର ଆଦ୍ୟସେବକର ସ୍ୱୀକୃତି ହାସଲ ଉଦ୍ୟମର, ସୂଚନା ଦେଇଥିବାବେଳେ ୧୯୭୦ରେ ପ୍ରଥମ ଥରପାଇଁ ପ୍ରକାଶିତ ତାଙ୍କ 'ଶତାବ୍ଦୀର ସୂର୍ଯ୍ୟ'ରେ କେବଳ ରାଣୀଙ୍କ ଦ୍ୱିତୀୟ ବକ୍ତବ୍ୟରେ ଦର୍ଶିତ କାରଣ ଅର୍ଥାତ୍ ୨ୟ ରାମଚନ୍ଦ୍ରଙ୍କୁ ଜଗନ୍ନାଥ ଦର୍ଶନ ଓ ତାଙ୍କ ସେବାଅର୍ଚ୍ଚନାର ସୁଯୋଗ ଦେବାପାଇଁ ହିଁ ଏହି ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା ବୋଲି ଉଲ୍ଲେଖ କରିଛନ୍ତି । (ଦ୍ର: ମିଶ୍ର, କୃପାସିନ୍ଧୁ, ୧୯୨୬, ପୃ.୨୫୦; ସିଂହ, ଜଗବନ୍ଧୁ, ୧୯୬୪, ପୃ.୩୮୬; ମହାପାତ୍ର, ଚକ୍ରଧର, ୧୯୬୯, ପୃ.୨୩୨-୩୪ ଓ ୨୪୨-୪୩ ତଥା ୧୯୮୯, ପୃ.୨୦୬-୭ ଓ ୨୧୦; ମହାପାତ୍ର, କେଦାରନାଥ, ୧୯୬୯, ପୃ.୧୮୭-୮୮; Das, R. K., 1978, p.41; Kulke, Hermann 1979, pp.171, 187; Haque, M. A.,1980, p.189; Mohanty, Surendra, 1982, p.3, ଓ ମହାନ୍ତି, ସୁରେନ୍ଦ୍ର, ୧୯୬୮/୧୯୭୩, ପୃ.୩୦୫/୨୩୬ ଓ ୧୯୭୦/୧୯୭୭, ପୃ.୩୨୬-୨୭/୨୫୨) ।

ବର୍ତ୍ତମାନ ରାଣୀ ସୂର୍ଯ୍ୟମଣିଙ୍କ ସ୍ମାରକପତ୍ରରେ ଉଲ୍ଲିଖିତ ବକ୍ତବ୍ୟ ଦୁଇଟିର ମୂଳ ବା ଐତିହାସିକ ଭିତ୍ତି ଅନୁସନ୍ଧାନ କରାଯାଉ ।

ଖୋର୍ଦ୍ଧାର ରାଜା ଭୋଇ ୨ୟ ରାମଚନ୍ଦ୍ର ଦେବ ଏକ ମୁସଲମାନ ରମଣୀ (ତତ୍‌କାଳୀନ ନବାବ ବା ନାଏବ ନାଜିମ୍‌ଙ୍କ କନ୍ୟା) ସହ ପ୍ରଣୟପାଶରେ ଆବଦ୍ଧ ହୋଇ ତାଙ୍କୁ ବିବାହ କରିଥିଲେ ଓ ଜାତିଚ୍ୟୁତ ହୋଇଥିଲେ ବୋଲି ଜନଶ୍ରୁତି ଏବେ ତ ରହିଛି, ତା ମଧ୍ୟଯୁଗରେ ମଧ ଜଣାଥିଲା । ଆର୍ତ୍ତବଲ୍ଲଭ ମହାନ୍ତି ସଙ୍କଳିତ 'ମାଦଳାପାଞ୍ଜି'ର 'ରାଜଭୋଗ ଇତିହାସ'ରେ ଏ ସମ୍ପର୍କରେ ଅଛି. "ଏ ରାଜାଙ୍କ ଦିନରେ କଟକ ସୁବା ସୁଜା ଖାଁ ନସକର ଘେନି ରାଜାଙ୍କ ସଙ୍ଗେ ଯୁଝ କରି ରାଜାଙ୍କୁ ଧରିଆଣି କଟକ ରଖିଲେ । ଏ ଉତ୍ତାରୁ କେତେକ ଦିନ ଗଲା ଉତ୍ତାରୁ ଏ ରାଜା ନବାବଙ୍କ ଝିଅକୁ ହାରିଲେ । ଜାତିଭ୍ରଷ୍ଟ ହୋଇଲେ । ପଠାଣଙ୍କ ସଙ୍ଗେ ଆତଯାତ ହେଲେ ।" ('ମାଦଳାପାଞ୍ଜି', ୧୯୪୦, ପୃ.୭୭-୭୮) । କେବଳ ସେତିକି ନୁହେଁ, ୧୮୪୪ ଖ୍ରୀଷ୍ଟାବ୍ଦରେ ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟ 'ମାଦଳା ପାଞ୍ଜି'ର ଯେଉଁ ପଦ୍ୟାନୁବାଦ ବଙ୍ଗଭାଷାରେ ପ୍ରକାଶ କରିଥିଲେ, ସେଥିରେ ଅଛି,

"ପରେ ରାମଚନ୍ଦ୍ର ଦେବ ସିଂହାସନେଶ୍ୱର ।
ଶାସନ କରୟେ କ୍ଷିତି ଅତି ଖରତର ।।
ଏଗାର ବତ୍ସର ତାଁର ରାଜତ୍ୱ ବିଧାନ ।
ଷୋଳଶ ଛଷଟ୍ଟି ଶକ ତାହେ ଅବସାନ ।।
ଇହାଁର ଆମଲେ ଆଛେ ଅଦ୍ଭୁତ କାହିନୀ ।
ଅବଧାନ କରି ଶୁନ ସଘନେ ବାଖାନି ।।
ସୁଜା ଖାଁ ନାମେତେ କଟେକେର ସୁବାଦାର ।
ଜବନ ଜାତିତେ ଅତି ଦୁଷ୍ଟ ଦୁରାଚାର ।।
ଖୋରଦା ମୋକାମେ ଆସି ସସୈନ୍ୟ ସେ ଜନ ।
ରାଜା କେ ଲଇୟା ଯାୟ ନିଜ ନିକେତନ ।।
କିଛୁ କାଲ ପରେ ତାଁର କନ୍ୟାର ସହିତ ।
ରାଜାର ହଇଲ ମିଲ ହିତେ ବିପରୀତ ।।
ଜନରବେ ପ୍ରଚାର ହଇଲ ସେ ବିଷୟ ।
ଜାତ୍ୟନ୍ତର ଜ୍ଞାନେ ନିଜଧର୍ମ ତ୍ୟାଗୀ ହୟ ।।

ମୋଛଲମାନର ସଙ୍ଗେ ଆହାର ବିହାର ।
ସକଲି ଘଟିଲ ତାଁର ଜବନ ଆଚାର ।।"

(ପୁରୁଷୋତ୍ତମ ଚନ୍ଦ୍ରିକା, ୧୨୫୧ ସାଲ. ପୃ. ୬୦-୬୧)

ପୁଣି ନୀଳମଣି ମିଶ୍ରଙ୍କ 'ଭକ୍ତ ବାଲିଗାଁ ଦାସ : ଜୀବନୀ ରଚନା' ନାମକ ପୁସ୍ତକରେ ସନ୍ନିବେଶିତ, ବୋଧହୁଏ ଅଷ୍ଟାଦଶ ଶତକରେ ରଚିତ, 'ବାଲିଗାଁ ଦାସିଆ ଭାଗବତ' ବା 'ଆଗତ ଭବିଷ୍ୟ' ରେ ମଧ୍ୟ ଏହାର ପରୋକ୍ଷ ସୂଚନା ମିଳେ, ଯଥା:

"ରାମଚନ୍ଦ୍ର ଯେ ଦେବ ପୁଣ । ରାଜା ଭକ୍ଷିବ ସୁରାପାନ ।।
ରାଜ୍ୟରୁ ଛାଡ଼ି ପଳାଇବ । ମୁଗୁଲ ସଙ୍ଗେ ଜାତି ଦେବ ।।
ଓଡ଼ିଶା ଛାଡ଼ି ରାଜା ଯିବ । ପଛିମେ ଗୋପ୍ୟାନ ହୋଇବ ।।"

(ଦ୍ର : ମିଶ୍ର ନୀଳମଣି, ୧୯୨୮, ପୃ. ୭୩)

ଏହା ବ୍ୟତୀତ ଦୁଇଟି ପୁରୁଣା ରେଖାଚିତ୍ର ଓ ତା'ର ନିମ୍ନରେ ଥିବା ସୂଚନାକୁ ମଧ୍ୟ ଏହାର ପ୍ରମାଣ ରୂପେ ଉପସ୍ଥାପନ କରାଯାଇଛି (ଦ୍ର: ମହାପାତ୍ର, ଚକ୍ରଧର, ୧୯୬୯, ଫଟୋଚିତ୍ର ନମ୍ବର ୧୧ ଓ ୧୪) ।

ଅଷ୍ଟାଦଶ ଶତକର ଶେଷାର୍ଦ୍ଧରେ (୧୭୮୦ରେ) ସୟଦ ଗୁଲାମ ହୁସେନ ଖାଁଙ୍କ ଲିଖିତ 'ସୈର ମୁତାକ୍ଷରୀନ' (Seir Mutaqherin) ନାମକ ପାର୍ଶୀ ପୁସ୍ତକରେ ମଧ୍ୟ ଏହାର ପରୋକ୍ଷ ସୂଚନା ମିଳେ । ଏହି ପୁସ୍ତକ ଅନୁଯାୟୀ ମୁର୍ଶିଦାବାଦ୍‌ର ନବାବ ଆଲିବର୍ଦ୍ଧୀ ଖାଁ'ଙ୍କଦ୍ୱାରା ୧୭୪୧ରେ, ବାଲେଶ୍ୱର ନିକଟବର୍ତ୍ତୀ ଫୁଲୱାରୀ ଯୁଦ୍ଧରେ ପରାସ୍ତ ହୋଇ ଓଡ଼ିଶାର ନାଏବ ନାଜିମ୍ ରୁସ୍ତମ୍ ଜଙ୍ଗ୍ ଓରଫ ୨ୟ ମୁର୍ଶିଦ୍‌କୁଲୀ ଖାଁ' ବାଲେଶ୍ୱରରୁ ଜଳପଥରେ ଦକ୍ଷିଣରେ ମସଲିପଟ୍ଟମ୍‌କୁ ପଳାଇ ଯାଇଥିଲେ । ଏହି ସମୟରେ ରଥିପୁର ଓ ଜଗନ୍ନାଥ (ପୁରୀ)ର ରାଜା ଆପଣା ସେନାପତି ସାହ୍ ମୁରାଦ୍‌ଙ୍କୁ ପଠାଇ ୨ୟ ମୁର୍ଶିଦ୍‌କୁଲୀଙ୍କ ପରିବାରବର୍ଗଙ୍କୁ କଟକରୁ ଠିକ୍ ସମୟରେ (ଅର୍ଥାତ୍ ଆଲିବର୍ଦ୍ଧୀ ଖାଁ' ବାଲେଶ୍ୱରରୁ ଆସି କଟକ ଅଧିକାର କରିବା ପୂର୍ବରୁ) ଉଦ୍ଧାର କରି ଦକ୍ଷିଣରେ ଗଞ୍ଜାମ ନିକଟବର୍ତ୍ତୀ ଇଚ୍ଛାପୁର ପର୍ଯ୍ୟନ୍ତ ପଠାଇ ଦେଇଥିଲେ (ସୈର ମୁତାକ୍ଷରୀନ, ୧୯୦୨, ପୃ. ୩୫୪-୫୫) । ସେହି ଅଷ୍ଟାଦଶ ଶତକରେ ଲିଖିତ 'ରିୟାଜ-ଉସ୍-ସାଲାତିନ୍' (Riyaz-Us-Salatin) ନାମକ ପାର୍ଶୀ ଗ୍ରନ୍ଥରେ ମଧ୍ୟ ଅନୁରୂପ ବିବରଣୀ ସ୍ଥାନ ପାଇଛି । ଏଥିରେ ସେନାପତିଙ୍କ ନାମ ମୁରାଦ୍ ଖାଁ ବୋଲି ଅଛି । ଏହି ଗ୍ରନ୍ଥର ଅନୁବାଦକ ପାଦଟୀକାରେ ରଥିପୁରର ରାଜାଙ୍କ ନାମ ହାଫିଜ କାଦର୍ ବୋଲି ଉଲ୍ଲେଖ କରିଛନ୍ତି (ରିୟାଜ-ଉସ୍-ସାଲାତିନ୍, ୧ମ ଖଣ୍ଡ ପୃ. ୩୩୧, ପାଦଟୀକା ନମ୍ବର ୨ । ଦ୍ର:

Banerji, R. D. 1931, p.80; ମହାପାତ୍ର, କେଦାର ନାଥ, ୧୯୬୯, ପୃ. ୨୦୦) । ତତ୍‌କାଳୀନ ରଥିପୁର ବା ଖୋର୍ଦ୍ଧାରାଜା ଯଦି ଇସ୍‌ଲାମ ଧର୍ମ ଗ୍ରହଣ କରି ନ ଥିଲେ ତେବେ ତାଙ୍କ ନାମ ହାଫିଜ କାଦର ଥିଲା ବୋଲି କାହିଁକି ବା କୁହାଯାଇଥିଲା ? ସେହିପରି ତାଙ୍କର ସାହ୍ ମୁରାଦ୍ ବା ମୁରାଦ୍ ଖାଁ ନାମକ ସେନାପତି କିପରି ଥିଲେ ? ପୁଣି ୨ୟ ମୁର୍ଶିଦ୍‌କୁଲୀ ଖାଁଙ୍କ ସହ ତାଙ୍କର ଯଦି କୌଣସି ପାରିବାରିକ ସମ୍ପର୍କ ନ ଥିଲା, ତା'ହେଲେ ସେ କାହିଁକି ୨ୟ ମୁର୍ଶିଦ୍‌କୁଲୀ ଖାଁ'ଙ୍କ ପରିବାରର ଉଦ୍ଧାର ଓ ସୁରକ୍ଷାପାଇଁ ତତ୍ପର ଥିଲେ ? ମୋଟଉପରେ ତତ୍‌କାଳୀନ ଖୋର୍ଦ୍ଧା ରାଜାଙ୍କୁ ହାଫିଜ୍ କାଦର୍ ବୋଲି କୁହାଯାଇଥିବାରୁ ଓ ତାଙ୍କର ମୁରାଦ ଖାଁ ନାମକ ସୈନ୍ୟାଧ୍ୟକ୍ଷ ଥିବାରୁ ତଥା ସେ ୨ୟ ମୁର୍ଶୀଦକୁଲି ଖାଁଙ୍କ'ର ପରିବାର ଉଦ୍ଧାର କରିବାପାଇଁ ତତ୍ପରତା ଦେଖାଇଥିବାରୁ ସେ ମୁସଲମାନ ଥିଲେ ବା ମୁସଲମାନଧର୍ମ ଗ୍ରହଣ କରିଥିଲେ ଓ ୨ୟ ମୁର୍ଶିଦକୁଲୀ ଖାଁଙ୍କ ସହ ତାଙ୍କର ପାରିବାରିକ ସମ୍ପର୍କ ଥିଲା ବୋଲି ଅନୁମାନ କରାଯାଇ ପାରେ । (ଅବଶ୍ୟ କେଦାର ନାଥ ମହାପାତ୍ର ୨ୟ ମୁର୍ଶୀଦକୁଲି ଖାଁଙ୍କ'ର ପରିବାର ଉଦ୍ଧାର କରିବାପାଇଁ ତତ୍ପରତା ଦେଖାଇଥିବା ଖୋର୍ଦ୍ଧାର ରାଜାଙ୍କୁ ୨ୟ ରାମଚନ୍ଦ୍ରଙ୍କ ପୁତ୍ର ବୀରକେଶରୀ ଦେବଙ୍କ ସହ ଚିହ୍ନିତ କରିଛନ୍ତି । ଦ୍ର: ମହାପାତ୍ର, କେଦାର ନାଥ, ୧୯୬୯, ପୃ. ୨୦୦ ।)

ଏସବୁ ବିଚାରରୁ ରାଣୀ ସୂର୍ଯ୍ୟମଣିଙ୍କ ସ୍ମାରକପତ୍ରର ଉପରୋକ୍ତ ୧ମ ବକ୍ତବ୍ୟ ସତ୍ୟ ହୋଇଥିବାର ସମ୍ଭାବନାକୁ ସମ୍ପୂର୍ଣ୍ଣ ଭାବରେ ଏଡ଼ାଇ ଦିଆଯାଇ ପାରିବ ନାହିଁ । କିଛି ନ ହେଲେ, ଅନ୍ତତଃ ରାଣୀ ସୂର୍ଯ୍ୟମଣିଙ୍କ ପୂର୍ବରୁ ଏପରି ଜନଶ୍ରୁତି ପ୍ରଚଳିତ ଥିଲା ଓ ସ୍ମାରକପତ୍ରର ଏଇ ବକ୍ତବ୍ୟଟି କେବଳ ରାଣୀଙ୍କ (ବା ତାଙ୍କ ଆଇନ୍ ପରାମର୍ଶଦାତାଙ୍କ) କଳ୍ପନାପ୍ରସୂତ ନଥିଲା ବୋଲି ସ୍ୱୀକାର କରିବାପାଇଁ ହେବ । (ଅବଶ୍ୟ ୨ୟ ରାମଚନ୍ଦ୍ର ତାଙ୍କ ରାଜତ୍ୱର ଶେଷବର୍ଷ ପର୍ଯ୍ୟନ୍ତ ସେ ନିଜେ ରାଜା ରାମଚନ୍ଦ୍ର ଦେବ ନାମ ବ୍ୟବହାର କରି ଜଗନ୍ନାଥ ମନ୍ଦିରର ପରିଚାଳନା ସଂକ୍ରାନ୍ତରେ ଛାମୁଚିଟାଉ ଓ ସନନ୍ଦ ଦେଉଥିବାର ଜଣାଯାଏ । 'ମାଦଳା ପାଞ୍ଜି'ରୁ ଏହିପରି କେତେଗୁଡ଼ିଏ ଛାମୁଚିଟାଉ ମିଳିଅଛି) । ତେଣୁ ପୂର୍ବୋକ୍ତ ଐତିହାସିକ, ଗବେଷକ ବା ସାହିତ୍ୟସ୍ରଷ୍ଟାମାନେ ରାଣୀଙ୍କ ସ୍ମାରକପତ୍ର ଭିତ୍ତିରେ ନୁହେଁ, ଅନ୍ୟାନ୍ୟ ଉପାଦାନ ଭିତ୍ତିରେ ହିଁ ୨ୟ ରାମଚନ୍ଦ୍ର ଏକ ମୁସଲମାନ ରମଣୀକୁ ବିବାହ କରିଥିଲେ (ଓ ମୁସଲମାନ ଧର୍ମ ଗ୍ରହଣ କରି ହିନ୍ଦୁଧର୍ମଚ୍ୟୁତ ହୋଇଥିଲେ) ବୋଲି ସିଦ୍ଧାନ୍ତ/ଅନୁମାନ କରିଛନ୍ତି ।

କିନ୍ତୁ ଜାତିଚ୍ୟୁତ ତଥା ହିନ୍ଦୁଧର୍ମଚ୍ୟୁତ ଓ ସେ କାରଣରୁ ଜଗନ୍ନାଥ ମନ୍ଦିରର ପ୍ରବେଶାଧିକାରରୁ ତଥା ଜଗନ୍ନାଥଙ୍କ ଆଦ୍ୟସେବକ ପଦରୁ ବଞ୍ଚିତ ୨ୟ ରାମଚନ୍ଦ୍ରଙ୍କୁ

ଜଗନ୍ନାଥ ଦର୍ଶନ ଓ ତାଙ୍କ ସେବା ଅର୍ଚ୍ଚନାର ସୁଯୋଗ ଦେବାପାଇଁ ହିଁ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ଗୁମଟରେ ବିରାଜିତ ପତିତପାବନ ମୂର୍ତ୍ତି (relief)କୁ ସେଇ ୨ୟ ରାମଚନ୍ଦ୍ରଙ୍କ ସମୟରେ ପ୍ରସ୍ତୁତ ଓ ପ୍ରତିଷ୍ଠା କରାଯାଇଥିଲା ବୋଲି କୌଣସି ପୁରୁଣା ଜନଶ୍ରୁତି (ଅର୍ଥାତ୍ ୧୯ଶ ଶତକ ଦ୍ୱିତୀୟାର୍ଦ୍ଧର ପୂର୍ବର) ବା ଅନ୍ୟ କିଛି ପ୍ରମାଣ ନାହିଁ। ଅବଶ୍ୟ ରାଣୀଙ୍କ ସ୍ମାରକପତ୍ରରେ 'ମାଦଳାପାଞ୍ଜି'ରୁ ଏ ସମ୍ପର୍କୀୟ ବିବରଣୀ ମିଳୁଛି ବୋଲି ଦାବି କରାଯାଇଥିଲା ଓ ଏ ସମ୍ପର୍କୀୟ ଏକ ବିବରଣୀକୁ 'ମାଦଳାପାଞ୍ଜି'ର ଅଂଶବିଶେଷ ବୋଲି ମଧ୍ୟ ଦାବି କରାଯାଇ ସେହି ବିବରଣୀକୁ ତଥା ତା'ର ଇଂରାଜୀ ଅନୁବାଦକୁ ବି ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ କରାଯାଇଥିଲା। 'ମାଦଳାପାଞ୍ଜି'ର ସେହି ତଥାକଥିତ ଅଂଶଟି ହେଲା:

> "ଏ ରାଜାଙ୍କ ଦିନରେ କଟକ ରାଜା ସୁଜା ଖାଁ ନସ୍କର ଘେନି ରାଜାଙ୍କ କାମକରି ରାଜାଙ୍କୁ ଧରିଆଣି କଟକରେ ରଖିଲେ ଓ ନବାବ ଆପଣା ଝିଅ ସଙ୍ଗେ ଜବରଦସ୍ତି ବିବାହ କରାଇଲେ । ଏ ରାଜା ବିବାହ କରିବାରୁ ଜାତିଭ୍ରଷ୍ଟ ହୋଇଲେ। ପଠାଣଙ୍କ ସଙ୍ଗେ ଆତଜାତ ହେଲେ। ଏ ରାଜା ଏକା ମୋଗଲୁଙ୍କୁ ମୁଗଲବନ୍ଦୀରୁ ଜଇ ଅଠରଗଡ଼ ଅମଳ କଲେ। ଏହି ରୂପେ ରାମଚନ୍ଦ୍ର ଦେବ କଟକରେ ରହିଲେ, ଏ ରାଜା ଜାତିଭ୍ରଷ୍ଟ ହେବାରୁ ଦେଉଳକୁ ଯାଇ ନ ପାରିବାରୁ ମହାପ୍ରଭୁଙ୍କ ସେବାକୁ ଅଯୋଗ୍ୟ ହେଲେ। ତାହିକି ଆଜ୍ଞାମତେ ଦର୍ଶନ ନିମନ୍ତେ ଶ୍ରୀ ପତିତପାବନ ମୂର୍ତ୍ତି ଶ୍ରୀ ସିଂହଦ୍ୱାରେ ବସିଲେ। ରାଜା ଜାତିଭ୍ରଷ୍ଟ ହେବାରୁ ରାଣୀ ଓ ପାତ୍ରମାନେ ଏହାଙ୍କ ନାତି ଭାଗିରଥି କୁମାରଙ୍କୁ କୋଦଳା ଆଠଗଡ଼ଠାରୁ ଆଣି ରାଜା କଲେ। ଏ ତ ବିରକିଶୋର ଦେବ ହୋଇ ରାଜା ହେଲେ। ଖୁରଦା ଗଡ଼ରେ ରହିଲେ।"
> (ଜଗନ୍ନାଥ ମନ୍ଦିର ପତ୍ରାବଳୀ, ୬ଷ୍ଠ ଖଣ୍ଡ, ପୃ. ୧୪୩୬)।

କିନ୍ତୁ ଆର୍ତ୍ତବଲ୍ଲଭ ମହାନ୍ତିଙ୍କଦ୍ୱାରା ସମ୍ପାଦିତ 'ମାଦଳାପାଞ୍ଜି'ରେ ରାଣୀଙ୍କ ସ୍ମାରକପତ୍ରରେ ଉଦ୍ଧୃତ 'ମାଦଳାପାଞ୍ଜି'ର ଏଇ ତଥାକଥିତ ଅଂଶବିଶେଷଟି ମିଳେନାହିଁ କି ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟଙ୍କଦ୍ୱାରା ବଙ୍ଗଭାଷାରେ 'ମାଦଳାପାଞ୍ଜି'ର ଯେଉଁ ପଦ୍ୟାନୁବାଦ କରାଯାଇଥିଲା ସେଥିରେ ବି ତାର ସୂଚନା ନାହିଁ। 'ମାଦଳାପାଞ୍ଜି'ର ଏହି ତଥାକଥିତ ଉଦ୍ଧୃତିଟି ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ 'ମାଦଳାପାଞ୍ଜି'ରେ ନ ଥିବାରୁ ତଥା ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟ ବଙ୍ଗଭାଷାରେ କରିଥିବା 'ମାଦଳାପାଞ୍ଜି'ର ପଦ୍ୟାନୁବାଦରେ ଏଥି କଥିତ ପତିତପାବନ ମୂର୍ତ୍ତି ବିଷୟକ ସୂଚନା ନଥିବାରୁ ଏହାର

ପ୍ରମାଣିକତା ସମ୍ପର୍କରେ ସନ୍ଦେହ ହୁଏ । ପୁଣି ଏହି ତଥାକଥିତ ଉଦ୍ଧୃତାଂଶର ଭାଷା ଅର୍ବାଚୀନ ବୋଲି ଧାରଣା ବି ହୁଏ ।

ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶର ପ୍ରାମାଣିକତା ବିଚାରରେ ପ୍ରଥମ ପ୍ରଶ୍ନଟି ହେଉଛି, ୨ୟ ରାମଚନ୍ଦ୍ର ଜାତିଧର୍ମଚ୍ୟୁତ ହେବାରୁ "ମହାପ୍ରଭୁଙ୍କ ସେବାକୁ ଅଯୋଗ୍ୟ" ଅର୍ଥାତ୍ ଜଗନ୍ନାଥଙ୍କ ଆଦ୍ୟସେବକ ହେବାକୁ ଅଯୋଗ୍ୟ ଓ ସେ କାରଣରୁ ଖୋର୍ଦ୍ଧାର ରାଜା ହେବାକୁ ଅଯୋଗ୍ୟ ହୋଇଥିଲେ କି ? ୨ୟ ରାମଚନ୍ଦ୍ର ଜାତିଧର୍ମଚ୍ୟୁତ ଓ ଜଗନ୍ନାଥ ମନ୍ଦିର ପ୍ରବେଶାଧିକାରରୁ ବଞ୍ଚିତ ହୋଇଥିଲେ ହୋଇପାରିଥାନ୍ତି । କାରଣ ସେ ମନ୍ଦିର ଭିତରକୁ ପ୍ରବେଶ କରିପାରୁଥିଲେ କି ନାହିଁ ତା ଅବଶ୍ୟ ଜଣାନାହିଁ । ତେବେ ବନ୍ଦୀରୁ ମୁକ୍ତ ହେବା ପରେ ସେ ନିଜକୁ କେବଳ ରାଜା ରାମଚନ୍ଦ୍ର ଦେବ ବୋଲି ଚିହ୍ନିତ କରୁଥିଲେ ବା ବୋଲାଉଥିଲେ ତଥା ସେହି ରାଜା ରାମଚନ୍ଦ୍ର ଦେବ ନାମ ବ୍ୟବହାର କରି ଜଗନ୍ନାଥ ମନ୍ଦିରର ପରିଚାଳନା ସଂକ୍ରାନ୍ତରେ ଛାମୁଚିଟାଉ ଦେଉଥିବାର କୁହାଯାଇଛି । କିନ୍ତୁ କେବଳ ସେତିକି ନୁହେଁ, ସେ ଜଣେ ମୁସଲମାନ ନାରୀଙ୍କୁ ବିବାହ କରିଥିବା ସତ୍ତ୍ୱେ କଟକର ମୁସଲମାନ ସୁବାଦରଙ୍କ ପ୍ରତି ତାଙ୍କର ଆଦୌ କୌଣସି ଆନୁଗତ୍ୟ ତ ନ ଥିଲା ଓ ଜଗନ୍ନାଥଙ୍କ ପ୍ରତି ତାଙ୍କ ଆନୁଗତ୍ୟ ଓ ଭକ୍ତି ତଥାପି ଅତୁଟ ରହିଥିଲା ବୋଲି ଆର୍ତ୍ତବଲ୍ଲଭ ମହାନ୍ତି ସଙ୍କଳିତ 'ମାଦଳାପାଞ୍ଜି'ରେ ଥିବା ତାଙ୍କ ରାଜତ୍ୱ ସମ୍ପର୍କୀୟ ବିବରଣ ପଢିଲେ ଧାରଣା ହୁଏ । ଅଥବା ଓଡିଶାର ଜନମାନସରେ ନିଜକୁ ଜଗନ୍ନାଥଙ୍କ ଆଦ୍ୟସେବକ ଓ ପରମ ଭକ୍ତ ବୋଲି ପ୍ରଦର୍ଶନ ଓ ପ୍ରତିପାଦନ ପୂର୍ବକ ଖୋର୍ଦ୍ଧାର ତଥା ଗଜପତି ରାଜା ଭାବରେ ନିଜ ରାଜତ୍ୱର ବୈଧତା (legitimation) ସମ୍ପାଦନ/ହାସଲ କରିବା ଉଦ୍ଦେଶ୍ୟ ହୁଏତ ବା ତାଙ୍କର ଥିଲା । ଏ ମଧ୍ୟରୁ ଗୋଟିଏ ବା ଉଭୟ କାରଣରୁ ସେ ମନ୍ଦିର ବାହାରେ ରଥଯାତ୍ରା ସମୟରେ ଆଦ୍ୟସେବକ ଭାବରେ ଛେରାପହଁରା ଓ ଅନ୍ୟାନ୍ୟ ନୀତି ବି କରୁଥିଲେ ବୋଲି ମଧ୍ୟ ସେଇ 'ମାଦଳାପାଞ୍ଜି'ରେ ସ୍ଥାନିତ ବିବରଣୀରୁ ଧାରଣା ବି ହୁଏ (ମାଦଳାପାଞ୍ଜି, ୧୯୪୦, ପୃ.୭୭) । ତା ବ୍ୟତୀତ, ହୁଏତ ବା ମୁସଲମାନ ଆକ୍ରମଣରୁ ଜଗନ୍ନାଥଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ହେଉ ଅଥବା ହୁଏତ ବା ଜଗନ୍ନାଥଙ୍କର ଆଦ୍ୟସେବକ ଭାବରେ ତାଙ୍କର ଅଧିକାରକୁ ସାବ୍ୟସ୍ତ କରିବା ତଥା ଜନମାନସରେ ନିଜ ଭାବମୂର୍ତ୍ତିକୁ ଉଜ୍ଜ୍ୱଳ କରି ନିଜ ରାଜତ୍ୱର ବୈଧତା ସମ୍ପାଦନ ଉଦ୍ଦେଶ୍ୟରେ ହେଉ ସେ ବାରମ୍ବାର ଜଗନ୍ନାଥ ବିଗ୍ରହମାନଙ୍କୁ ପୁରୀରୁ ଓଡିଶାର ଦକ୍ଷିଣରେ ଥିବା ବନାଞ୍ଚଳକୁ ନେଇ ଯାଉଥିବାର ବା ପଠାଇଦେଉଥିବାର ବିବରଣୀ ବି ସେଥିରୁ ମିଳେ । ଏ ମଧ୍ୟରୁ ଗୋଟିଏ ସ୍ଥାନର ନାମ ସେତେବେଳର

କୋଦଳା ଆଠଗଡ ରାଜ୍ୟ ଅନ୍ତର୍ଗତ ମାରଦା ନାମକ ଗ୍ରାମ ଯେଉଁ ଗ୍ରାମର କିଛି ଦୂରରେ ଏକ ପରିତ୍ୟକ୍ତ ଜଗନ୍ନାଥ ମନ୍ଦିର ଓ ତା ଭିତରେ କେବଳ ବିଗ୍ରହମାନଙ୍କ ଆସ୍ଥାନ ରୂପେ ବ୍ୟବହୃତ ହୋଇଥିବା ତିନୋଟି ଚକା (ବା ଗୋଲାକୃତିର) ପଥର ଏବେ ବି ଦେଖିବାପାଇଁ ମିଳେ। ଏଠାରେ ଶ୍ରୀବିଗ୍ରହମାନେ ପ୍ରାୟ ଦୁଇବର୍ଷ ଛ'ମାସ ଥିଲେ। ସେଠାରେ ଆଠଗଡ ରାଜାଙ୍କ ସକ୍ରିୟ ସହାୟତାରେ ହିଁ ୨ୟ ରାମଚନ୍ଦ୍ର ଜଗନ୍ନାଥ ବିଗ୍ରହମାନଙ୍କୁ ଗୋପନରେ ରଖି ସେବାପୂଜାର ସୁବନ୍ଦୋବସ୍ତ କରାଇପାରିଥିଲେ। (ଜଗନ୍ନାଥଙ୍କୁ ଏହିପରି ଆଶ୍ରୟ ବା ଶରଣ ଦେଇଥିବାରୁ ୨ୟ ରାମଚନ୍ଦ୍ର କୋଦଳା ଆଠଗଡର ରାଜାଙ୍କୁ 'ଶରଣପଞ୍ଜର' ଉପାଧି ଦେଇଥିଲେ, ଯେଉଁ ଉପାଧିକୁ ସେଇ ବଂଶର ପରବର୍ତ୍ତୀ ରାଜାମାନେ ନିଜ ନାମ ସହ ବ୍ୟବହାର କରିବାପାଇଁ ଗୌରବାବହ ମନେକରୁଥିଲେ। ତେଣୁ କବିସୂର୍ଯ୍ୟ ବଳଦେବ ତାଙ୍କର 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ'କୁ ପୃଷ୍ଠପୋଷକ ଆଠଗଡ ରାଜାଙ୍କ ନାମରେ ଭଣିତା କରିବା ସମୟରେ 'କ' ଗୀତର ଭଣିତା/ଶେଷରେ ଆଠଗଡ ରାଜ୍ୟକୁ ଶରଣ-ରାଜ୍ୟ ନାମରେ ଅଭିହିତ କରି ଲେଖିଥିଲେ, "କହଇ ଶ୍ରୀ ବାଲୁକେଶ, ଶରଣଧରଣୀଈଶ, ଏ କି ଦଣ୍ଡ ବିନା ପୀରତିରେ।") ୨ୟ ରାମଚନ୍ଦ୍ରଙ୍କ ଏପରି କାର୍ଯ୍ୟ ପୁରୀ ମନ୍ଦିରର ବହୁ ସେବକପୂଜକମାନଙ୍କ ବିନା ସହାୟତାରେ ତଥା ବିନା ଜନସମର୍ଥନରେ ହୋଇପାରୁନଥିବ। ତା ବ୍ୟତୀତ ଓଡିଶାର ବହୁ ଦେଶୀୟ ବା ସାମନ୍ତରାଜାଙ୍କ ସମର୍ଥନ ତ ତାଙ୍କ ପଛରେ ଥିଲା (ଏ ସମ୍ପର୍କରେ ଅଧିକ ଆଲୋଚନାପାଇଁ ଦ୍ର : Kulke, Hermann, 1978/2014, pp.336-37/424-26)। ତେଣୁ 'ମାଦଳାପାଞ୍ଜି'ର ସେଇ ତଥାକଥିତ ଉଦ୍ଧୃତାଂଶରେ ଥିବା ସେ "ମହାପ୍ରଭୁଙ୍କ ସେବାକୁ ଅଯୋଗ୍ୟ ହେଲେ" ବା ଆଦ୍ୟସେବକ ହେବାରୁ ବଞ୍ଚିତ ହେଲେ ପରି ଦାବି ପ୍ରମାଣିତ ହୁଏ ନାହିଁ।

ଆର୍ତ୍ତବଲ୍ଲଭ ମହାନ୍ତି ସଙ୍କଳିତ 'ମାଦଳାପାଞ୍ଜି'ରେ ପୁଣି ଅଛି, "ଅ ୧୩ ରେ ନବାବ ମୁଶସ୍ତ କୁଲି ଖାଁ' ଅଇଲେ। ଏହା ନାଏବ ମିର୍ ହବି ଆସି ଖୁରୁଧା ଘେନିଲା। ରାଜା ଝାଡଖଣ୍ଡ ବିଜେ କରିଗଲେ। ଏ ନବାବଙ୍କ ନାଏବ ସୁବା ମିର୍ ହବି ଋଷଭ ଦି ୫ ନେ ଦକ୍ଷିଣ ନବାବଙ୍କୁ ସଲା କରି ପିମ୍ପୋଲ ଫଉଦାର ଛୋଟନାଥଙ୍କୁ ସାଙ୍ଗେ ଘେନି ମାରଦାଠାରେ ପଟିଆ ପଦ୍ମନାଭ ଦେବଙ୍କୁ ରଜା କରି ପରମେଶ୍ୱରଙ୍କୁ ବିଜେ କରାଇ ଆଣି ଶ୍ରୀ ପୁରୁଷୋତ୍ତମ ବଡ ଦେଉଳେ ଅଣସର ପିଣ୍ଡିରେ ବିଜେ କରି ସଙ୍ଖୁଡି ଭୋଗ ମୁଣୋହି ହୋଇଥିଲେ। ମିଥୁନ ଦି ୧୪ ନେ ସ୍ନାହାନ ମଣ୍ଡପ ଉପରେ ସ୍ନାନଯାତ୍ରା ବଢାଇ ଅଣସର ପିଣ୍ଡିରେ ଅଣସର ଯାତ୍ରାରେ ବିଜେ କଲେ। ଏ ମହାରାଜାଙ୍କ ଅ ୧୪ଙ୍କ ଧନୁ

ଦି୧୫ନେ ଗଡ ନରସିଂହପୁରଠାରେ ରାଜା ଆବାହନ ହେଲେ ।" (ମାଦଳାପାଞ୍ଜି, ୧୯୪୦, ପୃ.୭୭) । ଏ ବିବରଣୀର ମୁଶସ୍ତ କୁଲି ଖାଁ' ହେଉଛନ୍ତି, ୨ୟ ମୁର୍ଶିଦ୍‌କୁଲି ଖାଁ' ଓରଫ ରୁସ୍ତମ୍ ଜଙ୍ଗ୍ ଓ ମିର୍ ହବି ହେଉଛନ୍ତି ସେଇ ୨ୟ ମୁର୍ଶିଦ୍‌କୁଲି ଖାଁ'ଙ୍କ ଦେବାନ୍ ମିର୍ ହବିବ୍ । (ଏହାଙ୍କ ସମ୍ପର୍କରେ ଅଧିକ ଜାଣିବାପାଇଁ ଦ୍ର : Datta, K. K. 1963 ।) ଏଥିରୁ ଜଣାଯାଏ ତକୀ ଖାଁ'ଙ୍କ ପରେ ୨ୟ ମୁର୍ଶିଦ୍‌କୁଲି ଖାଁ' କଟକର ନାଏବ୍ ନାଜିମ୍ ବା ସୁବାଦାର ହୋଇ ଆସିଲେ । ତାଙ୍କର ଆଦେଶରେ ତାଙ୍କର ଦେଓ୍ୱାନ୍ ମିର୍ ହବିବ୍ ଖୋର୍ଦ୍ଧା ଆକ୍ରମଣ କଲେ । ବୋଧହୁଏ ୨ୟ ରାମଚନ୍ଦ୍ର ଅସତର୍କ ଥିବା ବା ଅନ୍ୟ କାରଣରୁ ଯୁଦ୍ଧ ନ କରି ଖୋର୍ଦ୍ଧା ଛାଡି ଝାଡଖଣ୍ଡ ବା ଓଡିଶାର ପଶ୍ଚିମରେ ଥିବା ଅରଣ୍ୟାନୀ ମଧ୍ୟରେ ଆଶ୍ରୟ ଗ୍ରହଣ କଲେ । ମିର୍ ହବିବ୍ ୨ୟ ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧା ରାଜ୍ୟର ଗାଦିଚ୍ୟୁତ କରି ତାଙ୍କ ସ୍ଥାନରେ ପଟିଆର ପଦ୍ମନାଭ ଦେବଙ୍କୁ ଖୋର୍ଦ୍ଧାର ରାଜା ପଦ ଦେଇ ଓ ସେତେବେଳେ ହାଇଦ୍ରାବାଦ୍ ଅଧୀନରେ ଥିବା ଗଞ୍ଜାମ୍‌ର ସୁବାଦାରଙ୍କ ସହ ଗୋପନ ମନ୍ତ୍ରଣା କରି ତାଙ୍କ ସହାୟତାରେ ଜଗନ୍ନାଥ ବିଗ୍ରହ ଥିବା ମାରଦାକୁ ହଠାତ୍ ଆକ୍ରମଣ କରି ଅଧିକାର କଲେ । ତା ପରେ ସେ ଖୋର୍ଦ୍ଧାର ତତ୍କାଳୀନ ରାଜା ପଦ୍ମନାଭ ଦେବଙ୍କ ସହାୟତାରେ ମାରଦାଠାରୁ ଶ୍ରୀ ବିଗ୍ରହମାନଙ୍କୁ ପୁରୀ ଅଣାଇ ସେଠାରେ ବଡଦେଉଳରେ ଜଗନ୍ନାଥଙ୍କ ସେବାପୂଜାର ବନ୍ଦୋବସ୍ତ କରାଇଲେ ।

ଆର୍ତ୍ତବଲ୍ଲଭ ମହାନ୍ତି ସମ୍ପାଦିତ 'ମାଦଳାପାଞ୍ଜି'ର ଏହି ବିବରଣ ବହୁ ପରିମାଣରେ ପୂର୍ବେ ସୂଚିତ ପାର୍ଶୀ ଗ୍ରନ୍ଥ 'ରିୟାଜ୍-ଉସ୍-ସାଲାତିନ୍'ଦ୍ୱାରା ମଧ୍ୟ ସମର୍ଥିତ ହୁଏ । 'ରିୟାଜ-ଉସ୍-ସାଲାତିନ୍' ଅନୁଯାୟୀ, "During the commotion of Muhammad Taqi Khan's time, the Raja of Parustam [Puri] had removed Jagannath, the Hindu God, from the limits of the subah of Odisah, and had guarded it on the summit of a hill across the Chilka lake. In consequence of the removal of the idol, there was falling-off to the tune of nine lakhs in the Imperial revenue, accruing from the pilgrims." (quoted in Kulke, Hermann 1978/2014, pp.336-37/425; See also Kulke, H. 1993, p.48.) । ଏହି ସମସ୍ତ ବିଷୟ ବିଚାର କରି Hermann Kulke କହନ୍ତି, "The rather strange event that a Hindu cult of great temple city was renewed by a Muslim officer has usually been explained as an act of tolerance. ... ... It is obvious from this evidence that Murshid II ordered the renewal of the Jagannatha cult in Puri in order to stop the tremendous loss of pilgrim tax during years of

Jagannatha's absence from Puri." (Kulke, Hermann 1978/2014, pp.336-37/425; See also Kulke, H. 1993, p.48.) । ଏଥିରୁ ସ୍ପଷ୍ଟ ଭାବରେ ଜଣାଯାଏ ଯେ, ୨ୟ ରାମଚନ୍ଦ୍ର କଟକର ମୁସଲମାନ୍ ସୁବାଦାରଙ୍କୁ ଆଦୌ ମାନୁନଥିଲେ ଓ ବିଶେଷ ଭାବରେ ଶ୍ରୀ ବିଗ୍ରହମାନଙ୍କୁ ପୁରୀରୁ ବାରମ୍ବାର ଦକ୍ଷିଣରେ ଥିବା ଅରଣ୍ୟାନୀକୁ ନେଇ ପଳାଇଯିବାରୁ ବା ପଠାଇଦେଉଥିବାରୁ ପୁରୀରେ ଜଗନ୍ନାଥଙ୍କ ଅବର୍ତ୍ତମାନ ହେତୁ ମୁର୍ଶିଦାବାଦ ସରକାର ବା ଦିଲ୍ଲୀ ବାଦଶାହଙ୍କ ତହବିଲରୁ ୯ ଲକ୍ଷ ଟଙ୍କାର ଯାତ୍ରୀକର ବାବଦ ରାଜସ୍ୱହାନି ହୋଇଥିଲା । ସେଇ କାରଣରୁ କଟକର ସୁବାଦାରଙ୍କଦ୍ୱାରା ହିଁ ୨ୟ ରାମଚନ୍ଦ୍ର ପଦଚ୍ୟୁତ ବା ରାଜଗାଦିଚ୍ୟୁତ ହୋଇଥିଲେ, କିନ୍ତୁ ମୁସଲମାନ୍ ରମଣୀଙ୍କୁ ବିବାହ କରି ଜାତିଚ୍ୟୁତ ତଥା ଧର୍ମଚ୍ୟୁତ ହୋଇ ଜଗନ୍ନାଥ ମନ୍ଦିରର ପ୍ରବେଶାଧିକାରରୁ ଓ ଜଗନ୍ନାଥଙ୍କ ଆଦ୍ୟସେବକ ପଦରୁ ବଞ୍ଚିତ ହୋଇଥିବାରୁ ନୁହେଁ । ଅନ୍ୟ କଥାରେ <u>୨ୟ ରାମଚନ୍ଦ୍ର ଆଦ୍ୟସେବକ ହେବାକୁ ଅଯୋଗ୍ୟ ହୋଇଥିବାରୁ ରାଜଗାଦିଚ୍ୟୁତ ନ ହୋଇ, ପ୍ରଥମେ ରାଜଗାଦିଚ୍ୟୁତ ହୋଇଥିବାରୁ ହିଁ ସେ କାରଣରୁ ଆଦ୍ୟସେବକ ହେବାକୁ ଅଯୋଗ୍ୟ ହୋଇଥିଲେ ।</u>

ଅବଶ୍ୟ ସେତେବେଳେ ଓଡିଶାର ବହୁ ରକ୍ଷଣଶୀଳ ହିନ୍ଦୁ ଓ ବିଶେଷ ଭାବରେ ରକ୍ଷଣଶୀଳତାର ପୀଠ ପୁରୀର ଷୋଳଶାସନର ବ୍ରାହ୍ମଣମାନଙ୍କ ମଧ୍ୟରୁ ଅଧିକାଂଶ ଧର୍ମଗତ କାରଣରୁ, ବିଶେଷ ଭାବରେ ସେ ଏକ ମୁସଲମାନ ରମଣୀଙ୍କୁ ବିବାହ କରିଥିବାରୁ, ତାଙ୍କର ଏହି ରାଜଗାଦିଚ୍ୟୁତିକୁ ବିରୋଧ କରିନଥିବେ ବୋଲି ଜନଶ୍ରୁତି ଭିତ୍ତିକ ଚକ୍ରଧର ମହାପାତ୍ରଙ୍କ ଆଲୋଚନାରୁ ଧାରଣା ହୁଏ (ଦ୍ର: ମହାପାତ୍ର, ଚକ୍ରଧର, ୧୯୬୯, ୨ୟ ଖଣ୍ଡ; ୧୯୮୯, ପୃ.୧୬୧-୨୩୩) । ତାହା ସତ୍ୟ ହୋଇପାରିଥାଏ (ଏ ସମ୍ପର୍କରେ ଅଧିକ ଆଲୋଚନାପାଇଁ ଦ୍ର : Dash, G. N., 2001, pp. 245-46.) । କିନ୍ତୁ ତା ଏକ ସ୍ୱତନ୍ତ୍ର ବିଷୟ ଓ ଏଠାରେ ଅବାନ୍ତର । ତାଙ୍କର ରାଜଗାଦିଚ୍ୟୁତିକୁ ଓଡିଶାର ବହୁ ରକ୍ଷଣଶୀଳ ହିନ୍ଦୁ ବିରୋଧ ନ କରିବାର ସମ୍ଭାବନା ଦୃଷ୍ଟେ କଟକର ସୁବାଦାର ୨ୟ ରାମଚନ୍ଦ୍ରଙ୍କୁ ପଦଚ୍ୟୁତ କରିବାପାଇଁ ଅନୁପ୍ରେରିତ ହୋଇଥିବେ ବୋଲି ବି ମନେକରାଯାଇପାରେ । ମୋଟଉପରେ ୨ୟ ରାମଚନ୍ଦ୍ର, ମୁସଲମାନ୍ ରମଣୀଙ୍କୁ ବିବାହ କରି ଜାତିଚ୍ୟୁତ ତଥା ଧର୍ମଚ୍ୟୁତ ହୋଇ ଜଗନ୍ନାଥ ମନ୍ଦିରର ପ୍ରବେଶାଧିକାରରୁ ଓ ଜଗନ୍ନାଥଙ୍କ ଆଦ୍ୟସେବକ ପଦରୁ ବଞ୍ଚିତ ହୋଇଥିବାରୁ ତାଙ୍କୁ ଜଗନ୍ନାଥ ଦର୍ଶନ ଓ ସେବାଅର୍ଚ୍ଚନାର ସୁଯୋଗ ଦେବାପାଇଁ ସିଂହଦ୍ୱାରରେ ପତିତପାବନ ମୂର୍ତ୍ତି ପ୍ରତିଷ୍ଠାର ପ୍ରଶ୍ନ ଆଦୌ ଉଠେ ନାହିଁ । (ରାଣୀଙ୍କ ସ୍ମାରକପତ୍ର ପ୍ରସଙ୍ଗରେ କୌଣସି ଅଭିମତ ବ୍ୟକ୍ତ

କରିନଥିଲେ ମଧ୍ୟ ପୂର୍ବେ କେଦାର ନାଥ ମହାପାତ୍ର ଓ ଚକ୍ରଧର ମହାପାତ୍ର ବି ୨ୟ ରାମଚନ୍ଦ୍ର ଜଣେ ମୁସଲମାନ ରମଣୀଙ୍କୁ ବିବାହ କରିଥିବା ଜନଶ୍ରୁତିକୁ ଗ୍ରହଣ କରିଥିଲେ; କିନ୍ତୁ ପ୍ରଭାତ ମୁଖର୍ଜୀଙ୍କ ପରି ସେ ହିନ୍ଦୁଧର୍ମଚ୍ୟୁତ ହୋଇଥିଲେ ବୋଲି ସେମାନେ ସ୍ୱୀକାର କରିନାହାଁନ୍ତି, ଯାହା ଏ ପ୍ରବନ୍ଧର ପ୍ରାରମ୍ଭରେ ସୂଚିତ ।) ମୋଟଉପରେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ 'ମାଦଳାପାଞ୍ଜି'ର ବିବରଣ ବେଶ୍ କିଛି ପରିମାଣରେ 'ରିୟାଜ୍-ଉସ୍-ସାଲାତିନ୍'ଦ୍ୱାରା ସମର୍ଥିତ ତେଣୁ ପ୍ରାମାଣିକ । କିନ୍ତୁ ତାହା ସହ ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶର କୌଣସି ସାମଞ୍ଜସ୍ୟ ନାହିଁ । ବରଂ ସେଥିରେ ବିପରୀତ କଥା ହିଁ ସ୍ଥାନ ପାଇଛି, ଯଥା ୨ୟ ରାମଚନ୍ଦ୍ର ଆଦ୍ୟସେବକ ପଦକୁ ଅଯୋଗ୍ୟ ହେବାରୁ ହିଁ ଖୋର୍ଦ୍ଧା ରାଜ୍ୟର ରାଜା ହେବାକୁ ଅଯୋଗ୍ୟ ହେଲେ ବୋଲି କୁହାଯାଇଛି । ତେଣୁ ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶର ପ୍ରାମାଣିକତାକୁ ସନ୍ଦେହ କରିବାର ଯଥେଷ୍ଟ କାରଣ ରହିଛି ।

ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶର ପ୍ରାମାଣିକତା ବିଚାରରେ ଦ୍ୱିତୀୟ ପ୍ରଶ୍ନଟି ହେଉଛି, ଜାତିଧର୍ମଚ୍ୟୁତ, ପତିତ ଓ ଜଗନ୍ନାଥ ମନ୍ଦିରର ପ୍ରବେଶାଧିକାରରୁ ବଞ୍ଚିତ ୨ୟ ରାମଚନ୍ଦ୍ରଙ୍କୁ ଜଗନ୍ନାଥଙ୍କ ଦର୍ଶନ ଓ ସେବାର ସୁଯୋଗ ଦେବାପାଇଁ ସିଂହଦ୍ୱାର ଗୁମଟରେ ପତିତପାବନ ମୂର୍ତ୍ତି ସ୍ଥାପନର ପ୍ରଶ୍ନ । ପୂର୍ବୋକ୍ତ 'ବାଲିଗାଁ ଦାସିଆ ଭାଗବତ', 'ସୈର ମୁତାକ୍ଷରୀନ' ଓ 'ରିୟାଜ୍-ଉସ୍-ସାଲାତିନ୍'ରେ ଭୋଇ ୨ୟ ରାମଚନ୍ଦ୍ର ଜାତିଚ୍ୟୁତ ହୋଇଥିବାର ପ୍ରତ୍ୟକ୍ଷ ବା ପରୋକ୍ଷ ସୂଚନା ଥିଲେ ହେଁ ସେଥିରେ ପତିତପାବନ ମୂର୍ତ୍ତି ସମ୍ପର୍କୀୟ କୌଣସି ସୂଚନା ମିଳେନାହିଁ । ଶେଷରେ କେବଳ ହିନ୍ଦୁ ଧର୍ମରୁ ପତିତ ୨ୟ ରାମଚନ୍ଦ୍ରଙ୍କ ଦର୍ଶନ ଓ ସେବାଅର୍ଚ୍ଚନା ଉଦ୍ଦେଶ୍ୟରେ ଏ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲେ ତାଙ୍କ ପରେ ହୁଏତ ଏ ମୂର୍ତ୍ତିର ବିସର୍ଜନ ହୋଇଥାଆନ୍ତା । କିନ୍ତୁ ଏ ମୂର୍ତ୍ତି ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ । ଏଥିରୁ ମନେହୁଏ ରାଣୀ ସୂର୍ଯ୍ୟମଣିଙ୍କ ସ୍ମାରକପତ୍ରରେ ୨ୟ ରାମଚନ୍ଦ୍ରଙ୍କ ଦର୍ଶନ ଓ ସେବାଅର୍ଚ୍ଚନା ପାଇଁ ଏ ମୂର୍ତ୍ତି ପ୍ରତିଷ୍ଠିତ ହେବାର ଯେଉଁ ବିବରଣ ଦିଆଯାଇଛି, (ତଥା ତାହାକୁ ପ୍ରମାଣିତ କରିବାପାଇଁ 'ମାଦଳାପାଞ୍ଜି'ରୁ ଯେଉଁ ତଥାକଥିତ ଉଦ୍ଧୃତାଂଶ ଦିଆଯାଇଛି) ତାହାର କୌଣସି ଐତିହାସିକ ଭିତ୍ତିଭୂମି ନଥିଲା । ଏଠାରେ ପ୍ରସଙ୍ଗାନୁରୋଧରେ କୁହାଯାଇ ପାରେ ଯେ ୨ୟ ରାମଚନ୍ଦ୍ରଙ୍କ ରାଜତ୍ୱରେ ଗୁଣ୍ଡିଚା ମଣ୍ଡପଠାରେ ଏକ ଦଧିବାମନ ମୂର୍ତ୍ତି ପ୍ରତିଷ୍ଠାର ବିବରଣ ଅଛି (ଦ୍ର : ମାଦଳାପାଞ୍ଜି, ୧୯୪୦, ପୃ. ୭୭) । ଏହା ସହ ବଡ଼ଦେଉଳ ସିଂହଦ୍ୱାର ଗୁମଟରେ ପ୍ରତିଷ୍ଠିତ ପତିତପାବନ ମୂର୍ତ୍ତିର କୌଣସି ସମ୍ପର୍କ ନାହିଁ ।

ଅବଶ୍ୟ କାହିଁକି ଓ ଠିକ୍ କେବେ ଏହି ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା, ତାହା ନିର୍ଦ୍ଦିଷ୍ଟ ଭାବରେ ନିର୍ଣ୍ଣୟ କରିବା ପାଇଁ କୌଣସି ପ୍ରମାଣ ଏ ଯାବତ ଆବିଷ୍କାର କରାଯାଇ ପାରିନାହିଁ । କେଦାରନାଥ ମହାପାତ୍ର, "ପରିଣାମରେ ରାଜ୍ୟଭ୍ରଷ୍ଟ ରାମଚନ୍ଦ୍ର ଦେବ ସ୍ୱୀୟ ସାମନ୍ତ ନରସିଂହପୁର ରାଜାଙ୍କ ନିକଟରେ ଆଶ୍ରୟ ନେଉଥିବା ସମୟରେ ପ୍ରାଣତ୍ୟାଗ କରିଥିଲେ" (ଦ୍ର:ମହାପାତ୍ର, କେଦାରନାଥ, ୧୯୬୯, ପୃ.୧୬୯) ବୋଲି କହିଥିଲେ ମଧ୍ୟ ଅନ୍ୟତ୍ର ୨ୟ ରାମଚନ୍ଦ୍ର ଦେବ ହିନ୍ଦୁଧର୍ମଚ୍ୟୁତ ହୋଇଥିବା ବିଷୟକୁ ଅସ୍ୱୀକାର କରିବା ପ୍ରସଙ୍ଗରେ କହନ୍ତି, "ସେ ଜଗନ୍ନାଥ ଦର୍ଶନରୁ ବଞ୍ଚିତ ହୋଇ ସିଂହଦ୍ୱାରରେ ପ୍ରତିଷ୍ଠିତ ପତିତପାବନ ମୂର୍ତ୍ତି ଦର୍ଶନଦ୍ୱାରା ଶେଷଜୀବନ ଅତିବାହିତ କରିଥିବାର ଯେଉଁ କିମ୍ବଦନ୍ତୀ ପ୍ରଚଳିତ ତାହା ତାଙ୍କ ହିନ୍ଦୁତ୍ୱକୁ ସମର୍ଥନ କରେ ।" (ମହାପାତ୍ର, କେଦାରନାଥ, ୧୯୭୯, ପୃ୧୮୮) । ମନେହୁଏ ଏପରି ବକ୍ତବ୍ୟ/ଉକ୍ତି ମାଧ୍ୟମରେ ଏପରି ଏକ 'ପୁରୁଣା' କିମ୍ବଦନ୍ତୀ ଅଛି ବୋଲି ସ୍ୱୀକାର କରିବା ସହ ସେ ଯେପରି ରାଣୀଙ୍କ ସ୍ମାରକପତ୍ରରେ ଥିବା ଦ୍ୱିତୀୟ ବକ୍ତବ୍ୟ ଓ ତାହା ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶଟିକୁ ବି ଗ୍ରହଣ କରନ୍ତି, ଯଦିଓ କିନ୍ତୁ ଠିକ୍ କେବେ ଅର୍ଥାତ୍ ୨ୟ ରାମଚନ୍ଦ୍ରଙ୍କ ପୂର୍ବେ ବା ତାଙ୍କ ସମୟରେ ଏ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା ସେ ବିଷୟରେ ସ୍ପଷ୍ଟ ଭାବରେ କିଛି କହିନାହାଁନ୍ତି । ପୁଣି କେବଳ କାହିଁକି ଏ ମୂର୍ତ୍ତିର ପ୍ରତିଷ୍ଠା କରାଯାଇଥିବ, ଏଇ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ପ୍ରଭାତ ମୁଖର୍ଜୀ ମଧ୍ୟ ଅନୁମାନ କରି କହନ୍ତି, "The statement of the Rani was wrong. Ramachandra Deva II alias Hafiz Qadir was released from the imprisonment after his conversion. After his death, Mir Habib, dewan of Murshid Quli Khan II, placed Padmanabha Deba, Raja of Patia, on the throne. He ruled for four years. The throne was then seized by Bira Kesari Deva, son of Ramachandra Deva II. The Dowager Rani also wrote that Ramachandra Deva, even after his conversion to Islam, expressed the desire to worship Jagannath. So the image 'Patita Pabana' was set up near the main gate of the Temple for Durshan by the fallen Raja. It appears that the Patita Pabana image was set up for Durshan by the low caste people, who were not allowed to enter the Temple." (Mukherjee, Prabhat, 1977, p.377 - 378, foot note.) । ଅର୍ଥାତ୍ ରାଣୀଙ୍କ ସ୍ମାରକପତ୍ରରେ ଥିବା ଦ୍ୱିତୀୟ ବକ୍ତବ୍ୟକୁ – ଅବଶ୍ୟ ବିନା ପ୍ରମାଣରେ – ଭ୍ରମାତ୍ମକ ବୋଲି କହି ସେ

ତାହା ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶଟିକୁ ଗ୍ରହଣ କରିବାପାଇଁ କୁଣ୍ଠିତ ବୋଲି ମନେହୁଏ । ପୁଣି ନିର୍ଦ୍ଦିଷ୍ଟ କୌଣସି ପ୍ରମାଣ ନ ଦର୍ଶାଇ କେବଳ ଅଛୁଆଁ ଜାତିର ଲୋକଙ୍କୁ ଜଗନ୍ନାଥ ଦର୍ଶନର ସୁଯୋଗ ଦେବାପାଇଁ ମନ୍ଦିର ସିଂହଦ୍ୱାର ଗୁମୁଟରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିବ ବୋଲି ସେ କହିଛନ୍ତି । ପୁଣି ପ୍ରକୃତରେ ଠିକ୍ କେବେ - ଅର୍ଥାତ୍ ୨ୟ ରାମଚନ୍ଦ୍ରଙ୍କ ପୂର୍ବେ, ପରେ ବା ତାଙ୍କ ରାଜତ୍ୱକାଳରେ - ପତିତପାବନଙ୍କର ପ୍ରତିଷ୍ଠା ହୋଇଥିଲା ବା ହୋଇଥିବ ସେ ସମ୍ପର୍କରେ ବି ସମ୍ପୂର୍ଣ୍ଣ ଭାବରେ ନିରବ ରହିଛନ୍ତି । ତେଣୁ ଏହା କିଛି ପରିମାଣରେ ଏକ ଉପରଠାଉରିଆ ବକ୍ତବ୍ୟ ହୋଇପଡି ତାର ଗୁରୁତ୍ୱ ହରାଇଛି ।

ତେବେ ଦିବାକର ଦାସଙ୍କ ଲିଖିତ 'ଜଗନ୍ନାଥ ଚରିତାମୃତ'ର (ବା 'ଜଗନ୍ନାଥମୃତ'ର) ବିଂଶ ଅଧ୍ୟାୟରେ ଅଛି:

"ଆଦ୍ୟେଣ ସିଂହଦ୍ୱାର ସ୍ଥାନ ।
ପତିତପାବନ ଦର୍ଶନ ।।" ('ଜଗନ୍ନାଥ ଚରିତାମୃତ', ୨୦/୩)

ଏଠାରେ ଉଲ୍ଲିଖିତ 'ପତିତପାବନ' ସିଂହଦ୍ୱାରରେ ପ୍ରତିଷ୍ଠିତ ପୂର୍ବୋକ୍ତ ପତିତପାବନଙ୍କ ବ୍ୟତୀତ ଆଉ କେହି ନୁହଁନ୍ତି । 'ଜଗନ୍ନାଥ ଚରିତାମୃତ' ରଚନାର ସମୟ ୧୭ଶ ଶତକର ୩ୟ ଦଶକ ବୋଲି ସ୍ଥିର କରାଯାଇଅଛି । ଅନ୍ତତଃ ଏହା ୧୭ଶ ଶତକର ମଧ୍ୟଭାଗର ପରବର୍ତ୍ତୀ ନୁହେଁ (ମହାପାତ୍ର, କେଦାରନାଥ, ୧୯୬୯, ପୃ.୮୮ ଓ ଦାସ ସର୍ବେଶ୍ୱର, ୧୯୬୩, ପୃ. ୬୩୫) । ଏଥିରୁ ଏତିକି ଜଣାଯାଏ ଯେ, ଭୋଇ ୨ୟ ରାମଚନ୍ଦ୍ରଙ୍କ ଅନ୍ତତଃ ଶହେବର୍ଷ ପୂର୍ବେ ଜଗନ୍ନାଥ ମନ୍ଦିର ସିଂହଦ୍ୱାର ଗୁମଟରେ ପତିତପାବନ ବିରାଜିତ ଥିଲେ । ତେଣୁ ଭୋଇ ୨ୟ ରାମଚନ୍ଦ୍ରଙ୍କ ସମୟରେ ଏହି ମୂର୍ତ୍ତି ପ୍ରତିଷ୍ଠିତ ହେବାର ପ୍ରଶ୍ନ ଉଠେନାହିଁ ଓ 'ମାଦଳାପାଞ୍ଜି' ରେ ଏହି ବିବରଣ ସ୍ଥାନ ପାଇଥିବାର ସମ୍ଭାବନା ଆହୁରି ହ୍ରାସ ପାଏ । ଏ ହେତୁ ରାଣୀ ସୂର୍ଯ୍ୟମଣିଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶ ପ୍ରକୃତରେ 'ମାଦଳାପାଞ୍ଜି'ର ଉଦ୍ଧୃତାଂଶ ନୁହେଁ ଓ ତାହା ବି ଏକ ଜାଲ ଉଦ୍ଧୃତାଂଶ ବୋଲି ଧାରଣା ଆହୁରି ଦୃଢୀଭୂତ ହୁଏ ।

ଠିକ୍ କେବେ ଏ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା, ତାହା କହିବା ସମ୍ଭବ ନ ହେଲେ ହେଁ ଏ ପ୍ରସଙ୍ଗରେ ଏତିକି ସୂଚାଇଦେବା ଆବଶ୍ୟକ ଯେ ସପ୍ତଦଶ ଶତାବ୍ଦୀର ବହୁ ପୂର୍ବରୁ ଜଗନ୍ନାଥଙ୍କ ଉପରେ ପତିତପାବନ ବିଭାବର ଆରୋପ କରାଯାଇଥିଲା । ଅନ୍ୟ କଥାରେ ଜଗନ୍ନାଥ ପତିତପାବନ- ଏଇ ଧାରଣା ସପ୍ତଦଶ ଶତକର ପୂର୍ବର । ପଣ୍ଡିତ ନୀଳକଣ୍ଠଙ୍କ ମତରେ ଅବଶ୍ୟ ଜଗନ୍ନାଥ ପତିତପାବନ ନୁହଁନ୍ତି ବା ହେବା ଉଚିତ ନୁହେଁ (ଦାସ,

ନୀଳକଣ୍ଠ, ୧୯୫୧,ପୃ.୧୨୫-୧୩୩) । କିନ୍ତୁ ଅନ୍ତତଃ ସାରଳାଦାସଙ୍କ ସମୟରୁ ଜଗନ୍ନାଥଙ୍କୁ ପତିତପାବନ ରୂପେ ଗ୍ରହଣ କରାଯାଇଅଛି ।

ସାରଳା ଦାସ (୧୫ଶ ଶତକ) ଲେଖିଛନ୍ତି:

"ଜୟ ପ୍ରଭୁ ଚକାଡ଼ୋଳା ତ୍ରଇଲୋକ ପିତା ।
ଜୟ ପତିତପାବନ ପାପୀ ତ୍ରାଣ କର୍ତ୍ତା ।।"

(ସାରଳା ମହାଭାରତ, କାଇଁଶିକା ପର୍ବ, ଦ୍ର: ମହାପାତ୍ର, କେଦାରନାଥ, ୧୯୮୨, ପୃ. ୮୯)

"ବଡ଼ଦେଉଳେ ବସିଛ ହୋଇ ବଜ୍ରସେହ୍ନା ।
ପତିତପାବନ ବୋଲି ଉଠାଇଛ ବାନା ।।"

(ଦ୍ରଷ୍ଟବ୍ୟ: ସାହୁ, ବାସୁଦେବ (ସୁବ୍ରତ), ୧୯୮୧, ପୃ. ୭୯)

ଯଶୋବନ୍ତ ଦାସ (୧୬ଶ ଶତକ) ଲେଖିଛନ୍ତି:

"କୋଟି କୋଟି ପତିତପାବନ ଦେବହରି ।
ତିନି ଭୁବନରେ ନାଥ ନୀଳାଦ୍ରିବିହାରୀ ।।"

(ଶିବସ୍ୱରୋଦୟ, ପୃ.୪୬୯)

(ଶିବ ସ୍ୱରୋଦୟ, ଦ୍ର: ମହାପାତ୍ର, କେଦାରନାଥ, ୧୯୮୨, ପୃ.୯୨)

ରାଜା ଗୋବିନ୍ଦ ଭଞ୍ଜ (୧୬ଶ ବା ୧୭ଶ ଶତକ) ଲେଖିଛନ୍ତି:

"ପତିତପାବନ ଚରଣ ତୋହର ।
ତେଣୁ କରିବାକୁ ଭରସା ହୋହର ।।"

(ଶ୍ରୀ ଚରଣ ସୁଧାନିଧି, ପୃ.୩୧୯)

ଚାନ୍ଦଦାସ (୧୬ଶ ଶତକର ଶେଷ) ଲେଖିଛନ୍ତି :

"ଛିଦ୍ର ମତି ଚାଦ୍ର ତାହା ଭାବେ ଭଣଇ ।।
ପତିତପାବନ ମତେ କରିବା ତ୍ରାହି ।।"

(ଗୋପୀଚନ୍ଦନ ୪/୭୫)

ଉପେନ୍ଦ୍ର ଭଞ୍ଜ (୨ୟ ରାମଚନ୍ଦ୍ରଙ୍କ ପୂର୍ବବର୍ତ୍ତୀ ରାଜା ଦିବ୍ୟସିଂହ ଦେବଙ୍କ ସମସାମୟିକ) ଲେଖିଛନ୍ତି :

"ସ୍ନାନ ଯେ ଗୁଣ୍ଡିଚା ବେନି ସ୍ୱୟଂଲୀଳା ଯାର ।
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ।।"

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ୧/୨୪)

ଦୀନକୃଷ୍ଣ ଦାସ (ଉପେନ୍ଦ୍ର ଭଞ୍ଜଙ୍କ ସମସାମୟିକ) ଲେଖିଛନ୍ତି :

"ଭୃତ୍ୟଜନ ବତ୍ସଳ ସେ ଅନାଥ ପାଇଁ ।
ପତିତପାବନ ବାନା ଅଛନ୍ତି ବହି ॥"

(ଜଗମୋହନ ଚାନ୍ଦ ୧/୫୮)

ଓ

"ପତିତ ଗତି ହୋଇ
ପତିତ ଜନ ଠାଇଁ
ଏଡ଼େ ନିର୍ଦ୍ଦୟ କାହିଁ ପାଇଁ ।"

(ଆରତତ୍ରାଣ ଚଉତିଶା ୨/୧)

ଅବଶ୍ୟ ୧୭ଶ ଶତକର ପ୍ରାରମ୍ଭରେ ବଙ୍ଗଭାଷାରେ ଲିଖିତ କୃଷ୍ଣଦାସ କବିରାଜଙ୍କ 'ଚୈତନ୍ୟ ଚରିତାମୃତ'ରେ ପତିତପାବନ ଉପାଧି ଚୈତନ୍ୟଙ୍କ ଉପରେ ଆରୋପିତ ହୋଇଥିବା ଦେଖିବାକୁ ମିଳେ । ଯଥା :

"ପତିତପାବନ ତୁମି ସବେ ତୋମା ବିନେ
***
ପତିତପାବନ ନାମ ତବେ ଯେ ସଫଲ ॥"

(ଚୈ, ଚରିତାମୃତ, ମଧ୍ୟ, ୧ମ, ୧୮୮-୮୯)

ଏହା ଷଡ଼୍‌ଗୋସ୍ୱାମୀମାନଙ୍କ ମଧ୍ୟରୁ ଗୋସ୍ୱାମୀଭ୍ରାତାଯୁଗଳ ରୂପ ଓ ସନାତନଙ୍କ ମୁହଁରେ ଦିଆଯାଇଛି । ଏହି ପତିତପାବନ ଉପାଧି ପ୍ରଥମେ ଜଗନ୍ନାଥଙ୍କ ଠାରେ ଆରୋପିତ ହୋଇ ସାରିବା ପରେ ଓ ଜଗନ୍ନାଥ ଭକ୍ତଗଣ ଜଗନ୍ନାଥଙ୍କୁ ପତିତପାବନ ରୂପରେ ଦେଖିସାରିବା ପରେ ସେଇ ପ୍ରଭାବରେ ଚୈତନ୍ୟଙ୍କ ଭକ୍ତମାନେ ଚୈତନ୍ୟଙ୍କୁ ମଧ ପତିତପାବନ ରୂପରେ ଦେଖିଥିଲେ ।

ମୋଟ ଉପରେ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ଗୁମଟରେ ବିରାଜିତ ପତିତପାବନ ମୂର୍ତ୍ତି ଭୋଇ ୨ୟ ରାମଚନ୍ଦ୍ର ଦେବଙ୍କ ଅନ୍ତତଃ ଶହେ ବର୍ଷ ପୂର୍ବେ ଦିବାକର ଦାସଙ୍କ ସମୟରେ ତ ବିଦ୍ୟମାନ ଥିଲେ, ତେବେ ଆହୁରି ଅନେକ ପୂର୍ବର ବି ହୋଇପାରିଥାନ୍ତି । କାରଣ, ଜଗନ୍ନାଥ ଯେ ପତିତପାବନ, ଏ ଧାରଣା ଆହୁରି ପ୍ରାଚୀନ ।

ପୁଣି ଅଛୁଆଁ ଜାତିମାନଙ୍କୁ ଜଗନ୍ନାଥ ଦର୍ଶନର ସୁଯୋଗ ଦେବାପାଇଁ ଚୈତନ୍ୟ ଏହି ମୂର୍ତ୍ତି ପ୍ରତିଷ୍ଠା କରାଇଥିଲେ ବୋଲି ମଧ କୁହାଯାଏ । (ଦ୍ର : ମିତ୍ର, ନଗେନ୍ଦ୍ର ନାଥ, ୧୩୨୨, ପୃ. ୭୬; ସରକାର, ଗୁରୁଦାସ, ୧୯୨୧, ପୃ. ୧୨ ଓ ବିଦ୍ୟାବିନୋଦ, ସୁନ୍ଦରାନନ୍ଦ,

୧୯୫୧, ପୃ. ୭୮)। ସେହିପରି ମନ୍ଦିରର ପ୍ରବେଶ ଅଧିକାରରୁ ବଞ୍ଚିତ ଭକ୍ତ ସାଲବେଗଙ୍କ ଆର୍ତ୍ତି ସହ୍ୟ କରି ନ ପାରି ଜଗନ୍ନାଥ ସ୍ୱୟଂ ସିଂହଦ୍ୱାରରେ ଆବିର୍ଭୂତ ହୋଇଥିଲେ ଓ ସେହିଦିନଠାରୁ ସେଠାରେ ଅର୍ଚ୍ଚାମୂର୍ତ୍ତି ରୂପେ ଅଧିଷ୍ଠିତ ଅଛନ୍ତି ବୋଲି ମଧ କୁହାଯାଏ। (ଦ୍ର: ବିଦ୍ୟାବିନୋଦ, ସୁନ୍ଦରାନନ୍ଦ, ୧୯୫୧,ପୃ.୭୮-୭୯; Mukherji, Prasenjit, 1985, p.26)। ଅବଶ୍ୟ ଏ ଦୁଇଟି ଜନଶ୍ରୁତିର କିଛି ଐତିହାସିକ ଭିତ୍ତିଭୂମି ଥିବାର ଜଣାଯାଇ ନାହିଁ। ଏ ଜନଶ୍ରୁତି ଦୁଇଟିଯାକ ମଧ ହୁଏତ ଅର୍ବାଚୀନ। କାରଣ କୌଣସି ମଧ୍ୟଯୁଗୀୟ ଗ୍ରନ୍ଥରେ ଏ ମଧରୁ ଗୋଟିକର ବି ସୂଚନା ମିଳେନାହିଁ। ଅବଶ୍ୟ ଏ ଦୁଇଟିଯାକ ଜନଶ୍ରୁତିରେ ଅଛୁଆଁ ଜାତିକୁ ପ୍ରାଧାନ୍ୟ ଦିଆଯାଇଛି। ପ୍ରଭାତ ମୁଖର୍ଜୀ ମଧ୍ୟ ଠିକ୍ ତାହା ହିଁ ଅନୁମାନ କରିଥିବେ ବୋଲି ପୂର୍ବେ କୁହାଯାଇଛି।

ଅବଶ୍ୟ ଟିକିଏ ତଳେଇ କରି ବିଶ୍ଳେଷଣ କଲେ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ଗୁମଟରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ପାଇଁ ଦୁଇଟି ସମ୍ଭାବ୍ୟ କାରଣ ଦିଆଯାଇ ପାରେ:

(୧) ଅସ୍ପୃଶ୍ୟ ବା ଅଛୁଆଁ ଜାତିମାନଙ୍କୁ ଜଗନ୍ନାଥ ଦର୍ଶନ ଓ ସେବାଅର୍ଚ୍ଚନାର ସୁଯୋଗ ଦେଇ ହିନ୍ଦୁଧର୍ମ ପ୍ରତି ସେମାନଙ୍କ ବିରାଗଭାବକୁ ତଥା ସେମାନେ ମୁସଲମାନ ଧର୍ମ ଗ୍ରହଣ କରିବାର ସମ୍ଭାବନାକୁ ପରୋକ୍ଷ ଭାବରେ ହ୍ରାସ କରାଇବା ଉଦ୍ଦେଶ୍ୟରେ ଏହା କରାଯାଇ ପାରିଥାଏ। ଏ ପ୍ରସଙ୍ଗରେ ସ୍ମରଣ କରିବା ଉଚିତ ଯେ ପଡୋଶୀ ବଙ୍ଗରେ ହିନ୍ଦୁଧର୍ମ ପ୍ରତି ବିରାଗବଶତଃ ବହୁ ଅଛୁଆଁ ଜାତିର ଲୋକେ ମୁସଲମାନ ଧର୍ମ ଗ୍ରହଣ କରିଥିଲେ। ତେଣୁ ଓଡ଼ିଶାର ହିନ୍ଦୁ ସମାଜର ନେତାମାନେ ଏ ସମ୍ପର୍କରେ ସଚେତନ ହୋଇ ପଡ଼ିଥିବା ଅସମ୍ଭବ ନୁହେଁ।

(୨) ମନ୍ଦିରର ସେବକପୂଜକମାନେ, ବିଶେଷ ଭାବରେ ପୂଜାପଣ୍ଡାମାନେ, ଯାତ୍ରୀମାନଙ୍କୁ ( ଓ ବିଶେଷ ଭାବରେ ସେମାନଙ୍କ ମଧ୍ୟରେ ଅଛୁଆଁ ଜାତିମାନଙ୍କୁ) ଏହି ମୂର୍ତ୍ତି ସେବା ଓ ଅର୍ଚ୍ଚନାର ସୁଯୋଗ ଦେଇ ନିଜର ଅର୍ଥୋପାର୍ଜନ ରୂପକ ସ୍ୱାର୍ଥସାଧନ ଉଦ୍ଦେଶ୍ୟରେ ଏହା କରାଇଥାଇ ପାରନ୍ତି।

ମୋଟ ଉପରେ ଏହି ଦୁଇଟିଯାକ କାରଣ ମଧରୁ ହୁଏତ ଗୋଟିଏ ବା ଦୁଇଟିଯାକ କାରଣ ସମ୍ମିଳିତ ଭାବରେ ମନ୍ଦିରର ସିଂହଦ୍ୱାର ଗୁମଟରେ ପତିତପାବନ ମୂର୍ତ୍ତି ପ୍ରତିଷ୍ଠାର ମୂଳରେ ଥିଲା ବୋଲି ଅନୁମାନ କରାଯାଇପାରେ।

ଶେଷରେ କେବେ ଓ କାହିଁକି ସିଂହଦ୍ୱାର ଗୁମଟରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା, ତା ନିର୍ଦ୍ଦିଷ୍ଟ ଭାବରେ କହିବା ସମ୍ଭବ ନ ହେଲେ ହେଁ ଏହା ଭୋଇ ୨ୟ ରାମଚନ୍ଦ୍ରଙ୍କ ବହୁ ପୂର୍ବରୁ ଓ ପ୍ରଧାନତଃ ଅଛୁଆଁ ଜାତିର ଲୋକମାନଙ୍କୁ ଜଗନ୍ନାଥ ଦର୍ଶନ

ଓ ସେବାଅର୍ଚ୍ଚନାର ସୁଯୋଗ ଦେବାପାଇଁ ଓ/ବା ମନ୍ଦିରର ସେବକ ପୂଜକମାନଙ୍କ ଅଧିକ ଅର୍ଥୋପାର୍ଜନରେ ସହାୟତା କରିବା ପାଇଁ ପ୍ରତିଷ୍ଠିତ ହୋଇଥିଲା ବୋଲି ନିରାପଦରେ ଗ୍ରହଣ କରାଯାଇ ପାରେ । ତେଣୁ ରାଣୀ ସୂର୍ଯ୍ୟମଣିଙ୍କ ସ୍ମାରକପତ୍ରର ଉପରୋକ୍ତ ୨ୟ ବକ୍ତବ୍ୟକୁ ସମର୍ଥନ କରିବାପାଇଁ 'ମାଦଳାପାଞ୍ଜି'ରୁ ଯେଉଁ ତଥାକଥିତ ଉଦ୍ଧୃତାଂଶ ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ ହୋଇଥିଲା, ତାହା ମଧ୍ୟ ପ୍ରକୃତରେ 'ମାଦଳାପାଞ୍ଜି'ର ନୁହେଁ ଓ ରାଣୀଙ୍କ ବକ୍ତବ୍ୟକୁ ସମର୍ଥନ କରିବାପାଇଁ ଉଦ୍ଦେଶ୍ୟପ୍ରଣୋଦିତ ଭାବରେ ପ୍ରସ୍ତୁତ କରାଯାଇଥିଲା ବୋଲି ଅନୁମିତ ହୁଏ । ତେଣୁ ରାଣୀ ସୂର୍ଯ୍ୟମଣିଙ୍କ ସ୍ମାରକପତ୍ରର ଉପରୋକ୍ତ ୨ୟ ବକ୍ତବ୍ୟଟିର କୌଣସି ଐତିହାସିକ ଭିତ୍ତି ନଥିଲା । ଯେତେଦୂର ସମ୍ଭବ ରାଣୀଙ୍କ ସ୍ମାରକପତ୍ର ପୂର୍ବରୁ ଏପରି ଜନଶ୍ରୁତି ମଧ୍ୟ ପ୍ରଚଳିତ ନଥିଲା ଓ ଏ କଥାଟି ଆଦୌ ଜଣା ନଥିଲା ।

ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶଟିର ପ୍ରାମାଣିକତା ବିଚାରରେ ତୃତୀୟ ପ୍ରଶ୍ନଟି ହେଉଛି, ୨ୟ ରାମଚନ୍ଦ୍ରଙ୍କ (ଓ ତାଙ୍କ ପରେ କିଛି କାଳପାଇଁ ପଦ୍ମନାଭଙ୍କ) ପରେ ଖୋର୍ଦ୍ଧାର ରାଜା ହୋଇଥିବା ବ୍ୟକ୍ତିଙ୍କ ପ୍ରକୃତ ନାମ କଣ ଥିଲା ଓ ସେ ୨ୟ ରାମଚନ୍ଦ୍ରଙ୍କ ପୁଅ ବା ନାତି ଥିଲେ ? ଅର୍ଥାତ୍ 'ବୀରକେଶରୀ' ବା 'ବି(ବୀ)ରକିଶୋର' ଏ ଦୁଇ ନାମ ମଧ୍ୟରୁ କେଉଁ ନାମଟି ଠିକ୍ ଓ ସେ ୨ୟ ରାମଚନ୍ଦ୍ର ଦେବଙ୍କର ପୁଅ ନା ନାତି ? ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ 'ମାଦଳାପାଞ୍ଜି'ର ବିବରଣ ଉପରେ ନିର୍ଭର କରି 'ମାଦଳାପାଞ୍ଜି'ର ଏହି ତଥାକଥିତ ଉଦ୍ଧୃତିଟି ସେଥିରେ ନ ଥିବାରୁ ତଥା ତା ସହ କଟକର ସଦର କାନୁନ୍‌ଗୋଙ୍କଦ୍ୱାରା ପାର୍ଶୀ ଭାଷାରେ ପ୍ରସ୍ତୁତ ଖୋର୍ଦ୍ଧାରାଜାଙ୍କ ବଂଶବୃକ୍ଷ ଭିତ୍ତିରେ ଜଗନ୍ନାଥ ମନ୍ଦିରର ପତ୍ରାବଳୀ ଉପରେ ବିଶେଷ ଅନୁଶୀଳନ କରିଥିବା ପ୍ରଭାତ ମୁଖର୍ଜୀ କହନ୍ତି, "The Rani did not actually quote from the *Madala Panji*. Ramachandra II continued to be the Raja even after his conversion till his death. The Panji clearly states that Bira Kesari Deva, son of Ramachandra Deva, drove away Padmanabha Deva, who uspered the throne after the death of Ramachandra II, and ascended the throne.(*Madala Panji*, Prachi Edition pp.76-77).

The Government should have consulted the Persian recoreds of Sudder Qanungo of Cuttack, containing the genealogy of the Khurda Rajas. These records were sent by the Collectore of Cuttack to the Settlement Commissioner with the letter No. 1869 dated 11 October

1809. According to this genealogical table Bir Kesari Deva, son of Ramachandra II, became Raja of Khurda in Umlee 1147 = 1739-40 A. D." (Mukherjee, Prabhat. 1977, p.379-80, f. n.) । ସେ 'ମାଦଳାପାଞ୍ଜି'ର ସେଇ ତଥାକଥିତ ଉଦ୍ଧୃତାଂଶପାଇଁ ଠିକ୍ ଜାଲ୍ ଶବ୍ଦ ବ୍ୟବହାର କରିନଥିଲେ ହେଁ, ତାହା ପ୍ରକୃତରେ 'ମାଦଳାପାଞ୍ଜି'ର ଉଦ୍ଧୃତାଂଶ ନୁହେଁ ବୋଲି ପ୍ରଭାତ ମୁଖର୍ଜୀ ଯାହା ସ୍ପଷ୍ଟ ଭାବରେ କହିଛନ୍ତି, ତାହା ଠିକ୍ । ପୁଣି ପରେ ଖୋର୍ଦ୍ଧାର ରାଜା ହୋଇଥିବା ବ୍ୟକ୍ତିଙ୍କ ନାମ 'ବୀରକେଶରୀ' ବୋଲି ଉଲ୍ଲେଖ କରି ତଥା ସେ ୨ୟ ରାମଚନ୍ଦ୍ରଙ୍କ 'ନାତି' ନୁହଁନ୍ତି, 'ପୁତ୍ର' ବୋଲି କହି ମଧ୍ୟ ସେ ଠିକ୍ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ।

ତେବେ 'ମାଦଳାପାଞ୍ଜି'ର ସେଇ ତଥାକଥିତ ଉଦ୍ଧୃତାଂଶରେ ଭ୍ରମାତ୍ମକ ଭାବରେ 'ବି(ବୀ)ରକିଶୋର' ନାମଟି ଓ ସେ ୨ୟ ରାମଚନ୍ଦ୍ରଙ୍କ ପୁଅ ନୁହଁନ୍ତି, ନାତି ବୋଲି କିପରି ଓ କେଉଁ କାରଣରୁ ସ୍ଥାନ ପାଇଲା ସେ ସମ୍ପର୍କରେ ମୁଖର୍ଜୀ କୌଣସି ଅନୁସନ୍ଧାନ କରିନାହାଁନ୍ତି । ପୁଣି ୨ୟ ରାମଚନ୍ଦ୍ରଙ୍କ ଠିକ୍ ମୃତ୍ୟୁ ପରେ ନୁହେଁ, ତାଙ୍କ ମୃତ୍ୟୁ ପୂର୍ବରୁ, କିଛି କାଳପାଇଁ କଟକର ସୁବାଦାରଙ୍କ ସହାୟତାରେ ପଦ୍ମନାଭ ଦେବ ଖୋର୍ଦ୍ଧାର ରାଜା ହୋଇଥିଲେ ବୋଲି ମଧ୍ୟ ପୂର୍ବେ ଉଦ୍ଧାର କରାଯାଇଥିବା ଆର୍ତ୍ତବଲ୍ଲଭ ମହାନ୍ତି ସମ୍ପାଦିତ 'ମାଦଳାପାଞ୍ଜି'ରୁ ଜଣାଯାଏ । ଅନ୍ୟ କଥାରେ ସେ ପ୍ରସଙ୍ଗରେ କିନ୍ତୁ ମୁଖର୍ଜୀ ଅନ୍ୟ କୌଣସି ପ୍ରମାଣ ନ ଦର୍ଶାଇ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ 'ମାଦଳାପାଞ୍ଜି'ରେ ଥିବା ସୁବାଦାରଙ୍କଦ୍ୱାରା ୨ୟ ରାମଚନ୍ଦ୍ର ରାଜଗାଦିଚ୍ୟୁତ ବା ରାଜ୍ୟଚ୍ୟୁତ ହୋଇଥିବା ବିବରଣୀକୁ ଗ୍ରହଣ କରିନାହାଁନ୍ତି । ଅବଶ୍ୟ ତାଙ୍କ ମତରେ ୨ୟ ରାମଚନ୍ଦ୍ର ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ରାଜା ଥିଲେ ଓ ଏପରି କହିବା ମାଧ୍ୟମରେ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶଟିରେ ଥିବା "ଏ ରାଜା ଜାତିଭ୍ରଷ୍ଟ ହେବାରୁ ଦେଉଳକୁ ଯାଇ ନ ପାରିବାରୁ ମହାପ୍ରଭୁଙ୍କ ସେବାକୁ ଅଯୋଗ୍ୟ" ହେଲେ ଅର୍ଥାତ୍ ୨ୟ ରାମଚନ୍ଦ୍ର ଆଦ୍ୟସେବକ ପଦକୁ ଅଯୋଗ୍ୟ ହେବାରୁ ରାଜଗାଦିକୁ ଅଯୋଗ୍ୟ ହେଲେ ପରି ବକ୍ତବ୍ୟକୁ ସେ ସ୍ୱୀକାର କରିବାପାଇଁ ପରୋକ୍ଷରେ କୁଣ୍ଠିତ ବୋଲି ମନେ ହୁଏ । ତେବେ ଠିକ୍ ସେଇ ସମ୍ପର୍କରେ ସ୍ପଷ୍ଟ ଭାବରେ କିଛି ନ କହି ପ୍ରଶ୍ନଟିକୁ ସେ ଯେପରି ଏଡାଇ ଦେଇଛନ୍ତି, ବୋଲି ଧାରଣା ବି ହୁଏ । କାରଣ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ 'ମାଦଳାପାଞ୍ଜି' ଅନୁଯାୟୀ ସୁବାଦାରଙ୍କଦ୍ୱାରା ୨ୟ ରାମଚନ୍ଦ୍ର ତ ରାଜଗାଦିଚ୍ୟୁତ ବା ରାଜ୍ୟଚ୍ୟୁତ ହୋଇଥିଲେ ବୋଲି ପୂର୍ବେ ଦେଖାଯାଇଛି । ତାହା 'ରିୟାଜ-ଉସ୍-ସାଲାତିନ୍'ଦ୍ୱାରା ପରୋକ୍ଷରେ ସମର୍ଥିତ କେବଳ ନୁହେଁ, ପୁଣି ପୂର୍ବେ ଉଦ୍ଧୃତ 'ବାଲିଗାଁ ଦାସିଆ ଭାଗବତ' ବା 'ଆଗତ ଭବିଷ୍ୟ'ର

"ଓଡ଼ିଶା ଛାଡ଼ି ରାଜା ଯିବ । ପଛିମେ ଗୋପ୍ୟାନ ହୋଇବ ॥"(ଦ୍ର : ମିଶ୍ର ନୀଳମଣି, ୧୯୨୮, ପୃ. ୭୩)

ପଙ୍‌କ୍ତିଦ୍ୱାରା ମଧ୍ୟ ପରୋକ୍ଷରେ ସମର୍ଥିତ । ତେଣୁ ୨ୟ ରାମଚନ୍ଦ୍ର ଆଦ୍ୟସେବକ ପଦକୁ ଅଯୋଗ୍ୟ ହେବାରୁ ରାଜଗାଦିକୁ ଅଯୋଗ୍ୟ ହେଲେ ଅଥବା ରାଜଗାଦିଚ୍ୟୁତ ହେବାରୁ ଆଦ୍ୟସେବକପଦଚ୍ୟୁତ ହେଲେ ସେଇ ପ୍ରଶ୍ନର ସମାଧାନକୁ ମୁଖର୍ଜୀ ଯେପରି ଏଡାଇଦେଇଯାଇଛନ୍ତି । ପୂର୍ବେ ପତିତପାବନ ମୂର୍ତ୍ତି ପ୍ରସଙ୍ଗରେ ସେ ସେଥି ସମ୍ପର୍କିତ ପ୍ରଶ୍ନଟିକୁ ଏଡାଇ ଯାଇଥିବାର ଧାରଣା ବି ହୁଏ । ତାର ଏକ ମାତ୍ର କାରଣ ତାଙ୍କର ଅଭିମତ କେତେକ ପରିମାଣରେ ଠିକ୍ ଥିଲେ ମଧ୍ୟ ଉଭୟ କ୍ଷେତ୍ରରେ ପ୍ରମାଣଭିତ୍ତିକ ନ ଥିଲା, ଥିଲା ସମ୍ପୂର୍ଣ୍ଣ ଭାବରେ ଅନୁମାନଭିତ୍ତିକ । ତେଣୁ ତାଙ୍କ ଅଭିମତ – ଅନ୍ତତଃ କିଛି ପରିମାଣରେ – ତାର ଗୁରୁତ୍ୱ ହରାଇଛି । କାରଣ ଉଭୟ କ୍ଷେତ୍ରରେ ପ୍ରମାଣଭିତ୍ତିକ ଅଭିମତ ଓ ଉପରୋକ୍ତ ପ୍ରଶ୍ନ ଦୁଇଟିର ସ୍ପଷ୍ଟ ଉତ୍ତର କେତେ ଗୁରୁତ୍ୱପୂର୍ଣ୍ଣ ତା ଏଇ ପ୍ରବନ୍ଧର ପରବର୍ତ୍ତୀ ଅଂଶରେ ସ୍ୱତଃ ସ୍ପଷ୍ଟ ହୋଇଯିବ ।

କିନ୍ତୁ କେବଳ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଙ୍କଳିତ 'ମାଦଳା ପାଞ୍ଜି' ଓ ସଦର କାନୁନ୍‌ଗୋଙ୍କଦ୍ୱାରା ପାର୍ଶୀ ଭାଷାରେ ପ୍ରସ୍ତୁତ ଖୋର୍ଦ୍ଧାରାଜାଙ୍କ ବଂଶବୃକ୍ଷ ବ୍ୟତୀତ, ବୀରକେଶରୀ ଦେବଙ୍କ ଲଳିତାପାଟପୁର ତଥା ଅନ୍ୟାନ୍ୟ ବହୁ ଅଭିଲେଖରେ ଓ 'ଭଞ୍ଜ ବଂଶାନୁଚରିତ' ଆଦିରେ ୨ୟ ରାମଚନ୍ଦ୍ରଙ୍କ ପରବର୍ତ୍ତୀ ରାଜାଙ୍କ ନାମ 'ବୀରକେଶରୀ' ଓ ସେ ୨ୟ ରାମଚନ୍ଦ୍ରଙ୍କ ପୁଅ ବୋଲି କୁହାଯାଇଛି (ଦ୍ର : 'ମାଦଳା ପାଞ୍ଜି' ୧୯୪୦, ପୃ. ୭୮; ମହାପାତ୍ର, କେଦାର ନାଥ, ୧୯୬୯, ପୃ. ୨୬୮–୭୩ ଓ ରାଜଗୁରୁ, ଶ୍ୟାମସୁନ୍ଦର, ୧୯୬୪, ପୃ. ୭୪) । ତେଣୁ ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶଟି ଯେ ଜାଲ୍, ତାହା ପ୍ରମାଣିତ ହୋଇଯାଏ ।

କିନ୍ତୁ କେବଳ ସେତିକି ନୁହେଁ, ରାଣୀ ସୂର୍ଯ୍ୟମଣିଙ୍କ ସ୍ମାରକପତ୍ର ସହ ସଂଯୋଜିତ ତଥାକଥିତ 'ମାଦଳାପାଞ୍ଜି'ର ଉଦ୍ଧୃତାଂଶଟି ଯେ ଜାଲ ତଥା ୧୯ଶ ଶତାବ୍ଦୀରେ ପ୍ରସ୍ତୁତ ତାର ଅନ୍ୟ ବଳିଷ୍ଠ ପ୍ରମାଣ ବି ଦିଆଯାଇପାରେ । କାରଣ ସେଥିରେ ଭ୍ରମକ୍ରମେ ୨ୟ ରାମଚନ୍ଦ୍ରଙ୍କ ପରବର୍ତ୍ତୀ ଖୋର୍ଦ୍ଧା ରାଜା 'ବୀରକେଶରୀ' ଦେବଙ୍କୁ 'ବି(ବୀ)ରକିଶୋର' ବୋଲି ଓ ସେ ୨ୟ ରାମଚନ୍ଦ୍ରଙ୍କ 'ପୁଅ' ହୋଇଥିଲେ ହେଁ ତାହାଙ୍କୁ ତାଙ୍କ 'ନାତି' ବୋଲି କୁହାଯାଇଥିବାରୁ ପ୍ରଶ୍ନ ଉଠେ, 'ମାଦଳାପାଞ୍ଜି'ର ଏହି ତଥାକଥିତ ଉଦ୍ଧୃତାଂଶଟିରେ ଏପରି ଭ୍ରମ କିପରି ଓ କାହିଁକି ସ୍ଥାନ ପାଇଲା ? ତାଙ୍କ ନାମ 'ବୀରକିଶୋର' ଓ ସେ

ରାମଚନ୍ଦ୍ରଙ୍କର ନାତି (ପୌତ୍ର) ଥିଲେ ବୋଲି ଭ୍ରମାତ୍ମକ ତଥ୍ୟ ଭବାନୀଚରଣଙ୍କ 'ପୁରୁଷୋତ୍ତମ ଚନ୍ଦ୍ରିକା'ରେ ମଧ ପୂର୍ବେ ଦିଆଯାଇଥିଲା।

"ଏଖାନେ ତାଁହାର ପୌତ୍ର ଅତି ଗୁଣଧାମ ।
ଭାଗୀରଥୀ କୁମାର ଆଁଛିଲ ଯାର ନାମ ।।
ସେ ଜନ ଲଇୟା ସବ ରାଜ ପରିବାର ।
ପୁରୀ ପରିତ୍ୟାଗ କରେ ଭାବିୟା ଅପାର ।।
ଆସି ସବାନ୍ଧବେ ସେ କାଜଲ ଆଠଗଡ ।
ବସତି କରେନ୍ ତଥା କରି ଏକ ଗଡ ।।

***

ଶୁନି ନୃପତିର ମୃତ୍ୟୁ ପାତ୍ର ମିତ୍ରଗଣ ।
ଭୂପତିର ପୌତ୍ରକେ ଦେନ ସିଂହାସନ ।
ଶ୍ରୀ ବୀର କିଶୋର ଦେବ ବିଖ୍ୟାତ ଭୁବନ ।" (ଦ୍ର : ପୁରୁଷୋତ୍ତମ ଚନ୍ଦ୍ରିକା, ୧୨୫୧ସାଲ୍, ପୃ. ୬୧) ।

ଭବାନୀଚରଣ ଓଡ଼ିଆ ନ ଥିବାରୁ ତାଳପତ୍ର ପୋଥିର ଓଡ଼ିଆ ଲିପି ପଢିବାରେ ଅସମର୍ଥ ଥିଲେ । ତେଣୁ ଭ୍ରମକ୍ରମେ ସେ 'ପୁତ୍ର' ଶବ୍ଦକୁ 'ପୌତ୍ର' ବୋଲି ଓ 'ବୀରକେଶରୀ' ନାମକୁ 'ବୀରକିଶୋର' ବୋଲି ପଢିଥିଲେ । ସେ ଏହିପରି ବହୁ ଭ୍ରମ କରିଛନ୍ତି ଯେପରି, ଉପରୋକ୍ତ ଉଦ୍ଧୃତାଂଶଟିରେ ମଧ୍ୟ 'କୋଦଳା ଆଠଗଡ'କୁ ସେ 'କାଜଲ ଆଠଗଡ' ବୋଲି ଉଲ୍ଲେଖ କରିଛନ୍ତି । ଅନ୍ୟତ୍ର ମଧ୍ୟ 'ଦିବ୍ୟସିଂହ' ନାମକୁ 'ଦ୍ରବ୍ୟସିଂହ' ବୋଲି ଓ ଗଙ୍ଗବଂଶର ରାଜା 'ଭାନୁଦେବ' ନାମକୁ ସେ ଭ୍ରମକ୍ରମେ ସର୍ବତ୍ର 'ବାସୁଦେବ' ବୋଲି ହିଁ ଉଲ୍ଲେଖ କରିଥିଲେ । ହଣ୍ଟର ମଧ 'ପୁରୁଷୋତ୍ତମ ଚନ୍ଦ୍ରିକା'ର ଅନୁସରଣ କରିଥିବାରୁ ସେପରି ଭ୍ରମ କରି 'ବୀରକେଶରୀ' ନାମକୁ 'ବୀରକିଶୋର' ବୋଲି ଉଲ୍ଲେଖ କରିଛନ୍ତି (ଦ୍ର : Sahu, N. K. 1956, Part I. p.203.) । ଏପରି କି ୧୯ଶ ଶତାବ୍ଦୀରେ ଖୋର୍ଦ୍ଧା ରାଜ୍ୟ ଖାସ୍ ହେବା ପରଠାରୁ ରାଜବଂଶ ପୁରୀରେ ହିଁ ଅବସ୍ଥାନ କରୁଥିବାରୁ ଭାବାନୀଚରଣ ଭ୍ରମକ୍ରମେ ୧୮ଶ ଶତାବ୍ଦୀରେ ୨ୟ ରାମଚନ୍ଦ୍ରଙ୍କ ପୌତ୍ର (ପୁତ୍ର) ଭାଗିରଥୀକୁମାର ରାଜପରିବାର ସହ "ପୁରୀ ପରିତ୍ୟାଗ କରେ" ବୋଲି ବି ଲେଖିଥିଲେ । ତେଣୁ 'ମାଦଳାପାଞ୍ଜି'ର ଏପରି ଏକ 'ଜାଲ' ଉଦ୍ଧୃତାଂଶ ପ୍ରସ୍ତୁତ କରିବାରେ ନେତୃତ୍ୱ ନେଇଥିବା ବ୍ୟକ୍ତି (ରାଣୀ ସୂର୍ଯ୍ୟମଣିଙ୍କ ଆଇନ୍ ଉପଦେଷ୍ଟା ମଧୁବାବୁ?) ଉଭୟ ହଣ୍ଟର୍‌ଙ୍କ ଇତିହାସ ଓ ବିଶେଷଭାବରେ

'ଭବାନୀଚରଣ'ଙ୍କ 'ପୁରୁଷୋତ୍ତମ ଚନ୍ଦ୍ରିକା' ଉପରେ ନିର୍ଭର କରିଥିବାରୁ ହିଁ ଅଜ୍ଞାତସାରରେ ଏପରି ଭ୍ରମ କରିପକାଇଥିଲେ ବୋଲି ମନେହୁଏ । ଏଥିରୁ ଏହା 'ମାଦଳାପାଞ୍ଜି'ର ଅଂଶବିଶେଷ ତ ନୁହେଁ, ତା ପୁଣି ୧୯ଶ ଶତକରେ ହିଁ ପ୍ରସ୍ତୁତ ହୋଇଥିଲା ବୋଲି ପ୍ରମାଣିତ ହୁଏ । ତେଣୁ ଏହାର ଭାଷା ବି ଅର୍ବାଚୀନ ବୋଲି ମନେହୁଏ । ପୁଣି ଏହା ଯେ ପ୍ରସ୍ତୁତ କରିଥିଲେ ସେ ନିଜେ 'ମାଦଳାପାଞ୍ଜି' ପଢି ନଥିଲେ ବୋଲି ମନେହୁଏ ।

ମୋଟଉପରେ ରାଣୀଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶଟି ଯେ ଜାଲ୍, ତାହାର ଏକାଧିକ ପ୍ରମାଣ ସେଇ ଉଦ୍ଧୃତାଂଶ ମଧ୍ୟରେ ରହିଛି । ବର୍ତ୍ତମାନ ପରସ୍ପର ସହିତ ସମ୍ପର୍କାନ୍ୱିତ କେତେଗୁଡ଼ିଏ ପ୍ରଶ୍ନ ମନକୁ ଆସେ । ସେ ଗୁଡ଼ିକ ହେଲା : କେଉଁ କାରଣରୁ ଉଦ୍ଦେଶ୍ୟପ୍ରଣୋଦିତ ଭାବରେ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶ (ବା ଅନ୍ୟ କଥାରେ ଗୋଟିଏ ଜାଲ୍ ଉଦ୍ଧୃତାଂଶ) ପ୍ରସ୍ତୁତ କରାଯାଇଥିଲା ? ଭୋଇ ୨ୟ ରାମଚନ୍ଦ୍ରଙ୍କ ସମୟରେ ବଡ଼ଦେଉଳ ସିଂହଦ୍ୱାର ଗୁମ୍ଟରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା ବୋଲି ସେଥିରେ କିପରି ଓ କାହିଁକି କୁହାଯାଇଥିଲା ? 'ମାଦଳାପାଞ୍ଜି'ର ଏପରି ଏକ ଜାଲ୍ ଉଦ୍ଧୃତାଂଶ ପ୍ରସ୍ତୁତ କରାଇ ସେଥିରେ ପତିତପାବନ ମୂର୍ତ୍ତି ସମ୍ପର୍କରେ ଏପରି ଏକ ଭ୍ରମାତ୍ମକ ବିବରଣୀ ଦେବାଦ୍ୱାରା ରାଣୀ ସୂର୍ଯ୍ୟମଣିଙ୍କ କେଉଁ ସ୍ୱାର୍ଥ ସାଧିତ ହୋଇଥିଲା ? ଏହି ପ୍ରଶ୍ନଗୁଡ଼ିକର ସନ୍ତୋଷଜନକ ଉତ୍ତର ପାଇବା ପାଇଁ ରାଣୀ ସୂର୍ଯ୍ୟମଣିଙ୍କ ଉପରୋକ୍ତ ସ୍ମାରକପତ୍ରର ପୃଷ୍ଠଭୂମି ସମ୍ପର୍କରେ ଜାଣିବା ଆବଶ୍ୟକ । ତେଣୁ ତଳେ ରାଣୀଙ୍କ ସ୍ମାରକପତ୍ରର ପୃଷ୍ଠଭୂମି ରଚନା କରାଯାଉଅଛି।

(ଖ)

ରାଣୀ ସୂର୍ଯ୍ୟମଣି ପୁରୀର ରାଜା ବୀରକିଶୋର ଦେବ (୧୮୫୪-୧୮୫୯)ଙ୍କର ଏକମାତ୍ର ପତ୍ନୀ ଥିଲେ । ତାଙ୍କର ପୁତ୍ର ନ ଥିବାରୁ ବୀରକିଶୋର ତାଙ୍କ ମୃତ୍ୟୁ ପୂର୍ବରୁ ବଡ଼ଖେମୁଣ୍ଡିର ରାଜା ଲକ୍ଷ୍ମୀନାରାୟଣ ଦେବ(ଜନ୍ମ ୧୮୩୮, ରାଜତ୍ୱ ୧୮୫୧-୧୮୯୨)ଙ୍କ ୪ ବର୍ଷ ବୟସ୍କ ଏକ ପୁତ୍ରକୁ ଦିବ୍ୟସିଂହ ଦେବ ନାମ ଦେଇ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ୧୮୫୯ରେ ବୀରକିଶୋରଙ୍କ ମୃତ୍ୟୁ ପରେ ନାବାଳକ ରାଜା ଦିବ୍ୟସିଂହ ଦେବଙ୍କ ତରଫରୁ ରାଣୀ ସୂର୍ଯ୍ୟମଣି ମହାଫିଜ୍ ରୂପେ ଜଗନ୍ନାଥ ମନ୍ଦିରର ପରିଚାଳନା ତଥା ଅନ୍ୟାନ୍ୟ ସମସ୍ତ ଅଧିକାର ଓ କ୍ଷମତା ଉପଭୋଗ କଲେ (ଦ୍ରଷ୍ଟବ୍ୟ-ଜଗନ୍ନାଥ ମନ୍ଦିର ପତ୍ରାବଳୀ, ୪ର୍ଥ ଖଣ୍ଡ, ପୃ. ୮୭୧ ଠାରୁ...) । ପରେ ଦିବ୍ୟସିଂହ ଦେବ ବୟଃପ୍ରାପ୍ତ ହୋଇ ସମସ୍ତ ଅଧିକାର ଓ କ୍ଷମତା ଗ୍ରହଣ କଲେ । କିନ୍ତୁ

ଅଳ୍ପ କାଳ ପରେ ୧୮୭୮ରେ ଦିବ୍ୟସିଂହ ନରହତ୍ୟା ଅପରାଧରେ ଦୋଷୀ ସାବ୍ୟସ୍ତ ହୋଇ ଯାବଜ୍ଜୀବନପାଇଁ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ ହେଲେ ଓ ଆଣ୍ଡାମାନ ପ୍ରେରିତ ହେଲେ । ଏଇ ପରିସ୍ଥିତିରେ ରାଣୀ ସୂର୍ଯ୍ୟମଣି ଦିବ୍ୟସିଂହ ଦେବଙ୍କ ନାବାଳକ ପୁତ୍ର ଜଗନ୍ନାଥ ଜେନାମଣିଙ୍କ ତରଫରୁ ପୁଣିଥରେ ତାଙ୍କ ମହାଫିଜ୍ ଓ ପ୍ରତିଭୂ ରୂପେ ଜଗନ୍ନାଥ ମନ୍ଦିରର ପରିଚାଳନା ତଥା ସମସ୍ତ ସମ୍ପତ୍ତି ଓ ଅଧିକାରର ଦାୟିତ୍ୱ ଗ୍ରହଣ କଲେ । କଟକର ଜଜ୍ ୧୮୭୯ ଅଗଷ୍ଟ ୨୭ ତାରିଖର ଏକ ସାର୍ଟିଫିକେଟ ମାଧ୍ୟମରେ ରାଣୀଙ୍କୁ ଏଥିପାଇଁ ଆଇନ ଅନୁଯାୟୀ କ୍ଷମତା ପ୍ରଦାନ କରିଥିଲେ (ତତ୍ରୈବ, ୬ଷ୍ଠ, ପୃ. ୧୩୮୮) ।

ପୂର୍ବେ ଦିବ୍ୟସିଂହ ଦେବଙ୍କ ନାବାଳକତ୍ୱରେ ରାଣୀ ମନ୍ଦିରର ସୁପରିଚାଳନା କରିପାରୁ ନ ଥିଲେ ବୋଲି ପୁରୀର ଜିଲ୍ଲାମାଜଷ୍ଟ୍ରେଟ୍ ଜୋସେଫ୍ ଆର୍ମଷ୍ଟ୍ରଙ୍ଗଙ୍କ ରିପୋର୍ଟ ଭିତ୍ତିରେ ସରକାରୀ ମହଲରେ ଅନୁଭବ କରାଯାଇଥିଲା (ଜଗନ୍ନାଥ ମନ୍ଦିର ପତ୍ରାବଳୀ, ୫ମ ପୃ. ୧୧୯୮ [୨-୨୪], ୧୨୧୦-୧୨୧୫) । ଦିବ୍ୟସିଂହ ଦେବ ବୟଃପ୍ରାପ୍ତ ହେଲାପରେ ମଧ୍ୟ ମନ୍ଦିର ପରିଚାଳନାରେ ଉନ୍ନତି ବିଧାନ କରିପାରି ନ ଥିଲେ; ବରଂ ଅବ୍ୟବସ୍ଥା ବୃଦ୍ଧି ପାଇଥିଲା (ତତ୍ରୈବ, ପୃ. ୧୨୧୦-୧୧,୧୨୧୫. ୧୧୫୬, ୧୧୯୮ [୧୧]) । ସେବକ ପୂଜକମାନେ ମଧ୍ୟ ରାଜା ଦିବ୍ୟସିଂହଙ୍କ ପରିଚାଳନା ସଂକ୍ରାନ୍ତରେ ଆପତ୍ତି କରିଥିଲେ (ତତ୍ରୈବ, ପୃ. ୧୧୪୬-୫୧) ରାଜନବର ମଧରେ ଆବଦ୍ଧ ରହି ମଧ୍ୟ ରାଣୀ ସୂର୍ଯ୍ୟମଣି ମଝିରେ ମଝିରେ ଏହି ସରକାରୀ ଅସନ୍ତୋଷର ସୂଚନା ହୁଏତ ପାଉଥିଲେ । ପୂର୍ବେ ଖୋର୍ଦ୍ଧା ରାଜ୍ୟ ଖାସ୍ ହେବାଠାରୁ ଖୋର୍ଦ୍ଧାରାଜ୍ୟର ଉତ୍ତରାଧିକାରୀ ସୂତ୍ରେ ପୂରୀ ରାଜା ବଂଶ-ପରମ୍ପରାକ୍ରମେ ଯେଉଁ 'ମାଲିକାନା' ପାଉଥିଲେ, ତାହାକୁ ସରକାର ଏହି ସମୟରେ (ଅର୍ଥାତ୍ ୧୮୭୬ରେ) ଦିବ୍ୟସିଂହ ଦେବଙ୍କ ଆପତ୍ତିକୁ ଅଗ୍ରାହ୍ୟ କରି 'ମାଲିକାନା' ପରିବର୍ତ୍ତେ 'ରାଜନୀତିକ ଭତ୍ତା' (Political Pension) ବୋଲି ଘୋଷଣା କରିଥିଲେ (ତତ୍ରୈବ, ୫ମ, ପୃ. ୧୦୮୬-୮୯, ୧୧୪୩) । ଏହା ସରକାରଙ୍କ ଉଦ୍ଦେଶ୍ୟ ସମ୍ପର୍କରେ ରାଜପରିବାରରେ ସନ୍ଦେହର କୁହେଳିକା ସୃଷ୍ଟି କରିଥାଇ ପାରେ । ପୁଣି ଏହା ସହ ହୃତ ଖୋର୍ଦ୍ଧା ରାଜ୍ୟକୁ ଫେରି ପାଇବାପାଇଁ ଦିବ୍ୟସିଂହ କରିଥିବା ଦାବିକୁ ମଧ୍ୟ ସରକାର ଏହି ସମୟରେ ଅଗ୍ରାହ୍ୟ କରି ଦେଇଥିଲେ (ତତ୍ରୈବ, ପୃ. ୧୧୪୩-୪୪) ।

୧୮୭୭ ଫେବୃଆରୀରେ ପୁରୀରେ ଗୋବିନ୍ଦଦ୍ୱାଦଶୀ ଓ ଦୋଳଯାତ୍ରା ସମୟରେ ପରିଚାଳନାଗତ ଅବ୍ୟବସ୍ଥା ହେତୁ ୧୧ ଜଣ ଯାତ୍ରୀଙ୍କର ପ୍ରାଣହାନି ଘଟିଥିଲା । ସରକାର

ଏ ସମ୍ପର୍କରେ ଅତ୍ୟନ୍ତ ଉଦ୍‌ବେଗ ପ୍ରକାଶ କଲେ ଓ ଏପରି ଘଟଣାର ପୁନରାବୃତ୍ତି ବନ୍ଦ କରିବାର ଲକ୍ଷ୍ୟରେ ଜଗନ୍ନାଥଙ୍କ ଯାତ୍ରାଉତ୍ସବ ଆଦିର ସୁପରିଚାଳନା ଉଦ୍ଦେଶ୍ୟରେ ଏକ କମିଟି ଗଠନର ପ୍ରସ୍ତାବ କଲେ । ଏ କମିଟିର ପ୍ରସ୍ତାବିତ କାର୍ଯ୍ୟପରିସର ଅବଶ୍ୟ ଅତ୍ୟନ୍ତ ସଙ୍କୁଚିତ ଥିଲା ଓ ରାଜାଙ୍କୁ ଜଗନ୍ନାଥ ମନ୍ଦିର ପରିଚାଳନାରୁ ସମ୍ପୂର୍ଣ୍ଣରୂପେ ବଞ୍ଚିତ କରିବାର ଉଦ୍ଦେଶ୍ୟ ମଧ୍ୟ ସରକାରଙ୍କର ନଥିଲା । କିନ୍ତୁ ଯେଉଁ ସରକାର ଖ୍ରୀଷ୍ଟିଆନ ମିଶନାରୀମାନଙ୍କ ଆନ୍ଦୋଳନ ଫଳରେ ୧୮୬୩ରୁ ହିନ୍ଦୁଧର୍ମ ଓ ପ୍ରତିମାପୂଜାର ଅନ୍ୟତମ ପ୍ରଧାନପୀଠ ଜଗନ୍ନାଥ ମନ୍ଦିର ସହ ସମସ୍ତ ସମ୍ପର୍କ ସମ୍ପୂର୍ଣ୍ଣ ଭାବରେ ଛିନ୍ନ କରିଥିଲେ (ଦ୍ର: Patra, K. M. 1971, pp.262-275; Mukherjee, Prabhat 1977, p.329) ସେଇ ସରକାରଙ୍କ ମନ୍ଦିର ପରିଚାଳନା ସମ୍ପର୍କୀୟ ଉପରୋକ୍ତ ଆଗ୍ରହ ବୋଧହୁଏ ରାଜ-ପରିବାରର ସନ୍ଦେହର ଅଗ୍ନିରେ ଇନ୍ଧନ ଯୋଗାଇଥିଲା ।

ଏହି ସମୟରେ ଅର୍ଥାତ୍ ୧୮୭୮ରେ ଦିବ୍ୟସିଂହ ଦେବ ନରହତ୍ୟା ଅପରାଧରେ ଯାବଜ୍ଜୀବନ ନିର୍ବାସନ ଦଣ୍ଡରେ ଦଣ୍ଡିତ ହୋଇ ଆଣ୍ଡାମାନକୁ ପ୍ରେରିତ ହେଲେ । ଏହି ନୂତନ ପରିସ୍ଥିତିରେ ପୁରୀ ମନ୍ଦିର ପରିଚାଳନା ସମ୍ପର୍କୀୟ ସମସ୍ୟାର ଗୁରୁତ୍ୱ ବିଶେଷ ବୃଦ୍ଧି ପାଇଲା । ଅନ୍ତତଃ ସରକାରଙ୍କ କୌଣସି କୌଣସି ମହଲରେ ବା ସ୍ତରରେ ତାହାହିଁ ମନେ କରାଗଲା ଓ ସରକାରୀ ଦପ୍ତରମାନଙ୍କରେ ଏ ସମ୍ପର୍କୀୟ ଚିଠିର ଆଦାନପ୍ରଦାନ ବି ହେଲା । ଦିବ୍ୟସିଂହ ଦେବ ଦ୍ୱୀପାନ୍ତରିତ ହୋଇଥିବାରୁ ଓ ତାଙ୍କ ପୁତ୍ର ଜଗନ୍ନାଥ ଜେନାମଣି ନାବାଳକ ଥିବାରୁ ସରକାର ଏଇ ସୁଯୋଗରେ ପୁରୀ ରାଜପରିବାରକୁ ଜଗନ୍ନାଥ ମନ୍ଦିରର ପରିଚାଳନାରୁ ସମ୍ପୂର୍ଣ୍ଣ ରୂପେ ବଞ୍ଚିତ କରି ଏକ କମିଟି ହସ୍ତରେ ତାହା ନ୍ୟସ୍ତ କରିବେ, ଏପରି ଆଶଙ୍କା ବୋଧହୁଏ ରାଣୀ ସୂର୍ଯ୍ୟମଣି କରିଥିଲେ । ଏପରି ଏକ ଆଶଙ୍କା ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଅମୂଳକ ନଥିଲା । ପୁରୀର ତତ୍କାଳୀନ କଲେକ୍ଟର ଆର୍ମଷ୍ଟ୍ରଙ୍ଗ ୧୮୪୯ର ୧୦ମ ଆଇନକୁ ଏକ ମୃତ ଆଇନ (the act X of 1849 is now a dead letter) ବା ସମ୍ପୂର୍ଣ୍ଣ ଅକାମୀ ବୋଲି ମତଦେଇ ଜଗନ୍ନାଥ ଜେନାମଣିଙ୍କୁ ମନ୍ଦିର ପରିଚାଳନାରୁ ତଥା ମନ୍ଦିର ପରିଚାଳନାପାଇଁ ସେ ଭୋଗ କରୁଥିବା ସମସ୍ତ ସମ୍ପତ୍ତିରୁ ବଞ୍ଚିତ କରିବାପାଇଁ ସୁପାରିଶ କରି ୧୮୭୮ ଜୁନ ୧ ତାରିଖରେ କମିଶନରଙ୍କ ନିକଟକୁ ଚିଠି ବି ଲେଖିଥିଲେ । ଅବଶ୍ୟ ତା ସହ ସ୍ଥାନୀୟ ପ୍ରାୟ ସମସ୍ତ ହିନ୍ଦୁ ରାଜପରିବାର ସହ ଜଗନ୍ନାଥ ମନ୍ଦିରର ସମ୍ପର୍କ ଅବ୍ୟାହତ ରହୁ ବୋଲି ଚାହୁଁଥିବାରୁ ସମସ୍ତ ସମ୍ପତ୍ତିକୁ 'କୋର୍ଟ ଅଫ ୱାର୍ଡ୍‌ସ୍‌ରେ ରଖାଯାଉ ଓ ମନ୍ଦିର ପରିଚାଳନାପାଇଁ ଜଣେ ଜଣେ ଅବସରପ୍ରାପ୍ତ ସରକାରୀ ହିନ୍ଦୁ ଅଫିସରଙ୍କୁ ସ୍ୱଳ୍ପ ଦରମାରେ ମ୍ୟାନେଜର ନିଯୁକ୍ତ କରାଯାଉ ଅଥବା

ସରକାର ସମସ୍ତ ସମ୍ପତ୍ତି ନିଜେ ଗ୍ରହଣ କରି ହିନ୍ଦୁମାନଙ୍କର ଏକ କମିଟି ଓ ମ୍ୟାନେଜର ମାଧ୍ୟମରେ ମନ୍ଦିର ପରିଚାଳନା କରନ୍ତୁ ବୋଲି ବିକଳ୍ପ ପ୍ରସ୍ତାବ ଦୁଇଟି ବି ଦେଇଥିଲେ (ତତ୍ରୈବ, ୫ମ, ପୃ. ୧୧୯୮ [୧୫-୧୬]) । ଏ ଖବର ଅତିରଞ୍ଜିତ ଓ/ବା ଖଣ୍ଡିତ/ ଏକପାଖିଆ ଆକାରରେ ରାଣୀ ସୂର୍ଯ୍ୟମଣିଙ୍କ କାନରେ ବାଜିଥିବା ସ୍ୱାଭାବିକ ।

କମିଶନର ବା ଛୋଟଲାଟ୍ କଲେକ୍ଟରଙ୍କ ପ୍ରଥମ ପ୍ରସ୍ତାବ ବା ସୁପାରିଶକୁ ଗ୍ରହଣ କରିନଥିଲେ ହେଁ, ଏପରି ଏକ ପ୍ରସ୍ତାବ ଦିଆଯାଇଥିବାରୁ ରାଣୀ ଅତ୍ୟନ୍ତ ଆଶଙ୍କିତ ଓ ଉଦ୍‌ବେଗଗ୍ରସ୍ତ ହୋଇରହୁଥିଲେ । ୧୮୭୯ ପ୍ରାରମ୍ଭରେ ବୋର୍ଡ୍ ଅଫ ରେଭେନ୍ୟୁର ସଭ୍ୟ ଡ଼ାମ୍ପିଆର (H. Dampier) ଓଡ଼ିଶା ପରିଭ୍ରମଣରେ ଆସି କଟକଠାରେ ପୁରୀ ମନ୍ଦିରର ପରିଚାଳନା ସମ୍ପର୍କରେ ଯେଉଁ ମତ ପ୍ରକାଶ କରି ଗୋଟିଏ କମିଟି ଗଠନର ପ୍ରସ୍ତାବ ଦେଲେ ତାହା ତତ୍କାଳୀନ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା ('ଉତ୍କଳ ଦୀପିକା' ୨୨-୨-୧୮୭୯, ଦ୍ର : ପଟ୍ଟନାୟକ, ସୁଧାକର, ୧୯୭୨ ପୃ. ୬୮୫) । ଅବଶ୍ୟ ରାଜା ମନ୍ଦିରର ସୁପରିଟେଣ୍ଡେଣ୍ଟ୍ ରହିବେ ବୋଲି ସେ କହିଥିଲେ ହେଁ ଏସବୁ ଫଳରେ ରାଣୀ ସୂର୍ଯ୍ୟମଣିଙ୍କ ଆଶଙ୍କା ଓ ଉଦ୍‌ବେଗ ବଢିଯାଇଥିବ ।

ପୁରୀ ରାଜଗାଦି ଶୂନ୍ୟ ପଡ଼ିଥିଲା । ପୁରୀ ରାଜଗାଦି ଶୂନ୍ୟ ପଡ଼ିଥିବାରୁ ହିଁ ସରକାର ପୁରୀ ରାଜବଂଶକୁ ତାଙ୍କ କୌଳିକ ଅଧିକାରରୁ ବଞ୍ଚିତ କରିବାପାଇଁ ସୁଯୋଗ ପାଉଛନ୍ତି- ବୋଧହୁଏ ଏଇ ବିଶ୍ୱାସରୁ ୧୮୮୨ର ମେ' ମାସରେ ରାଣୀ ସୂର୍ଯ୍ୟମଣି ହଠାତ୍ ଜଗନ୍ନାଥ ଜେନାମଣିଙ୍କୁ ରାଜା ମୁକୁନ୍ଦ ଦେବ ନାମ ଦେଇ ପୁରୀ ରାଜଗାଦିରେ ଅଭିଷିକ୍ତ କରାଇ ଦେଲେ ('ଉତ୍କଳଦୀପିକା', ୧୩/୫/୧୮୮୨) । ଏଇ ପଦକ୍ଷେପକୁ କେତେକ ଉଦ୍ଦେଶ୍ୟ ମୂଳକ ଭାବରେ ଦେଖିଛନ୍ତି (ମୁଖର୍ଜୀ, ପ୍ରଭାତ, ୧୯୭୭, ପୃ.୩୮୨ ।) ସମସାମୟିକ ସମ୍ବାଦପତ୍ର 'ଉତ୍କଳ ଦୀପିକା' ମଧ୍ୟ ଏହା ପଛରେ ସ୍ୱାର୍ଥପର କର୍ମଚାରୀଙ୍କ ଗୂଢ଼ ଅଭିସନ୍ଧି ଅଛି ଓ ସେମାନଙ୍କ କୁପରାମର୍ଶରେ ଏହା ହୋଇଛି ବୋଲି ସନ୍ଦେହ ପ୍ରକାଶ କରିଥିଲେ ('ଉତ୍କଳ ଦୀପିକା', ୧୩/୮/୧୮୮୨, ଦ୍ର : ମହାନ୍ତି, ସୁରେନ୍ଦ୍ର, ୧୯୭୦/୧୯୭୭, ପୃ. ୩୦୪/୨୩୫-୩୬) । କିନ୍ତୁ ଏହା ମଧ୍ୟରେ ଅନ୍ତଃପୁରିକା ରାଣୀ ସୂର୍ଯ୍ୟମଣିଙ୍କ ଅଭିସନ୍ଧିର ପ୍ରତିଫଳନ ନୁହେଁ, ତାଙ୍କ ସନ୍ଦେହ ଓ ଆଶଙ୍କା-ବ୍ୟାକୁଳିତ ଉଦ୍‌ବେଗଗ୍ରସ୍ତ ମନର ପ୍ରତିଫଳନ ତଥା ପୁରୀ ରାଜବଂଶର କୌଳିକ ଅଧିକାରକୁ ସାବ୍ୟସ୍ତ ଓ ଗୌରବକୁ ରକ୍ଷା କରିବାର ଆଗ୍ରହ ସହଜରେ ଲକ୍ଷ୍ୟ କରାଯାଇପାରେ (ସୁରେନ୍ଦ୍ର ମହାନ୍ତି ତାଙ୍କ 'ଶତାବ୍ଦୀର ସୂର୍ଯ୍ୟ'ରେ ରାଣୀଙ୍କ ପଦକ୍ଷେପକୁ ଏଇ ଦୃଷ୍ଟି କୋଣରୁ ହିଁ ଦେଖିଛନ୍ତି । ଦ୍ର : ମହାନ୍ତି, ସୁରେନ୍ଦ୍ର. ୧୯୭୦/୧୯୭୭, ପୃ. ୩୦୪/୨୩୫-୩୬) । ପୁଣି ସରକାରଙ୍କ

ଉଦ୍ଦେଶ୍ୟ ସମ୍ପର୍କରେ ସନ୍ଦେହ ହେବାରୁ ଯାବଜ୍ଜୀବନପାଇଁ ଦ୍ୱୀପାନ୍ତରିତ ଦିବ୍ୟସିଂହ ଦେବ ଯେ ଦିନେ ମୁକ୍ତି ପାଇପାରନ୍ତି ତା ବିଶ୍ୱାସ କରିବାପାଇଁ ରାଣୀ ବୋଧହୁଏ ପ୍ରସ୍ତୁତ ନଥିଲେ । ତାଙ୍କର ପ୍ରଥମ ଓ ପ୍ରଧାନ ଉଦ୍ଦେଶ୍ୟ ଥିଲା ମନ୍ଦିର ପରିଚାଳନାକୁ ସମ୍ପୂର୍ଣ୍ଣ ଭାବରେ ପୁରୀ ରାଜବଂଶର ହାତରେ ରଖିବା ଓ ସେଥିପାଇଁ ସରକାରଙ୍କ ପ୍ରସ୍ତାବିତ କମିଟି ଗଠନକୁ ବିରୋଧ କରିବା । କାରଣ ଏଇ କମିଟି ଗଠନ ଭିତରେ ପୁରୀ ରାଜ-ପରିବାରର କୌଳିକ ଅଧିକାର ଓ ବଂଶଗୌରବ ହାନିର ସମ୍ଭାବନା ସେ ଦେଖିପାରିଥିଲେ । ଏଣେ ଜଗନ୍ନାଥ ଜେନାମଣିଙ୍କୁ କଟକର ଜିଲ୍ଲା ଜଜ୍ ୧୪ ଡିସେମ୍ବର ୧୮୮୨ରେ 'ରାଜା' ମୁକୁନ୍ଦ ଦେବ ବୋଲି ସ୍ୱୀକୃତି ବି ଦେଇଥିଲେ (ଦ୍ର: ଜଗନ୍ନାଥ ମନ୍ଦିର ପତ୍ରାବଳୀ, ୬ଷ୍ଠ, ପୃ.୧୩୯୧) ।

ଏହାପରେ ରାଣୀ ସୂର୍ଯ୍ୟମଣି ୧୮୮୨ ଓ ୧୮୮୩ରେ ସରକାରଙ୍କ ନିକଟକୁ ଏ ସମ୍ପର୍କରେ ଅନ୍ତତଃ ୫ଗୋଟି ଦରଖାସ୍ତ/ସ୍ମାରକପତ୍ର ପଠାଇଥିବାର ଏ ପର୍ଯ୍ୟନ୍ତ ଜଣାଯାଇଛି । ଏ ମଧ୍ୟରୁ ତାଙ୍କର ପ୍ରଥମ ସ୍ମାରକପତ୍ର ଦିଆଯାଇଥିଲା ୧୮୮୨ ଜୁଲାଇ ୧୮ ତାରିଖରେ । ତାଙ୍କର ସେଇ ପ୍ରଥମ ସ୍ମାରକପତ୍ରରେ ତାଙ୍କ ଉଦ୍ଦେଶ୍ୟର ସ୍ପଷ୍ଟ ପ୍ରତିଫଳନ ଲକ୍ଷ୍ୟ କରାଯାଇପାରେ । ଏହାଛଡ଼ା ଏହି ସମୟରେ ସର୍ବସାଧାରଣଙ୍କ ତରଫରୁ ଏ ସମ୍ପର୍କରେ ଅନ୍ତତଃ ୪ଗୋଟି ଦରଖାସ୍ତ ଦିଆଯାଇଥିବାର ଜଣାଯାଏ । ଯଥା:

(୧). ୧୮୮୨ ଜୁଲାଇ ୬ ତାରିଖରେ ଭିତରଛୁ ଗୋବିନ୍ଦଚନ୍ଦ୍ର ମହାପାତ୍ର ଓ ଅନ୍ୟ ସେବକ;

(୨). ୧୮୮୨ ଜୁଲାଇ ୧୯ତାରିଖରେ ଏମାର ମଠରେ ମହନ୍ତ ମୋହନ ଦାସ ଓ ଅନ୍ୟ କେତେକ ମହନ୍ତ, ଦଣ୍ଡୀ, ବ୍ରହ୍ମଚାରୀ, ସନ୍ୟାସୀ;

(୩). ୧୮୮୨ ଜୁଲାଇ ୨୨ ତାରିଖରେ ଗୋପୀନାଥ ମିଶ୍ର ଓ ପୁରୀ ତଥା ଷୋଳ (୧୬) ଶାସନର ପଣ୍ଡିତ ଓ

(୪). ୧୮୮୩ ଜୁଲାଇ ୮ ତାରିଖରେ ମାଧବ ପଣ୍ଡା ଓ ଅନ୍ୟ ୪୫୦ ଜଣ ମନ୍ଦିରର ସେବକଙ୍କ ତରଫରୁ ଦରଖାସ୍ତ ଦିଆଯାଇଥିଲା । (ଦ୍ର:ଜଗନ୍ନାଥ ମନ୍ଦିର ପତ୍ରାବଳୀ ୬ଷ୍ଠ, ପୃ.୧୩୬୭-୬୮, ୧୩୭୩-୭୫, ୧୩୭୬-୭୮ ଓ ୧୩୮୪-୮୬) ।

ରାଣୀ ସୂର୍ଯ୍ୟମଣି ଦେଇଥିବା ପ୍ରଥମ ଚାରିଗୋଟି ସ୍ମାରକପତ୍ରର ଉଦ୍ଦେଶ୍ୟ ସହ ଏ ଚାରିଗୋଟି ଦରଖାସ୍ତର ଉଦ୍ଦେଶ୍ୟ ପ୍ରାୟ ସମାନ ଥିଲା । ଏସବୁ ସ୍ମାରକପତ୍ର/ଦରଖାସ୍ତରେ ଉପସ୍ଥାପିତ ଯୁକ୍ତି ତଥା ସାଧାରଣ ଉପସ୍ଥାପନା-ରୀତି ମଧ୍ୟରେ ବି ବହୁ ସାମଞ୍ଜସ୍ୟ ଥିଲା । ଏସବୁ

ଦରଖାସ୍ତର ନେପଥ୍ୟରେ ରାଣୀଙ୍କ ଅଦୃଶ୍ୟ ହସ୍ତର ସ୍ପର୍ଶ ହୁଏତ ଥିଲା । ତେବେ ସେତେବେଳେ ଓଡ଼ିଶାର (ବିଶେଷ ଭାବରେ ପୁରୀର) ଜନସାଧାରଣ ସ୍ୱତଃପ୍ରବୃତ୍ତ ଭାବରେ ପୁରୀ ରାଜବଂଶ ପ୍ରତି ସହାନୁଭୂତିଶୀଳ ହୋଇ ଏହାକୁ ସମର୍ଥନ ଜଣାଉଥିବା ମଧ୍ୟ ସରକାରୀ କାଗଜ ପତ୍ରରୁ ଜଣାଯାଏ (ତତ୍ରୈବ, ୫ମ, ପୃ. ୧୧୯୮[୧୫-୧୬]; ୬ଷ୍ଠ, ପୃ.୧୩୮୮) । ତା ସତ୍ତ୍ୱେ ଏ ସବୁ ସରକାରଙ୍କୁ ବିଶେଷ ପ୍ରଭାବିତ କରିପାରିଥିବା ପରି ମନେହୁଏ ନାହିଁ, କାରଣ ସରକାର କମିଟି ଗଠନ ସମ୍ପର୍କୀୟ ଆଲୋଚନା ଚଳାଇ ରଖିଥିଲେ ଯାହାର ପରିଣତି ପରେ ୧୮୮୬-୮୭ର ପୁରୀମନ୍ଦିର ମକଦ୍ଦମାରେ ଲକ୍ଷ୍ୟ କରାଯାଇ ପାରେ ।

ଏଣେ ଜଗନ୍ନାଥ ଜେନାମଣିଙ୍କୁ 'ରାଜା' ମୁକୁନ୍ଦ ଦେବ ବୋଲି କଟକର ଜଜ୍ ସ୍ୱୀକୃତି ଦେଇଥିଲେ ହେଁ (ତତ୍ରୈବ, ପୃ.୧୩୯୧), ସରକାର ପ୍ରଥମରୁ ତାହା ବିରୁଦ୍ଧରେ ଆପତ୍ତି ଉଠାଇଥିଲେ । ସରକାରଙ୍କ ଏ ସମ୍ପର୍କୀୟ ଆପତ୍ତି ପୁରୀର ତତ୍କାଳୀନ କଲେକ୍ଟର ଗ୍ରାଣ୍ଟ୍ ୧୮୮୩ ଜାନୁଆରୀ ୨୫ ତାରିଖରେ କମିଶନରଙ୍କ ନିକଟକୁ ଲେଖିଥିବା ଚିଠି ଓ କମିଶନର୍ ୧୮୮୩ ଏପ୍ରିଲ୍ ୪ ତାରିଖରେ ବଙ୍ଗ ସରକାରଙ୍କୁ ଲେଖିଥିବା ଚିଠିରୁ ଜଣାଯାଏ (ତତ୍ରୈବ, ପୃ.୧୩୮୮ ଓ ୧୩୯୪-୯୬) । ସରକାରଙ୍କ ଦୁଇଗୋଟି ପ୍ରଧାନ ଆପତ୍ତି ଥିଲା:

(୧) ପୁରୀ ରାଜବଂଶ ପାଇଁ 'ରାଜା' ପଦବୀ କୌଳିକ ପଦବୀ ବୋଲି ସରକାରଙ୍କଦ୍ୱାରା ସ୍ୱୀକୃତ ନୁହେଁ । ତେଣୁ ଜଗନ୍ନାଥ ଜେନାମଣି 'ରାଜା' ମୁକୁନ୍ଦ ଦେବ ନାମ ଧାରଣ କରି ଗାଦିରେ ବସିବେ କିପରି ?

(୨) ରାଜା ଦିବ୍ୟସିଂହ ଦେବ ଜୀବିତ ଥିବା ସମୟରେ ତାଙ୍କ ପୁଅ 'ରାଜା' ବୋଲାଇପାରିବେ (ଅର୍ଥାତ୍ 'ରାଜା' ପଦବୀ ଧାରଣ କରିପାରିବେ) କିପରି ? ଅନ୍ୟ କଥାରେ ଏକ ସମୟରେ ବାପ ଓ ପୁଅ ଦୁଇ ଜଣଯାକ ପୁରୀ 'ରାଜା' ହୋଇପାରିବେ କିପରି ?

ରାଣୀ ସୂର୍ଯ୍ୟମଣି ବୋଧହୁଏ ପ୍ରଥମେ ଭାବିଥିଲେ ଯେ ତାଙ୍କର ପୂର୍ବୋକ୍ତ ୧୮୮୨ ଜୁଲାଇ ୧୮ ତାରିଖର ସ୍ମାରକପତ୍ର ତଥା ସର୍ବସାଧାରଣଙ୍କ ତରଫରୁ ଦିଆଯାଇଥିବା ୪ ଗୋଟି ସ୍ମାରକପତ୍ରରେ ମନ୍ଦିର ପରିଚାଳନାପାଇଁ ପ୍ରସ୍ତାବିତ କମିଟିକୁ ବିରୋଧ ତ କରାଯାଇଛି, ତା' ସହ ଜଗନ୍ନାଥ ଜେନାମଣି କିପରି ଓ କାହିଁକି 'ରାଜା' ମୁକୁନ୍ଦ ଦେବ ନାମ ଧାରଣ କରି ପୁରୀ ରାଜଗାଦିରେ ବସିଲେ ତା'ର ଯଥାର୍ଥତା ସରକାରଙ୍କୁ ବୁଝାଇଦିଆଯାଇ ପାରିଛି । କିନ୍ତୁ ତା ସତ୍ତ୍ୱେ ସେ ଛୋଟଲାଟ୍ (Lt. Governor of Bengal) ଙ୍କ ନିକଟକୁ ୧୮୮୩ ଏପ୍ରିଲ୍ ୨୦ ତାରିଖ ଓ ୧୮୮୩ ଏପ୍ରିଲ୍ ୩୦

ତାରିଖରେ ଲିଖିତ ଆଉ ଦୁଇଗୋଟି ସ୍ମାରକପତ୍ରରେ (ରାଣୀଙ୍କର ଯଥାକ୍ରମେ ୨ୟ ଓ ୩ୟ ସ୍ମାରକପତ୍ର) କେଉଁ ପରିସ୍ଥିତିରେ ଜଗନ୍ନାଥ ଜେନାମଣିଙ୍କୁ 'ରାଜା' ମୁକୁନ୍ଦ ଦେବ ନାମ ଦେଇ ଅଭିଷିକ୍ତ କରାଗଲା ତା'ର ବୟାନ କଲେ (୩୦/୪/୧୮୮୩ର ସ୍ମାରକପତ୍ର ପାଇଁ ଦ୍ର: ମହାନ୍ତି, ସୁରେନ୍ଦ୍ର, ୧୯୭୦/୧୯୭୭, ପୃ. ୩୧୭-୧୮/ ପୃ.୨୪୫)। ଏହି ବୟାନରେ ଅନ୍ୟାନ୍ୟ କଥା ସହ ରାଣୀ ଯୁକ୍ତି ବାଢ଼ିଥିଲେ ଯେ ଜଗନ୍ନାଥଙ୍କ ସେବାପୂଜାପାଇଁ ରାଜା ବା ତାଙ୍କ ଅବର୍ତ୍ତମାନରେ ତାଙ୍କ ପ୍ରତିନିଧିଙ୍କର (ଅନ୍ୟ କଥାରେ ମୁଦିରଥଙ୍କର) ଉପସ୍ଥିତି ଏକାନ୍ତ ଆବଶ୍ୟକ। ନଚେତ ଜଗନ୍ନାଥଙ୍କ ନୀତିରେ ବ୍ୟାଘାତ ଘଟିବ। ରାଜା ନଥିଲେ ମୁଦିରଥଙ୍କୁ ନିଯୁକ୍ତ କରିବ ବା କିଏ? ତେଣୁ ଜଗନ୍ନାଥ ଜେନାମଣିଙ୍କୁ 'ରାଜା' ମୁକୁନ୍ଦଦେବ ନାମ ଦେଇ ଅଭିଷେକ କରିବା ଆବଶ୍ୟକ ଥିଲା। ରାଣୀ 'ନୀଳାଦ୍ରି ମହୋଦୟଃ'ର ଶ୍ଳୋକ ଉଦ୍ଧାର କରି ଜଗନ୍ନାଥଙ୍କ ସେବାପୂଜାରେ ରାଜା ବା ତାଙ୍କ ପ୍ରତିନିଧିଙ୍କ ଉପସ୍ଥିତିର ଆବଶ୍ୟକତାକୁ ପ୍ରମାଣ କରିଥିଲେ। ଏଠାରେ ସୂଚାଇ ଦିଆଯାଇ ପାରେ ଯେ ଗୋପୀନାଥ ମିଶ୍ର ଓ ପୁରୀ ତଥା ଷୋଳଶାସନର ଅନ୍ୟ ପଣ୍ଡିତମାନେ ମଧ୍ୟ ପୂର୍ବୋକ୍ତ ୧୮୮୨ ଜୁଲାଇ ୨୨ ତାରିଖର ସ୍ମାରକପତ୍ରରେ ଠିକ୍ ଏହି ଯୁକ୍ତି ବାଢ଼ି ଓ 'କ୍ଷେତ୍ର ମାହାତ୍ମ୍ୟ' ତଥା 'ନୀଳାଦ୍ରି ମହୋଦୟଃ'ର ଦୋହାଇ ଦେଇ ରାଜାଙ୍କ ହାତରୁ ମନ୍ଦିର ପରିଚାଳନା କାଢ଼ି ନେବାର ବିରୋଧ କରିଥିଲେ।

ଛୋଟଲାଟ କିନ୍ତୁ ରାଣୀଙ୍କ ଯୁକ୍ତିରେ ପ୍ରଭାବିତ ହୋଇ ନଥିଲେ। କଲେକ୍ଟର ଓ କମିଶନରଙ୍କ ପରି ତାଙ୍କର ପ୍ରଶ୍ନ ଥିଲା 'ରାଜା' ଦିବ୍ୟସିଂହ ଜୀବିତ ଥାଉଁ ଥାଉଁ ତାଙ୍କ ପୁଅ ପୁଣି 'ରାଜା' ହୋଇ ପାରିବେ ବା କିପରି " ... I am directed to say that the minor son of Rajah Deeby Singh Deb cannot be allowed to assume the title of Rajah during the lifetime of the the latter ..." (ଓ ବୋଧହୁଏ ସେ ହେତୁ 'ନୀଳାଦ୍ରି ମହୋଦୟଃ'ର ବିଧାନ ଲଙ୍ଘନ କରିବାର ପ୍ରଶ୍ନ ଉଠୁଛି ବା କାହିଁକି)? ତେବେ ଦିବ୍ୟସିଂହ ଦେବଙ୍କ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡଜନିତ ବିଶେଷ ପରିସ୍ଥିତି ହେତୁ ଯଦି ରାଜପରିବାର ଦିବ୍ୟସିଂହ ଦେବଙ୍କ ନାବାଳକ ପୁତ୍ରପାଇଁ 'ରାଜା' ପଦବୀର ସ୍ୱୀକୃତି ସରକାରଙ୍କଠାରୁ ଚାହାଁନ୍ତି ତା' ହେଲେ ସେମାନେ ସେଇ ମର୍ମରେ ସରକାରଙ୍କ ବିଚାରପାଇଁ ଏକ ସ୍ୱତନ୍ତ୍ର ସ୍ମାରକପତ୍ର ଦେଇପାରନ୍ତି ବୋଲି ଆଦେଶ ଦେଇ ସେ ରାଣୀଙ୍କ ସ୍ମାରକପତ୍ର ଦୁଇଟି ଉପରେ ମତାମତ ଦେବାପାଇଁ ତାହାକୁ ଓଡ଼ିଶାର କମିଶନରଙ୍କ ନିକଟକୁ ପଠାଇଦେଲେ (ଜଗନ୍ନାଥ ମନ୍ଦିର ପତ୍ରାବଳୀ, ୬ଷ୍ଠ, ପୃ.୧୪୨୩-୨୪)। କମିଶନର ତାହାକୁ ପୁରୀର କଲେକ୍ଟରଙ୍କ ନିକଟକୁ ପଠାଇ ତାଙ୍କ ମତାମତ ଲୋଡ଼ିଲେ (ତତ୍ରୈବ,

ପୃ.୧୪୨୫-୨୯) । କଲେକ୍ଟର ଜଗନ୍ନାଥ ଜେନାମଣିଙ୍କ ରାଜଗାଦି ଆରୋହଣର ଔଚିତ୍ୟ ସମ୍ପର୍କରେ ପ୍ରମାଣ ଯୋଗାଇ ଦେବାପାଇଁ ୧୮୮୩ ଜୁନ୍ ୨୬ ତାରିଖରେ ରାଣୀଙ୍କ ଉପରେ ଏକ ପରୱାନା ଜାରି କଲେ (ମହାନ୍ତି, ସୁରେନ୍ଦ୍ର, ୧୯୭୦/୭୭. ପୃ.୩୦୮/୨୩୮)

ଏହାର ଉତ୍ତରରେ ରାଣୀ ପୁଣି ଦୁଇଗୋଟି ସ୍ମାରକପତ୍ର ଉପସ୍ଥାପନ କରିଥିଲେ ଯଥାକ୍ରମେ ୧୮୮୩ ଜୁଲାଇ ୧୨ ତାରିଖରେ ଓ ୧୮୮୩ ଜୁଲାଇ ୩୦ ତାରିଖରେ (ଯଥାକ୍ରମେ ରାଣୀଙ୍କ ୪ର୍ଥ ଓ ୫ମ ସ୍ମାରକପତ୍ର/ଦରଖାସ୍ତ) । ୧୮୮୩ ଜୁଲାଇ ୧୨ ତାରିଖର ସ୍ମାରକପତ୍ରରେ ରାଣୀଙ୍କ ବକ୍ତବ୍ୟ ଥିଲା :

(୧) ଜଗନ୍ନାଥ ଜେନାମଣି ଭୋଇବଂଶର ଦାୟାଦ ଭାବରେ ହିଁ ପରମ୍ପରାର ଅନୁସରଣ କରି କୌଳିକ 'ରାଜା' ଉପାଧି ଧାରଣ କରିଛନ୍ତି । ଏ ସମ୍ପର୍କରେ ସଟନ୍, ହଣ୍ଟର୍, ପ୍ୟାରୀମୋହନ ଆଚାର୍ଯ୍ୟ ଓ ଶିବଚନ୍ଦ୍ର ସୋମଙ୍କ ଇତିହାସକୁ ପ୍ରମାଣରୂପେ ଉପସ୍ଥାପିତ କରାଯାଇଥିଲା ।

(୨) ସରକାରୀ କାଗଜପତ୍ରରେ ବଂଶପରମ୍ପରାକ୍ରମେ 'ରାଜା' ବା 'ମହାରାଜା' ଉପାଧିକୁ ସବୁବେଳେ ସ୍ୱୀକୃତି ଦିଆଯାଇଛି । ପୁଣି ପୂର୍ବରୁ 'ରାଜା'ପଦ ପ୍ରଚଳିତ ନଥିଲେ ଦିବ୍ୟସିଂହ ଦେବଙ୍କୁ 'ମହାରାଜା' ପଦବୀ ପ୍ରଦାନ କରିବାପାଇଁ ସରକାର ମଞ୍ଜୁର କରିଥିଲେ ବା କିପରି ? (ଦିବ୍ୟସିଂହ ଦେବଙ୍କୁ ପରେ ଏଇ ପଦରୁ ରହିତ କରାଯାଇ ଥିଲା) ।

(୩) 'ରାଜା' ବା ରାଜ-ପ୍ରତିନିଧିଙ୍କ ଅବର୍ତ୍ତମାନରେ ଜଗନ୍ନାଥଙ୍କ ନୀତିର ବ୍ୟାଘାତ ହେବ ଓ ଧର୍ମର ବିରୁଦ୍ଧାଚରଣ କରାଯିବ । 'ରାଜା' ନଥିଲେ ରାଜ-ପ୍ରତିନିଧି ନିଯୁକ୍ତ ହୋଇଥାନ୍ତେ ବା କିପରି ? (ମହାନ୍ତି, ସୁରେନ୍ଦ୍ର, ୧୯୭୦/୧୯୭୭, ପୃ. ୩୦୮-୧୧/୨୩୯-୪୧, ଜଗନ୍ନାଥ ମନ୍ଦିର ପତ୍ରାବଳୀ, ୬ଷ୍ଠ, ପୃ.୧୪୩୦) ।

ଏଥିରୁ ଦେଖାଯିବ ଯେ 'ରାଜା' ଦିବ୍ୟସିଂହ ଦେବଙ୍କ ଜୀବିତାବସ୍ଥାରେ (ସେ ଆଣ୍ଡାମାନ୍‌ରେ ବନ୍ଦୀ ଥିଲେ ମଧ) ତାଙ୍କ ପୁଅ କିପରି 'ରାଜା' ହୋଇ ପାରିବେ (ଅର୍ଥାତ୍ ଏକାବେଳକେ ବାପ ଓ ପୁଅ ଦୁଇଜଣ କିପରି 'ରାଜା' ହୋଇ ପାରିବେ) ବୋଲି ପୁରୀର କଲେକ୍ଟର, ଓଡ଼ିଶାର କମିଶନର ଓ ଛୋଟଲାଟ ଉଠାଇଥିବା ପ୍ରଶ୍ନଟିର କୌଣସି ସଦୁତ୍ତର ରାଣୀଙ୍କ (ତଥା ସର୍ବସାଧାରଣଙ୍କ) ପକ୍ଷରୁ ପୂର୍ବରୁ ଦିଆଯାଇଥିବା ଦରଖାସ୍ତ/ସ୍ମାରକପତ୍ରରେ ଯେପରି ନ ଥିଲା, ସେହିପରି ନ ଥିଲା ମଧ୍ୟ ୧୮୮୩ ଜୁଲାଇ ୧୨

ତାରିଖର ଏହି ସ୍ମାରକପତ୍ରରେ । ମନେହୁଏ ସେ କାରଣରୁ ଏହି ସ୍ମାରକପତ୍ରର କୌଣସି ପ୍ରଭାବ ସରକାରଙ୍କ ଉପରେ ପଡ଼ିବାର ସମ୍ଭାବନା ନ ଥିଲା ।

ବୋଧହୁଏ ଏଇ ସ୍ମାରକପତ୍ର ଦେବା ପରେ ପରେ ଏ କଥାଟି ରାଣୀ ଓ/ବା ତାଙ୍କ ଉପଦେଷ୍ଟାମାନେ ଉପଲବ୍ଧି କରି ପାରିଲେ । (ଆଉ ବୋଧହୁଏ ଏଥିପାଇଁ ରାଣୀଙ୍କ ଉପଦେଷ୍ଟା ଭାବରେ ଉତ୍କଳଗୌରବ ମଧୁସୂଦନଙ୍କୁ ଦାୟୀ କରାଯାଇ ପାରେ । ମନେହୁଏ ଠିକ୍ ଏତିକିବେଳେ ଅର୍ଥାତ୍ ରାଣୀ ୧୮୮୩ ଜୁଲାଇ ୧୨ ତାରିଖର ସ୍ମାରକପତ୍ର ଦେଇ ସାରିବା ପରେ ପରେ ମଧୁବାବୁଙ୍କ ସହ ରାଣୀଙ୍କର ଅଦ୍ଭୁତ ଭାବରେ ଯୋଗାଯୋଗ ହୋଇଥିଲା ଓ ରଙ୍ଗମଞ୍ଚ ଉପରେ ମଧୁବାବୁ ନାଟକୀୟ ଭାବରେ ଆବିର୍ଭୂତ ହେଲେ ।) ତା ଫଳରେ ରାଣୀ ୧୮୮୩ ଜୁଲାଇ ୩୦ ତାରିଖରେ ଆଉ ଏକ ସ୍ମାରକପତ୍ର କଲେକ୍ଟରଙ୍କୁ ଦେଲେ, ଯେଉଁ ସ୍ମାରକପତ୍ରରୁ କିଛି ଅଂଶ ଏ ପ୍ରବନ୍ଧର ପ୍ରାରମ୍ଭରେ ଉଦ୍ଧାର କରାଯାଇଛି । (ସୁରେନ୍ଦ୍ର ମହାନ୍ତି ଭ୍ରମକ୍ରମେ ଏହା କମିଶନରଙ୍କୁ ଦିଆହୋଇ ଥିବାର ସୂଚନା ଦେଇଛନ୍ତି । ଦ୍ର:ମହାନ୍ତି, ସୁରେନ୍ଦ୍ର, ୧୯୭୦/୧୯୭୭, ପୃ. ୩୨୬/୨୫୧) । ଏଇ ସ୍ମାରକପତ୍ରର ସ୍ୱର ସମ୍ପୂର୍ଣ୍ଣ ଭାବରେ ଭିନ୍ନ ଥିଲା । ଏଥିରେ ପ୍ରଥମ ଥରପାଇଁ ସରକାର ଉଠାଇଥିବା ପୂର୍ବୋକ୍ତ ପ୍ରଶ୍ନର ଯଥାର୍ଥ ଉତ୍ତର ଦିଆଯାଇଥିଲା । ଜଗନ୍ନାଥଙ୍କ ସେବାପୂଜା ସହ ପୁରୀ ରାଜଗାଦିର ସମ୍ପର୍କ କେତେ ନିବିଡ଼ ତାହା ପୂର୍ବରୁ ରାଣୀଙ୍କ ପକ୍ଷରୁ ଦିଆଯାଇଥିବା ପ୍ରଥମ ୪ଗୋଟି ସ୍ମାରକପତ୍ର ଓ ସର୍ବସାଧାରଣଙ୍କ ପକ୍ଷରୁ ଦିଆଯାଇଥିବା ୪ଗୋଟି, ଏହିପରି ମୋଟରେ ୮ଟି ସ୍ମାରକପତ୍ରରେ ପ୍ରତିପାଦନ କରାଯାଇଥିଲା । ଏ ସବୁରେ କୁହାଯାଇଥିଲା : ଯିଏ ପୁରୀ 'ରାଜା' ସିଏ ଜଗନ୍ନାଥଙ୍କ ଜଣେ ପ୍ରଧାନ ସେବକ (ବା 'ଆଦ୍ୟସେବକ') ରୂପେ ସେବାପୂଜାର କେତେକ ଦାୟିତ୍ୱ ନିର୍ବାହ କରନ୍ତି ଓ ତାଙ୍କ ବ୍ୟତିରେକେ ଜଗନ୍ନାଥଙ୍କ ସେବାପୂଜାରେ ବ୍ୟାଘାତ ଘଟିବ । (ଏହି ଦାବିକୁ ମଧ ସରକାର ସ୍ୱୀକାର କରିଥିଲେ, ହୁଏତ ପରୋକ୍ଷରେ) । ଏହି ତତ୍ତ୍ୱ ବା ସିଦ୍ଧାନ୍ତର ଅପର ଦିଗଟି (ଅଥବା ଏହି ତତ୍ତ୍ୱ ବା ସିଦ୍ଧାନ୍ତରୁ ଉଦ୍ଭୁତ ଆଉ ଏକ ତତ୍ତ୍ୱ ବା ସିଦ୍ଧାନ୍ତ ହେଉଛି,) ଯିଏ ଜଗନ୍ନାଥଙ୍କ ସେବାପୂଜାକୁ ଅଯୋଗ୍ୟ ସିଏ ପୁରୀ 'ରାଜା' ନୁହଁନ୍ତି, ହେବେ ନାହିଁ ବା ହୋଇପାରିବେ ନାହିଁ । ଏଇ କଥାଟି ପୂର୍ବୋକ୍ତ ୮ଟିଯାକ (ରାଣୀଙ୍କ ପ୍ରଦତ୍ତ ପ୍ରଥମ ୪ଗୋଟି + ସର୍ବସାଧାରଣଙ୍କଦ୍ୱାରା ପ୍ରଦତ୍ତ ୪ଗୋଟି) ଦରଖାସ୍ତ ବା ସ୍ମାରକପତ୍ରରେ ସ୍ପଷ୍ଟକରି କୁହାଯାଇନଥିଲା । ତାହା ପ୍ରଥମ ଥର ପାଇଁ ସ୍ପଷ୍ଟ କରି କୁହାଗଲା ରାଣୀଙ୍କ ପୂର୍ବୋକ୍ତ ୧୮୮୩ ଜୁଲାଇ ୩୦ ତାରିଖର ସ୍ମାରକପତ୍ରରେ । ଏହା ଫଳରେ ପରିସ୍ଥିତିର ଆମୂଳ ପରିବର୍ତ୍ତନ ଘଟିଲା ଓ

ପରିସ୍ଥିତି ହେଲା ଜଗନ୍ନାଥ ଜେନାମଣି 'ରାଜା' ମୁକୁନ୍ଦଦେବ ହେବାରେ ସହାୟକ । କାରଣ ଏହା ପରେ ଯଦି ପ୍ରମାଣ କରିଦିଆଯାଇପାରେ ଯେ ଦିବ୍ୟସିଂହ ଦେବ ଜଗନ୍ନାଥଙ୍କ ସେବାପୂଜାର ଦାୟିତ୍ୱ ନିର୍ବାହ କରିବାରେ ବା ସେବାପୂଜାର ଅଧିକାରୀ ହେବାପାଇଁ, ଜଗନ୍ନାଥଙ୍କ ଆଦ୍ୟସେବକ ହେବାପାଇଁ ଅଯୋଗ୍ୟ, ତା'ହେଲେ ସେ ଆପେ ଆପେ ପୁରୀ-ରାଜା ପଦବୀପାଇଁ, ପୁରୀ ରାଜଗାଦିପାଇଁ ଅଯୋଗ୍ୟ ହୋଇଯିବେ ଓ ଆଉ ପୁରୀ 'ରାଜା' ହୋଇ ରହିପାରିବେ ନାହିଁ । ତେଣୁ ତାଙ୍କ ଜୀବିତାବସ୍ଥାରେ ଜଗନ୍ନାଥ ଜେନାମଣି ପୁରୀ 'ରାଜା' ହେବାରେ ବା 'ରାଜା' ମୁକୁନ୍ଦଦେବ ବୋଲାଇବାରେ ଆଉ କୌଣସି ବାଧା ରହିବ ନାହିଁ । ଏହି ସ୍ମାରକପତ୍ରଟିରେ ତାହାହିଁ ଅତି ଚତୁରତା ଓ ସଫଳତାର ସହ କରାଯାଇଥିଲା ।

ଯେଉଁ ପ୍ରମାଣ ବଳରେ ଦିବ୍ୟସିଂହ ଦେବଙ୍କୁ ଏହି ସ୍ମାରକପତ୍ରରେ ଜଗନ୍ନାଥଙ୍କ ସେବାପୂଜାପାଇଁ ଅଯୋଗ୍ୟ (ଆଉ ପୁରୀ ରାଜଗାଦି ପାଇଁ ଅଯୋଗ୍ୟ ଓ ସେଥିରୁ ବଞ୍ଚିତ) ବୋଲି ପ୍ରତିପାଦନ କରାଗଲା, ସେ ମଧ୍ୟରୁ ପ୍ରଥମଟି ହେଉଛି ଶାସ୍ତ୍ରୀୟ ପ୍ରମାଣ । ଏହା ଠିକ୍ ଶାସ୍ତ୍ରୀୟ ପ୍ରମାଣ ନହେଲେ ହେଁ ଏହାକୁ ଶାସ୍ତ୍ରୀୟ ପ୍ରମାଣର ରୂପ ଓ ମର୍ଯ୍ୟାଦା ଦିଆଯାଇଥିଲା । ଏହା ହେଉଛି ପୁରୀ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟ ତଥା ଅନ୍ୟ କେତେକ ଶାସ୍ତ୍ର ବିଶାରଦ ପଣ୍ଡିତମାନଙ୍କ ଅଭିମତ । ଏମାନେ ମତପ୍ରକାଶ କରିଥିଲେ ଯେ ଯଦି ଦ୍ୱୀପାନ୍ତରିତ ଦିବ୍ୟସିଂହ ଦେବ କେବେ ମୁକ୍ତି ପାଇ ସ୍ୱଦେଶ ଆଗମନ କରନ୍ତି ତେବେ ସେ ପ୍ରଚଳିତ ବିଧି ଅନୁଯାୟୀ (କଳାପାଣି ଯାଇଥିବାରୁ ତଥା ମ୍ଳେଚ୍ଛହାତରେ ଖାଇଥିବାରୁ) ଜଗନ୍ନାଥଙ୍କ ସେବାଅର୍ଚ୍ଚନା ପାଇଁ ଯୋଗ୍ୟ ବିବେଚିତ ହେବେ ନାହିଁ (ଅନ୍ୟକଥାରେ ପୁରୀ ରାଜା ହୋଇ ପାରିବେ ନାହିଁ) । ଆଉ ଶାସ୍ତ୍ରୀୟ ପ୍ରମାଣର ରୂପ ଓ ମର୍ଯ୍ୟାଦା ଦେବା ଉଦ୍ଦେଶ୍ୟରେ ଏହି ଅଭିମତକୁ ସଂସ୍କୃତ ଭାଷାରେ ଦିଆଯାଇ ଥିଲା । ମନେହୁଏ ରାଣୀଙ୍କ ପ୍ରଭାବରେ ଓ ପୁରୀ ରାଜବଂଶ ପ୍ରତି ଶ୍ରଦ୍ଧା, ସମ୍ମାନ ଓ ଶୁଭେଚ୍ଛାବଶତଃ ସେମାନେ ଏପରି ଅଭିମତ ଦେଇଥିଲେ । ଆଉ ଏହା ସଂଯୋଜିତ ହେଲା ରାଣୀଙ୍କ ପୂର୍ବୋକ୍ତ ସ୍ମାରକପତ୍ରରେ (ଜଗନ୍ନାଥ ମନ୍ଦିର ପତ୍ରାବଳୀ, ୬ଷ୍ଠ, ପୃ. ୧୪୩୫) ।

ଆଉ ଯେଉଁ ଦ୍ୱିତୀୟ ପ୍ରମାଣ ବଳରେ ଦିବ୍ୟସିଂହ ଦେବଙ୍କୁ ଜଗନ୍ନାଥଙ୍କ ସେବାପୂଜା ତଥା ପୁରୀ ରାଜଗାଦିରୁ ବଞ୍ଚିତ କରାଯାଇ ପାରିଲା ତା' ହେଉଛି ପରମ୍ପରାର ପ୍ରମାଣ । ଯଦି ପରମ୍ପରାରୁ ଦେଖାଇ ଦିଆଯାଇ ପାରିବ ଯେ ଅତୀତରେ ଜଗନ୍ନାଥଙ୍କ ଆଦ୍ୟସେବକ ଥିବା କୌଣସି ରାଜା ତାଙ୍କ ଜୀବଦ୍ଦଶାରେ ଜଗନ୍ନାଥଙ୍କ ସେବାପୂଜା ଅଧିକାରରୁ ଓ ତାର ଫଳସ୍ୱରୂପ ରାଜଗାଦିରୁ ବଞ୍ଚିତ ହୋଇଥିଲେ ତା' ହେଲେ ପୂର୍ବୋକ୍ତ ଶଙ୍କରାଚାର୍ଯ୍ୟ

ଓ ଅନ୍ୟାନ୍ୟ ଶାସ୍ତ୍ରବିଦ୍ ପଣ୍ଡିତମାନଙ୍କ ମତାମତକୁ ଦୃଢ ସମର୍ଥନ ମିଳିବ ବା ତାହା ଅଧିକ ପ୍ରାମାଣିକ ହେବ । ଏଇ ପ୍ରସଙ୍ଗରେ ଭୋଇ ୨ୟ ରାମଚନ୍ଦ୍ର ଏକ ମୁସଲମାନ ରମଣୀକୁ ବିବାହ କରିଥିଲେ ଓ ମୁସଲମାନ ହୋଇଥିଲେ ବୋଲି ଯେଉଁ ଜନଶ୍ରୁତି ପ୍ରଚଳିତ ଥିଲା (ହୁଏତ ପୁରୀ ରାଜପରିବାରରେ ମଧ୍ୟ ଏହା ପ୍ରଚଳିତ ଥିଲା) ତାହା ବୋଧହୁଏ ରାଣୀ ସୂର୍ଯ୍ୟମଣି ବା ତାଙ୍କର କୌଣସି ଉପଦେଷ୍ଟାଙ୍କ ମନରେ ପଡ଼ିଲା । ତାହା ହିଁ ଯୋଗାଇ ଦେଲା ଏକ ଅପୂର୍ବ ସୁଯୋଗ ପରମ୍ପରାରୁ ପ୍ରମାଣଟିଏ ଉପସ୍ଥାପନ କରିବାପାଇଁ । ହୁଏତ 'ମାଦଳାପାଞ୍ଜି' ପୋଥିରୁ ଖୋଜି ବାହାର କରାଗଲା ରାଜା ୨ୟ ରାମଚନ୍ଦ୍ରଙ୍କ ବୃତ୍ତାନ୍ତ । ସେଥିରେ କିନ୍ତୁ ନଥିଲା ସେ ହିନ୍ଦୁ ଧର୍ମଚ୍ୟୁତ ହୋଇ ରାଜଗାଦିରୁ ବଞ୍ଚିତ ହୋଇଥିଲେ ବୋଲି । ପୂର୍ବେ ଆଲୋଚନା ମାଧ୍ୟମରେ ଦର୍ଶାଇଦିଆଯାଇଛି ଯେ ୨ୟ ରାମଚନ୍ଦ୍ର ଜଗନ୍ନାଥଙ୍କ ଆଦ୍ୟସେବକ ହେବାପାଇଁ ଅଯୋଗ୍ୟ ହୋଇଥିବାରୁ ଖୋର୍ଦ୍ଧା ରାଜ୍ୟର ରାଜପଦକୁ ଅଯୋଗ୍ୟ ହୋଇନଥିଲେ । ସେ ପୁରୀରୁ ଜଗନ୍ନାଥ ଆଦି ଦେବମୂର୍ତ୍ତିମାନଙ୍କୁ ଗୋପନରେ ଅପହରଣ କରି କୋଦଳା ଆଠଗଡର ମାରଦା ଆଦି ସ୍ଥାନକୁ ନେଇ ରଖିବାରୁ ବଙ୍ଗ ନବାବଙ୍କ ଯାତ୍ରୀକର ବାବଦରୁ ପ୍ରଚୁର ରାଜସ୍ୱ ହାନି ହୋଇଥିଲା; ଏ କାରଣରୁ ତାଙ୍କୁ ସୁବାଦାର ୨ୟ ମୁର୍ଶିଦକୁଲି ଖାଁ' ପଦଚ୍ୟୁତ କରିଥିଲେ ଓ ତାଙ୍କ ସ୍ଥାନରେ ପଟିଆର ପଦ୍ମନାଭ ଦେବଙ୍କୁ ଖୋର୍ଦ୍ଧା ସିଂହାସନରେ ବସାଇଥିଲେ ବୋଲି ପୂର୍ବେ ଦର୍ଶାଯାଇଛି । କିନ୍ତୁ ୧୯ଶ ଶତାବ୍ଦୀରେ ତାହା ଥିଲା ବିସ୍ମୃତିର ଗର୍ଭରେ ।

କିନ୍ତୁ ଏପରି ସୁଯୋଗକୁ ହାତଛଡ଼ା କରୁଛି କିଏ ? ତେଣୁ ସେ ମୁସଲମାନ ହୋଇଥିବାରୁ ଆଦ୍ୟସେବକ ହେବାକୁ ଅଯୋଗ୍ୟ ହୋଇଥିଲେ ଓ ସେ କାରଣରୁ ହିଁ ରାଜପଦକୁ ବି ଅଯୋଗ୍ୟ ହୋଇଥିଲେ ବୋଲି ମିଥ୍ୟା ଦାବି କରାଗଲା । ପୁଣି ଏପରି ମିଥ୍ୟା ଦାବିକୁ ସହଜରେ ବିଶ୍ୱାସ କରାଇଦେବାପାଇଁ ୨ୟ ରାମଚନ୍ଦ୍ରଙ୍କ ମୁସଲମାନ ହୋଇଥିବା ଜନଶ୍ରୁତିରେ ତା ସହ କୌଣସି ସମ୍ପର୍କ ନଥିବା ସିଂହଦ୍ୱାର ଗୁମଟରେ ବିରାଜିତ ପତିତପାବନ ମୂର୍ତ୍ତିକୁ ସଂଯୁକ୍ତ କରାଯାଇ ଜନଶ୍ରୁତିଟିର ପରିବର୍ଦ୍ଧନ କରାଗଲା । ଏହିପରି ଭାବରେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଜନଶ୍ରୁତି ମାଧ୍ୟମରେ କୁହାଗଲା ୨ୟ ରାମଚନ୍ଦ୍ର ହିନ୍ଦୁ ଧର୍ମଚ୍ୟୁତ ହୋଇ ମନ୍ଦିରର ପ୍ରବେଶାଧିକାରରୁ ବଞ୍ଚିତ ଥିବାରୁ ହିଁ ତାଙ୍କ ଦର୍ଶନ ଓ ସେବାଅର୍ଚ୍ଚନାପାଇଁ ଏ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା । ଅନ୍ୟ କଥାରେ ୨ୟ ରାମଚନ୍ଦ୍ରଙ୍କର ଯେ ମନ୍ଦିରରେ ପ୍ରବେଶାଧିକାର ନଥିଲା ଓ ସେଇ କାରଣରୁ ସେ ଜଗନ୍ନାଥଙ୍କର ଆଦ୍ୟସେବକ ଭାବରେ ତାଙ୍କ ସେବାପୂଜାକୁ ଅଯୋଗ୍ୟ ହୋଇପଡିବାରୁ ଗାଦିଚ୍ୟୁତ ବି ହୋଇଥିଲେ । ଆଉ ସିଂହଦ୍ୱାର ଗୁମଟରେ ବିରାଜିତ ପତିତପାବନଙ୍କୁ ବି

କରାଗଲା ଏପରି ଘଟଣାର ସାକ୍ଷୀ । ପୁଣି ପୂର୍ବୋକ୍ତ ଜନଶ୍ରୁତି ସହ ଏହି ପତିତପାବନ ମୂର୍ତ୍ତି ସମ୍ପର୍କୀୟ କଳ୍ପିତ ବିବରଣୀ ଏତେ ସୁନ୍ଦର ଭାବରେ ଖାପଖାଇ ମିଶିଗଲା ଯେ ସର୍ବସାଧାରଣଙ୍କ ଆଖିରେ ତା' ଧରା ବି ପଡ଼ିଲା ନାହିଁ ।

ଆଉ ଏଇ ପରିବର୍ଦ୍ଧିତ ଜନଶ୍ରୁତିକୁ ପ୍ରାମାଣିକ ରୂପ ଦେବାପାଇଁ ଏକ 'ଜାଲ' ବିବରଣ ପ୍ରସ୍ତୁତ କରାଯାଇ ତାହାକୁ 'ମାଦଳାପାଞ୍ଜି'ର ଅଂଶବିଶେଷ ବୋଲି ଚଳାଇ ଦିଆଗଲା । ପୁଣି 'ମାଦଳାପାଞ୍ଜି'କୁ ଅନ୍ୟ କେହି ଦେଖିବାର ସମ୍ଭାବନା ନ ଥିବାରୁ ଏହା ହିଁ ଥିଲା ସବୁଠାରୁ ନିରାପଦ ଉପାୟ, ପରିବର୍ଦ୍ଧିତ ଜନଶ୍ରୁତିର ପ୍ରାମାଣିକତାକୁ ସିଦ୍ଧ କରିବା ପାଇଁ । (ଅନୁମିତ ହୁଏ ଏସବୁ ଓକିଲିଆ ବୁଦ୍ଧି ମଧୁବାବୁଙ୍କ ବିଚକ୍ଷଣ ମୁଣ୍ଡରୁ ବାହାରିଥିବ କାରଣ ରଙ୍ଗମଞ୍ଚରେ ସେ ଆବିର୍ଭୂତ ହେବା ପରେ ରାଣୀଙ୍କ ଯୁକ୍ତିର ସମ୍ପୂର୍ଣ୍ଣ ସ୍ୱର ପରିବର୍ତ୍ତନ ଘଟିଥିଲା ବୋଲି ମନେ ହୁଏ । ତେବେ ସେପରି କିଛି ପ୍ରମାଣ ଅବଶ୍ୟ ନାହିଁ ।) ଆଉ ତାହାକୁ ତଥା ତାର ଇଂରାଜୀ ଅନୁବାଦକୁ ମଧ ରାଣୀଙ୍କ ସେହି ସ୍ମାରକପତ୍ରରେ ସଂଯୋଜିତ କରାଗଲା (ତତ୍ରୈବ, ପୃ.୧୪୩୬) ।

ପୁରୀର କଲେକ୍ଟର ଏହି ସ୍ମାରକପତ୍ରର ବକ୍ତବ୍ୟକୁ ପ୍ରାୟ ସମ୍ପୂର୍ଣ୍ଣରୂପେ ଗ୍ରହଣ କରି ୧୦ ସେପ୍ଟେମ୍ବର ୧୮୮୩ରେ ଓଡିଶାର କମିଶନରଙ୍କୁ ଦେଇଥିବା ରିପୋର୍ଟରେ ଲେଖିଥିଲେ, "The guardian and Pundits go further and hold that the convict Raja has by [h]is banishment become permanently incapacitated from the service of Jaggannath and should he ever be allowed to return to the country he would on no account be permitted to resume his duty in the Temple. An extract has been given from the 'Madala Panji' or the historical account of the Temple narrating the circumstances under which Maharaja Ramachandra Deb who had lost caste by his association with Musalmans was deprived of the service of the Temple and was replaced by his grandson who was formally installed Raja during the lifetime of the former."(ତତ୍ରୈବ, ପୃ.୧୪୨୭-୨୮) । କଲେକ୍ଟରଙ୍କ ଏହି ଅଭିମତକୁ କମିଶନର ଓ ସରକାର ମଧ୍ୟ ଗ୍ରହଣ କରିନେଇଥିଲେ । ତେଣୁ ଦିବ୍ୟସିଂହ ଦେବଙ୍କ ଜୀବିତାବସ୍ଥାରେ ତାଙ୍କ ନାବାଳକ ପୁତ୍ର ଜଗନ୍ନାଥ ଜେନାମଣି 'ରାଜା' ହେବାରେ ଆଉ କୌଣସି ବାଧା ରହିଲା ନାହିଁ ।

ଶେଷରେ ରାଣୀଙ୍କ ୧୮୮୩ ଜୁଲାଇ ୩୦ ତାରିଖ ସ୍ମାରକପତ୍ରର ପୃଷ୍ଠଭୂମିର ବିସ୍ତୃତ ଆଲୋଚନାରୁ ପୂର୍ବେ ଉତ୍ଥାପିତ ପ୍ରଶ୍ନ ଗୁଡିକର - ଯଥା: କେଉଁ କାରଣରୁ ଉଦ୍ଦେଶ୍ୟପ୍ରଣୋଦିତ ଭାବରେ 'ମାଦଳାପାଞ୍ଜି'ର ଗୋଟିଏ ଜାଲ୍ ଉଦ୍ଧୃତାଂଶ ପ୍ରସ୍ତୁତ

କରାଯାଇଥିଲା ? ଭୋଇ ୨ୟ ରାମଚନ୍ଦ୍ରଙ୍କ ସମୟରେ ବଡ଼ଦେଉଳ ସିଂହଦ୍ୱାର ଗୁମ୍ଫଟରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା ହୋଇଥିଲା ବୋଲି ସେଥିରେ କିପରି ଓ କାହିଁକି କୁହାଯାଇଥିଲା ? 'ମାଦଳାପାଞ୍ଜି'ର ଏପରି ଏକ ଜାଲ୍ ଉଦ୍ଧୃତାଂଶ ପ୍ରସ୍ତୁତ କରାଇ ସେଥିରେ ପତିତପାବନ ମୂର୍ତ୍ତି ସମ୍ପର୍କରେ ଏପରି ଏକ ଭ୍ରମାତ୍ମକ ବିବରଣୀ ଦେବାଦ୍ୱାରା ରାଣୀ ସୂର୍ଯ୍ୟମଣିଙ୍କ କେଉଁ ସ୍ୱାର୍ଥ ସାଧିତ ହୋଇଥିଲା ? ଏହି ପ୍ରଶ୍ନଗୁଡ଼ିକର – ସନ୍ତୋଷଜନକ ଉତ୍ତର ତ ରହିଛି ତଥା ପୂର୍ବେ ଦିଆଯାଇଥିବା ସିଦ୍ଧାନ୍ତ ଯଥା ରାଣୀଙ୍କ ୩୦ ଜୁଲାଇ ୧୮୮୩ରେ ପ୍ରଦତ୍ତ ସ୍ମାରକପତ୍ରର ୨ୟ ବକ୍ତବ୍ୟଟିର କୌଣସି ଐତିହାସିକ ଭିତ୍ତି ନ ଥିଲା ବୋଲି ପରୋକ୍ଷରେ ପ୍ରମାଣିତ ବି ହେଉଛି । ରାଣୀଙ୍କ ଏଇ ସ୍ମାରକପତ୍ର ଅବଶ୍ୟ ତା'ର ଉଦ୍ଦେଶ୍ୟ ସାଧନରେ ସମ୍ପୂର୍ଣ୍ଣ ଭାବରେ ସଫଳ ହୋଇ ଅବଶେଷରେ ଜଗନ୍ନାଥ ଜେନାମଣିଙ୍କପାଇଁ ସରକାରଙ୍କଠାରୁ 'ରାଜା' ମୁକୁନ୍ଦଦେବ ସ୍ୱୀକୃତି ଆଣିଥିଲା । ତେବେ ତାହାର ବିବରଣ ଏଠାରେ ଅବାନ୍ତର ।

ମୋଟ ଉପରେ ଏଇ ପୁରୀ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ଗୁମୁଟରେ ବିରାଜିତ ପତିତପାବନ ହିନ୍ଦୁଧର୍ମରୁ ପତିତ ଭୋଇ ୨ୟ ରାମଚନ୍ଦ୍ରଙ୍କୁ ପାବନ କରିଥିଲେ କି ନାହିଁ ତା ଅବଶ୍ୟ ଜଣାନାହିଁ, କିନ୍ତୁ ଆଣ୍ଡାମାନକୁ ନିର୍ବାସିତ ହତଭାଗ୍ୟ ଦିବ୍ୟସିଂହ ଦେବଙ୍କୁ ଆଜୀବନ ପତିତ କରି ରଖିବାପାଇଁ ସେ ନିର୍ବାହ କରିଥିଲେ ଏକ ବିଶେଷ ଭୂମିକା । ଅର୍ଥାତ୍ କେବେ ଯଦି ଦିବ୍ୟସିଂହ ଦେବ ମୁକ୍ତି ପାଇ ଆଣ୍ଡାମାନରୁ ଫେରିଆସିଥାଆନ୍ତେ, ତା' ହେଲେ ସେ ନିଜକୁ ପତିତ, ଜଗନ୍ନାଥଙ୍କ ସେବାପୂଜା ଅଧିକାରରୁ ବଞ୍ଚିତ ଓ ଜଗନ୍ନାଥ ମନ୍ଦିରର ପରିଚାଳନା ଅଧିକାରରୁ ବହିଷ୍କୃତ ତଥା ଗାଦିଚ୍ୟୁତ ବା 'ରାଜା' ପଦବୀରୁ ରହିତ ବୋଲି ଦେଖିବାପାଇଁ ପାଇଥାନ୍ତେ । ଆଉ ଠିକ୍ ସେଇ ଉଦ୍ଦେଶ୍ୟରେ ହିଁ ମନ୍ଦିରର ସିଂହଦ୍ୱାରରେ ବିରାଜିତ ପତିତପାବନଙ୍କୁ ବ୍ୟବହାର କରାଯାଇଥିଲା । ସେ ଅବଶ୍ୟ ହୋଇଥିଲେ ତାଙ୍କ ପୁତ୍ର ଜଗନ୍ନାଥ ଜେନାମଣି ଓରଫ 'ରାଜା' ମୁକୁନ୍ଦଦେବଙ୍କ ତ୍ରାଣକର୍ତ୍ତା ।

(ଗ)

ଉପରୋକ୍ତ ଆଲୋଚନାରୁ ଦେଖାଗଲା ଯେ ଭୋଇ ୨ୟ ରାମଚନ୍ଦ୍ର ଦେବ ଏକ ମୁସଲମାନ ରମଣୀର ପ୍ରଣୟ ଓ ପରିଣୟ ପାଶରେ ଆବଦ୍ଧ ହୋଇ ଜାତିଚ୍ୟୁତ (ଓ ଏପରି କି ଇସଲାମ ଧର୍ମାବଲମ୍ବୀ ବି) ହୋଇଥିଲେ ବୋଲି ମଧ୍ୟଯୁଗରେ ଏକ ଜନଶ୍ରୁତି ପ୍ରଚଳିତ ଥିଲା ଓ ସେହି ଜନଶ୍ରୁତିଟିର ବିଷୟବସ୍ତୁ ସତ୍ୟଭିତ୍ତିକ ହୋଇଥିବାର ଯଥେଷ୍ଟ ସମ୍ଭାବନା ମଧ୍ୟ ରହିଛି । ୧୯ଶ ଶତକରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ଏହି ଜନଶ୍ରୁତିର ପରିବର୍ତ୍ତନ

ଓ ପରିବର୍ଦ୍ଧନ କରାଯାଇ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ଗୁମଟରେ ବିରାଜିତ ପତିତପାବନଙ୍କୁ ଏହା ସହ ସଂଯୁକ୍ତ କରିଦିଆଗଲା । ପୁଣି ସେହି ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଜନଶ୍ରୁତିଟିକୁ ପ୍ରାମାଣିକ କରିବାପାଇଁ ଏକ ବିବରଣୀ ପ୍ରସ୍ତୁତ କରାଯାଇ ତାହାକୁ ବହୁ ପୂର୍ବେ ଲିଖିତ 'ମାଦଳାପାଞ୍ଜି'ର ଅଂଶବିଶେଷ କହି ଚଳାଇ ଦିଆଗଲା । (ଆଉ ଏ କ୍ଷେତ୍ରରେ ବିଶେଷ ସତର୍କତା ଅବଲମ୍ବନ କରାଯାଇ ନ ଥିବାରୁ ଏହା ସହ ଆଉ କେତେକ ଭ୍ରମାତ୍ମକ ତଥ୍ୟର ପରିବେଷଣ ବି କରାଗଲା ।) ଏହା ଫଳରେ ଅବଶ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନରେ ଏହି ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଜନଶ୍ରୁତିର ସଫଳ ଉପଯୋଗ କରାଯାଇପାରିଥିଲା । କିନ୍ତୁ ଏହା ପରବର୍ତ୍ତୀ ଗବେଷକ ଓ ସାହିତ୍ୟ ସ୍ରଷ୍ଟାମାନଙ୍କୁ ଭ୍ରମାତ୍ମକ ସିଦ୍ଧାନ୍ତରେ ଉପନୀତ କରାଇଲା । ଐତିହାସିକ ଭିତ୍ତି ନଥାଇ ମଧ୍ୟ କିପରି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନ ନିମିତ୍ତ ପ୍ରଚଳିତ ଜନଶ୍ରୁତିକୁ (ବା ଏକ ଜଣା ଘଟଣାକୁ) ପରିବର୍ତ୍ତିତ ଓ ପରିବର୍ଦ୍ଧିତ କରାଯାଏ ତାହାର କେତେକ ଉଦାହରଣ କାଞ୍ଚିକାବେରୀ ଜନଶ୍ରୁତି ଓ ନୀଳମାଧବ-ଜଗନ୍ନାଥ/ଦେଉଳତୋଳା ଜନଶ୍ରୁତି,ପୁରୀ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଗାନ ସମ୍ପର୍କୀୟ ଜନଶ୍ରୁତି, କଳାପାହାଡ ଜନଶ୍ରୁତିର ଅନୁଶୀଳନରୁ ମିଳିଅଛି (ଦ୍ରଷ୍ଟବ୍ୟ: ଦାଶ, ଗଗନେନ୍ଦ୍ର ନାଥ, ୧୯୭୯ ଓ ୨୦୧୪, ୧୯୮୨ ଓ Dash, G. N., 1976, 1998 and 2001) । ଏହି ପତିତପାବନ ଜନଶ୍ରୁତି ତାହାର ଆଉ ଏକ ସୁନ୍ଦର ଦୃଷ୍ଟାନ୍ତ । ଏ ସବୁର ଅନୁଧ୍ୟାନରୁ ଏଇ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ହୁଏ ଯେ ଜନଶ୍ରୁତି ଦର୍ପଣ ତୁଲ୍ୟ କେବଳ ନିଷ୍କ୍ରିୟ ଭୂମିକା (Passive or Static role) ଗ୍ରହଣ କରି ଇତିହାସର କେବଳ ପ୍ରତିବିମ୍ବ ବା ପ୍ରତିଚ୍ଛବି ବହନ କରେନାହିଁ, ଇତିହାସର ସଂରଚନା ପ୍ରସଙ୍ଗରେ ଅନେକ ସମୟରେ ନିର୍ଦ୍ଦିଷ୍ଟ ସକ୍ରିୟ ଭୂମିକା (active or dynamic role) ବି ଗ୍ରହଣ କରିଥାଏ । ତେଣୁ ଗୋଟିଏ ଜନଶ୍ରୁତିର ଅନୁଶୀଳନ କରିବା ବେଳେ - ସେଥିରେ କେବଳ ପ୍ରତିଫଳିତ ଅତୀତର ପ୍ରତିଚ୍ଛବିର ଉଦ୍ଧାର କରିବାଦ୍ୱାରା ନୁହେଁ, ବା ତା'ର ଐତିହାସିକ ଭିତ୍ତି ଅନ୍ୱେଷଣରେ ନୁହେଁ. - ଆହୁରି ତଳେଇ କରି ଦେଖି ଜନଶ୍ରୁତିଟି କେଉଁ ଉଦ୍ଦେଶ୍ୟରେ (ତାହା ଏକ ବା ଏକାଧିକ ହୋଇପାରେ) ବ୍ୟବହାର କରାଯାଇଥିଲା ଓ/ବା କରାଯାଉଛି ତାହା ଖୋଜି ବାହାର କରିବାଦ୍ୱାରା ହିଁ, ଅନ୍ୟ କଥାରେ ତା'ର ସକ୍ରିୟ ଭୂମିକାଟି ଆବିଷ୍କାର କରିବାଦ୍ୱାରା ହିଁ, ଜନଶ୍ରୁତି ମଧ୍ୟରେ ଦୃଷ୍ଟିର ଅନ୍ତରାଳରେ ଅନ୍ତଃସଲୀଳା ଫଲ୍‌ଗୁ ପରି ପ୍ରବାହିତ ସତ୍ୟ-ସ୍ରୋତସ୍ୱତୀର ଆବିଷ୍କାର କରାଯାଇ ପାରିବ । ଜନଶ୍ରୁତିଟିକୁ ଯେଉଁ ଉଦ୍ଦେଶ୍ୟରେ ଉପଯୋଗ ବା ବ୍ୟବହାର କରାଯାଇଥିଲା ଓ/ବା କରାଯାଉଛି ସେଇ ଉଦ୍ଦେଶ୍ୟର

ଖିଅଟିକୁ ଖୋଜି ବାହାର କରିପାରିଲେ ଜନଶ୍ରୁତି ରୂପକ ଅଡୁଆ ସୂତାର ଅଡୁଆ ଭାଙ୍ଗି ତାକୁ ସହଜରେ ସଜାଡ଼ି ଗୁଡ଼ାଇ ହେବ । କେବଳ ସେତିକି ନୁହେଁ, ସେଇ ସୂତାରେ ଘଟଣାର ଫୁଲକୁ ଗୁନ୍ଥି ଇତିହାସର ମାଳା ରଚନା କରାଯାଇ ପାରିବ ।

୧୮୮୩ରେ ଘଟିଥିବା ଏହି ଘଟଣାର ମାତ୍ର ୩୦ ବର୍ଷ ପରେ, ୧୯୧୫ରେ, ଏହା କିଛି ପରିମାଣରେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇ ଜନଶ୍ରୁତି ଭାବରେ ପ୍ରଚଳିତ ଥିଲା ବୋଲି 'ପୁରୀତୀର୍ଥ' ନାମକ ବଙ୍ଗଭାଷାରେ ରଚିତ ପୁସ୍ତକର ରଚୟିତା ଉଲ୍ଲେଖ କରିଥିଲେ (ମିତ୍ର, ନଗେନ୍ଦ୍ର ନାଥ, ୧୩୨୨ ସାଲ୍, ପୃ.୭୬) । ତାର ୬ ବର୍ଷ ପରେ ଆଉ ଜଣେ ଲେଖକ ୧୯୨୧ରେ ମଧ୍ୟ ଏହି ଜନଶ୍ରୁତି ପ୍ରଚଳିତ ଥିଲା ବୋଲି କହନ୍ତି (ସରକାର, ଗୁରୁଦାସ, ୧୯୨୧, ପୃ. ୧୨) । ତାଙ୍କ ପରେ ଚିନ୍ତାମଣି ଆଚାର୍ଯ୍ୟ ବି ଇଂରାଜୀରେ ଲିଖିତ Puri ନାମକ ପୁସ୍ତକର ୧୯୪୯ରେ ପ୍ରକାଶିତ ଦ୍ୱିତୀୟ ସଂସ୍କରଣରେ ଏ ଜନଶ୍ରୁତିର ଉଲ୍ଲେଖ କରିଛନ୍ତି (Acharyya, Chintamoni 1949, p.44) । (୧୯୪୧ରେ ପ୍ରକାଶିତ ସେ ପୁସ୍ତକର ପ୍ରଥମ ସଂସ୍କରଣରେ ଏ ଜନଶ୍ରୁତିର ଉଲ୍ଲେଖ ଥିଲା କି ନାହିଁ ତା ମତେ ଜଣାନାହିଁ ।) ପୁଣି ୧୯୬୯ରେ କେଦାରନାଥ ମହାପାତ୍ରଙ୍କ ପରି ପ୍ରଖ୍ୟାତ ଐତିହାସିକ ବି ୨ୟ ରାମଚନ୍ଦ୍ର ହିନ୍ଦୁଧର୍ମଚ୍ୟୁତ ହୋଇଥିବା ବିଷୟକୁ ଅସ୍ୱୀକାର କରିବା ପ୍ରସଙ୍ଗରେ ତାଙ୍କର "ସେ ଜଗନ୍ନାଥ ଦର୍ଶନରୁ ବଞ୍ଚିତ ହୋଇ ସିଂହଦ୍ୱାରରେ ପ୍ରତିଷ୍ଠିତ ପତିତପାବନ ମୂର୍ତ୍ତି ଦର୍ଶନଦ୍ୱାରା ଶେଷଜୀବନ ଅତିବାହିତ କରିଥିବାର ଯେଉଁ କିମ୍ବଦନ୍ତୀ ପ୍ରଚଳିତ ତାହା ତାଙ୍କ ହିନ୍ଦୁତ୍ୱକୁ ସମର୍ଥନ କରେ ।" (ମହାପାତ୍ର, କେଦାରନାଥ, ୧୯୬୯, ପୃ୧୮୮) ପରି ବକ୍ତବ୍ୟ ମାଧ୍ୟମରେ ମାତ୍ର ଶହେ ବର୍ଷରୁ କମ୍ ବର୍ଷ ତଳେ ସୃଷ୍ଟ ଏହି ଜନଶ୍ରୁତିକୁ ଏକ ପ୍ରଚଳିତ ବା 'ପୁରୁଣା' ଜନଶ୍ରୁତିର ମାନ୍ୟତା ଦେଇଛନ୍ତି, ଯାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଶେଷରେ ସୁରେନ୍ଦ୍ର ମହାନ୍ତିଙ୍କଦ୍ୱାରା ରଚିତ ଆଉ ୧୯୬୮ରେ ପ୍ରଥମ ଥରପାଇଁ ପ୍ରକାଶିତ 'ନୀଳ ଶୈଳ'ରେ ଓ ୧୯୭୦ରେ ପ୍ରଥମ ଥରପାଇଁ ପ୍ରକାଶିତ ତାଙ୍କ 'ଶତାବ୍ଦୀର ସୂର୍ଯ୍ୟ'ରେ କିପରି ଏଇ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଜନଶ୍ରୁତିକୁ ଗ୍ରହଣ କରାଯାଇଛି ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଛି ତା'ର ସୂଚନା ପୂର୍ବେ ଏଇ ପ୍ରବନ୍ଧରେ ଦିଆଯାଇଛି । ଏ ଦୁଇଟି ପୁସ୍ତକ ଇତିହାସ ନ ହୋଇ ମନୋରଞ୍ଜନଧର୍ମୀ ତଥା ଲୋକପ୍ରିୟ ସାହିତ୍ୟ ବର୍ଗର ଅନ୍ତର୍ଭୁକ୍ତ ହୋଇଥିଲେ ହେଁ – ଓ ପ୍ରକୃତରେ ଠିକ୍ ସେହି କାରଣରୁ ତଥା ଏ ମଧ୍ୟରେ ପ୍ରମାଣିତ ଏ ପୁସ୍ତକଦ୍ୱୟର ବିଶେଷ ଜନପ୍ରିୟତା ହେତୁ – ଆଜିକୁ ମାତ୍ର ୧୦୦ ବର୍ଷରୁ ସାମାନ୍ୟ ଅଧିକ କାଳ ପୂର୍ବେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଏଇ ଜନଶ୍ରୁତିଟିକୁ ଏ ପୁସ୍ତକ ଦୁଇଟି ଆଜି ଅତ୍ୟନ୍ତ

ଲୋକପ୍ରିୟ ଜନଶ୍ରୁତିରେ ପରିଣତ କରି ସମଗ୍ର ଓଡିଆ ଭାଷାଭାଷୀ ଅଞ୍ଚଳରେ – ଓଡ଼ିଶାର କୋଣେ କୋଣେ ତଥା ଓଡ଼ିଶା ସୀମାର ବାହାରେ ମଧ୍ୟ – ତଥା 'ନୀଳଶୈଳ' ଅନୁବାଦ ମାଧ୍ୟମରେ ଅଣଓଡିଆମାନଙ୍କ ନିକଟରେ ବି ପହଞ୍ଚାଇଦେଇପାରିଛି ଓ ତାହା ବି ଐତିହାସିକ ସତ୍ୟ ବୋଲି ଅଗଣିତ ଜନସାଧାରଣଙ୍କ ବିଶ୍ୱାସଭାଜନ ହୋଇପାରିଛି । ମନେହୁଏ କୌଣସି ସତ୍ୟାନୁସନ୍ଧିସୁ ଗବେଷକ ଆଜି ଗବେଷଣା କରି ସତ୍ୟର ଦ୍ୱାର ଉଦ୍‌ଘାଟନ କଲେ ମଧ ଏଇ ଜନଶ୍ରୁତିର ଜୈତ୍ରଯାତ୍ରା ବନ୍ଦ ହେବାର ନୁହେଁ, ବନ୍ଦ ହେବ ନାହିଁ । ଆଜି ଆଉ କେହି ତା'ର ଗତିରୋଧ କରିବା ପାଇଁ ସମର୍ଥ ନୁହଁନ୍ତି; ତାର ଜୈତ୍ରଯାତ୍ରା ତ ଦୁର୍ନିର୍ବାର ।

## ଉପାଦାନ ପଞ୍ଜିକା

### (କ) ପ୍ରାଥମିକ ଉପାଦାନ

ଆରତତ୍ରାଣ ଚଉତିଶା – ଦୀନକୃଷ୍ଣ ଦାସ

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ – ଉପେନ୍ଦ୍ର ଭଞ୍ଜ

ଗୋପୀଚନ୍ଦନ – ଚାନ୍ଦଦାସ (ସଂ – ନୀଳମଣି ମିଶ୍ର)

ଜଗନ୍ନାଥ ଚରିତାମୃତ – ଦିବାକର ଦାସ

ଜଗନ୍ନାଥ ମନ୍ଦିର ପତ୍ରାବଳୀ (Board of Revenueରେ ସଂରକ୍ଷିତ Jagannath Temple Correspondance. Type-copy prepared by Orissa/German Research Project I. ଏବେ National Archives of Indiaର ଭୁବନେଶ୍ୱରସ୍ଥିତ Record Centreରେ ସଂରକ୍ଷିତ)

ଜଗମୋହନ ଛାନ୍ଦ, (ପ୍ରାଚୀ), ଦୀନକୃଷ୍ଣ ଦାସ

ପୁରୁଷୋତ୍ତମ ଚନ୍ଦ୍ରିକା (୧୨୫୧ ସାଲ) ୧୮୪୪ – ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟ

ମାଦଳା ପାଞ୍ଜି, (ପ୍ରାଚୀ), ୧୯୪୦, ସଂ: ଆର୍ତ୍ତବଲ୍ଲଭ ମହାନ୍ତି

ଶ୍ରୀ ଚରଣ ସୁଧାନିଧି – ଗୋବିନ୍ଦ ଭଞ୍ଜ (ସଂ: ରଘୁନାଥ ମହାପାତ୍ର)

ସୈର ମୁତାକ୍ଷରୀନ୍, ୧୯୦୨ (Seir Mutaqherin, 1902, Seid Gholam Hossein (Tr. Nota Manus/M.Raymond).

## (ଖ) ଅନ୍ୟାନ୍ୟ ଉପାଦାନ


ଆଚାର୍ଯ୍ୟ, ରାମଚନ୍ଦ୍ର, ୧୯୯୦, ରାମଚନ୍ଦ୍ର ଆଚାର୍ଯ୍ୟ ଗ୍ରନ୍ଥାବଳୀ । ସଂ ସୁଦର୍ଶନ ଆଚାର୍ଯ୍ୟ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ । (ବୀର ଓଡ଼ିଆ)

ଦାଶ, ଗଗନେନ୍ଦ୍ର ନାଥ, ୧୯୭୯, ଜନଶ୍ରୁତି କାଞ୍ଚିକାବେରୀ । (ବ୍ରହ୍ମପୁର)

ଦାଶ, ଗଗନେନ୍ଦ୍ର ନାଥ, ୧୯୮୨, ଜନଶ୍ରୁତି ଓ ସାମାଜିକ ଇତିହାସ । ଝଙ୍କାର, ୩୪/୪, ପୃ. ୩୩୭-୩୪୬/ନିର୍ବାଚିତ ପ୍ରବନ୍ଧ ସଙ୍କଳନ, ଗଗନେନ୍ଦ୍ର ନାଥ ଦାଶ, ୨୦୦୫, କଟକ, ବିଦ୍ୟାପୁରୀ ।

ଦାଶ, ଗଗନେନ୍ଦ୍ର ନାଥ, ୧୯୮୫. ପତିତପାବନ ଜଗନ୍ନାଥ । ଝଙ୍କାର, ୩୭/୬, ପୃ.୪୭୫-୮୭ ।

ଦାଶ, ଗଗନେନ୍ଦ୍ର ନାଥ ୨୦୦୪, ପତିତପାବନ । ଝଙ୍କାର, ୫୬/୩ ।

ଦାଶ, ଗଗନେନ୍ଦ୍ର ନାଥ ୨୦୧୪, ପୁନଶ୍ଚ ଜନଶ୍ରୁତି କାଞ୍ଚିକାବେରୀ । ଭୁବନେଶ୍ୱର ।

ଦାସ, ନୀଳକଣ୍ଠ,୧୯୫୧, ସଂସ୍କୃତ ଓ ସଂସ୍କୃତି ।.

ଦାସ, ସର୍ବେଶ୍ୱର,୧୯୬୩, ଭକ୍ତକବି ଜଗନ୍ନାଥ ଦାସଙ୍କ ଜୀବନ ଚରିତର ଉପାଦାନ । ଝଙ୍କାର, ୧୫ଶ ବର୍ଷ, ୬ଷ୍ଠ ସଂଖ୍ୟା

ପଟ୍ଟନାୟକ, ସୁଧାକର, ୧୯୭୨, ସମ୍ବାଦପତ୍ରରୁ ଓଡ଼ିଶାର କଥା । କଟକ, ଗ୍ରନ୍ଥମନ୍ଦିର ।

ବିଦ୍ୟାବିନୋଦ, ସୁନ୍ଦରାନନ୍ଦ, ୧୯୫୧, ଶ୍ରୀକ୍ଷେତ୍ର । ପୁରୀ ।

ମହାନ୍ତି, ସୁରେନ୍ଦ୍ର, ୧୯୬୮/୧୯୭୩ ନୀଳଶୈଳ ।

ମହାନ୍ତି, ସୁରେନ୍ଦ୍ର, ୧୯୭୦/୧୯୭୭ ଶତାବ୍ଦୀର ସୂର୍ଯ୍ୟ ।

ମହାପାତ୍ର, ଚକ୍ରଧର,୧୯୬୯/୧୯୮୯, ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ । କଟକ ।

ମହାପାତ୍ର, କେଦାରନାଥ, ୧୯୬୯, ଖୁରୁଧା ଇତିହାସ । ଭୁବନେଶ୍ୱର ।

ମହାପାତ୍ର, କେଦାରନାଥ, ୧୯୮୨, ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ । (ଦ୍ର: ଶ୍ରୀଜଗନ୍ନାଥ । ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡ଼େମୀ ।)

ମିତ୍ର, ନଗେନ୍ଦ୍ର ନାଥ, ୧୩୨୨, ପୁରୀ ତୀର୍ଥ ।

ମିଶ୍ର, କୃପାସିନ୍ଧୁ, ୧୯୨୬, ଉତ୍କଳ ଇତିହାସ ।

ମିଶ୍ର, ନୀଳମଣି, ୧୯୭୮, ଭକ୍ତ ବାଲିଗାଁ ଦାସ (ଜୀବନୀ ଓ ରଚନା) । କଟକ ।

ରାଜଗୁରୁ, ଶ୍ୟାମସୁନ୍ଦର, ୧୯୬୪, ପ୍ରବନ୍ଧାବଳୀ । ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡ଼େମୀ ।

ସରକାର, ଗୁରୁଦାସ, ୧୯୨୧, ମନ୍ଦିରରେ କଥା ।
ସାହୁ, ବାସୁଦେବ (ସୁବ୍ରତ), ୧୯୮୧, ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ ।
ସିଂହ, ଜଗବନ୍ଧୁ, ୧୯୬୪, ପ୍ରାଚୀନ ଉତ୍କଳ । ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ, (ପ୍ରଥମ ପ୍ରକାଶ ୧୯୨୯) ।

Acharyya, Chintamoni, 1949, Puri. Berhampur
Banerji, R. D., 1931, History of Orissa, Vol. II. Calcutta
Chakravarti, M. M. 1898, Notes on language and literature of Orissa, Parts III and IV. Journal of Asiatic Society of Bengal, Vol. LXVII,N0.4.
Das, R. K. 1978, Legends of Jagannath Puri. Bhadrak , Pragati Udyog
Dash, G. N., 1976, The King and the Priests : An Analysis of a Gita Govinda Tradition, in: Visva-Bharati Quarterly. Vol. 40, No. 3,pp.227-46.
Dash, G. N. 1978/2014, Jagannatha and Oriya Nationalism. In : Eschmann et al. New Delhi, Manohar
Dash, G. N., 1998, Hindus and Tribals. New Delhi, Decent Books
Dash, G.N., 2001, Kalapahar, the Iconoclast : The Making and Message of a Traditional Account. Reconversions in Bengal and Orissa. In : Jagannath Revisited, 2001, eds. H. Kulke, B. Schnepel, New Delhi, Manohar
Datta, K. K. 1963, Alivardi and his Times. Calcutta.
Eschmann, A, Kulke, H., Tripathi, G. C., eds. 1978/2014, The Cult of Jagannath and the Regional Tradition of Orissa. New Delhi, Manohar
Haque, M.A., 1980, Muslim Administration in Orissa. Calcutta, Punthi Pustak.
Kulke, Hermann, 1878/2014, The Struggle between the Rajas of Khurda and the Muslim Subahdars. In : Eschmann *et al.* 1978/2014, pp.321-57/pp.407-32 .
Kulke, Hermann 1979, Jagannatha Kult and Gajapati - Koenigtum. Wiesbaden, Steiner
Kulke, Hermann, 1993, Kings and Cults. Manohar. New Delhi.
Mahatab, H. K. 1960, History of Orissa, Vol. II, Cuttack.
Mohanty, Surendra, 1982, Lord Jagannatha. Bhubaneswar, Orissa Sahitya Akademi
Mukherjee. Prabhat, 1977, History of the Jagannath Temple in

the 19th Century. Calcutta, Firma K. L. M.
Mukherji, Prasenjit, 1985, Salabeg : A Muslim Vaisnav Poet of Orissa. in: Camparatives, Vol.I, pp. 24ff.
Patra, K. M. 1971, Orissa Under the East India Company. New Delhi
Sahu, N. K. ed. 1956, A History of Orissa, Part I. Calcutta
Sahu, N. K. ed. 1956, A History of Orissa, Part II. Calcutta
Sahu, N. K., Mishra, P. K., Sahu, J. K., 1979, History of Orissa. Cuttack, Nalanda

[ଏହି ପ୍ରବନ୍ଧର ବକ୍ତବ୍ୟ ସମ୍ପର୍କରେ ପ୍ରାଥମିକ ସୂଚନା ମୁଁ ପ୍ରଥମେ ୧୯୭୮ରେ ମୋର Jagannatha and Oriya Nationalism ପ୍ରବନ୍ଧରେ ଦେଇଥିଲି (ଦ୍ର : Dash, G. N. 1978/2014, pp.361-62 f.n. No.16/pp.454-55, f.n. No.19) । ପରେ ଏହା ପ୍ରବନ୍ଧ ଆକାରରେ ପ୍ରଥମେ ୧୯୮୫ରେ 'ଝଙ୍କାର'ର ୩୭/୬ ସଂଖ୍ୟାରେ ପ୍ରକାଶ ପାଇଥିଲା । ତା ପରେ ଯଥାକ୍ରମେ ୧୯୮୭ ଓ ୧୯୮୮ରେ ଜର୍ମାନୀର Tuebingen ବିଶ୍ୱବିଦ୍ୟାଳୟର ଭାରତବିଦ୍ୟା ବିଭାଗ ଓ Heidelberg ବିଶ୍ୱବିଦ୍ୟାଳୟର ଦକ୍ଷିଣ-ଏସିଆ ପ୍ରତିଷ୍ଠାନରେ ଏହାର ଇଂରାଜୀ ଓ ପରିବର୍ତ୍ତିତ ରୂପ ଉପସ୍ଥାପିତ ହୋଇ ପ୍ରଶଂସିତ ବି ହୋଇଥିଲା । ଏବେ ଏଥିରେ ସେଇ ପରିବର୍ତ୍ତନ ଓ ପରିବର୍ଦ୍ଧନର ସ୍ପର୍ଶ ଲାଗିଛି ।]



# ପତିତପାବନ

(୧)

(୧). ୧୯୮୫ରେ ମୁଁ 'ପତିତପାବନ ଜଗନ୍ନାଥ' ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶ କରିଥିଲି (ଦାଶ, ଗଗନେନ୍ଦ୍ର ନାଥ, ୧୯୮୫)। ତା'ପରେ ୧୯୯୬ରେ 'ସ୍ୱର୍ଣ୍ଣ ସମାର୍ଜନୀ ଛେରାପହଁରାର ?' ଶୀର୍ଷକ ଆଉ ଏକ ପ୍ରବନ୍ଧ ମଧ୍ୟ ପ୍ରକାଶ କରିଥିଲି (ଦାଶ,ଗଗନେନ୍ଦ୍ର ନାଥ, ୧୯୯୬କ ଓ ୧୯୯୬ଖ)। ଏହି ଉଭୟ ପ୍ରବନ୍ଧରେ ବ୍ୟକ୍ତ ମୋର କେତେକ ବକ୍ତବ୍ୟକୁ ତୀବ୍ର ଭାବରେ ସମାଲୋଚନା କରି ଡକ୍ଟର ହରିହର କାନୁନଗୋ ୧୯୯୭ରେ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ (କାନୁନଗୋ, ୧୯୯୭)। ମୁଁ ବିଭିନ୍ନ କାରଣରୁ ସେତେବେଳେ ତାଙ୍କ ପ୍ରବନ୍ଧର ଉତ୍ତର ଦେଇପାରିନଥିଲି। ତାଙ୍କର ସେଇ ପ୍ରବନ୍ଧ ପରେ ପ୍ରକାଶିତ ତାଙ୍କର ଏକ ପ୍ରବନ୍ଧ ସଙ୍କଳନର ଅନ୍ତର୍ଭୁକ୍ତ ହୋଇଥିବା ମଧ୍ୟ ମୋ ନଜରକୁ ଏବେ ଆସିଛି (କାନୁନଗୋ, ୨୦୦୦)। ମୁଁ ଏ ପର୍ଯ୍ୟନ୍ତ ନିରବ ଥିବାରୁ ପୂର୍ବେ ବ୍ୟକ୍ତ ମୋ ବକ୍ତବ୍ୟର ସାରବତ୍ତା ନାହିଁ କି ମୋର ଆଉ ସେ ବିଷୟରେ କିଛି ବି କହିବାର ନାହିଁ ଓ ମୋର ବକ୍ତବ୍ୟ ସମ୍ପର୍କରେ ଡକ୍ଟର କାନୁନଗୋ ଉଠାଇଥିବା ଆପତ୍ତିଗୁଡ଼ିକ ଯେ ଯଥାର୍ଥ ଓ ତାହା ମୋ ପକ୍ଷରେ ଗ୍ରହଣୀୟ ହୋଇଛି – ଏପରି ଧାରଣା କେହି କେହି କରିପାରନ୍ତି। ତେଣୁ ଏବେ ସେ ସମ୍ପର୍କରେ ମୋର ଅଭିମତ ଉପସ୍ଥାପନ କରିବା ଉଚିତ ହେବ। କାରଣ ଡକ୍ଟର କାନୁନଗୋ ମୋ ବକ୍ତବ୍ୟ ଉପରେ ଉଠାଇଥିବା ଆପତ୍ତିଗୁଡ଼ିକ ଅତ୍ୟନ୍ତ ଦୁର୍ବଳଭିତ୍ତିଭୂମିସମ୍ପନ୍ନ ବା ଏପରି କି ଭିତ୍ତିହୀନ ହେତୁ ସେ ସବୁ ଆଦୌ ଗ୍ରହଣୀୟ ନୁହେଁ।

(୨)

(୨.୧). ତାଙ୍କ ପ୍ରବନ୍ଧଟି ଭାବପ୍ରବଣତାଜନିତ ଉତ୍‌କ୍ଷିପ୍ତ ଚିତ୍ତବୃତ୍ତିର ପରିପ୍ରକାଶ ବୋଲି ମୋର ମନେହୋଇଛି। ତେବେ ସେଥିରେ ମୋର କିଛି କହିବାର ନ ଥାନ୍ତା

ଯଦି ସେଥିରେ ଭାବପ୍ରବଣତାକୁ ଗବେଷଣାର ପୋଷାକ ପିନ୍ଧାଇଦେବାର ପ୍ରଚେଷ୍ଟା କରାଯାଇନଥାନ୍ତା, ଏପରି କି ତା ଅତ୍ୟନ୍ତ ଅସଫଳ ପ୍ରଚେଷ୍ଟା ହୋଇଥିଲେ ମଧ୍ୟ । ଗବେଷଣାକୁ ଭାବପ୍ରବଣତାର ପୋଷାକ ପିନ୍ଧାଇବାରେ ଅଥବା ଭାବପ୍ରବଣତା-ଜନିତ ବଦ୍ଧମୂଳ ବିଶ୍ୱାସକୁ ଗବେଷଣାର ପୋଷାକ ପିନ୍ଧାଇବାରେ ମୋର ଆପତ୍ତି ।

(୨.୨.୧). କେତେକଙ୍କର ଧାରଣା ଯେ ପ୍ରସିଦ୍ଧ ଗବେଷକମାନଙ୍କ ଓ/ବା ଗ୍ରନ୍ଥର ଉକ୍ତିକୁ ଯଥାତଥା ଉଦ୍ଧାର କରି ପ୍ରବନ୍ଧ/ପୁସ୍ତକକୁ ଅଯଥା ଉଦ୍ଧୃତି-ଓ-ପାଦଟୀକା/ପ୍ରାନ୍ତଟୀକା-ବହୁଳ କରିବା ତଥା ପାଦଟୀକା/ପ୍ରାନ୍ତଟୀକାରେ ଓ ଉପାଦାନ ପଞ୍ଜିକାରେ ବିଖ୍ୟାତ ପଣ୍ଡିତମାନଙ୍କ ପ୍ରସିଦ୍ଧ ପୁସ୍ତକ/ପ୍ରବନ୍ଧର ନାମୋଲ୍ଲେଖ କରିବା ହିଁ ଗବେଷଣା । ସେମାନଙ୍କର ଧାରଣା ଯେ କେବଳ ଏପରି କରିଦେଲେ ହିଁ ପୁସ୍ତକ/ପ୍ରବନ୍ଧଟି ଆପେ ଆପେ ଗବେଷଣାତ୍ମକ ପୁସ୍ତକ/ପ୍ରବନ୍ଧରେ ପରିଣତ ହୋଇଯାଏ ।

(୨.୨.୨). ଆଉ କେତେକଙ୍କର ଧାରଣା ଯେ ପୂର୍ବସୂରୀମାନଙ୍କ ମତକୁ ବିନା କାରଣରେ କେବଳ ଅଗ୍ରାହ୍ୟ କରିବା ନୁହେଁ, ସେ ପ୍ରସଙ୍ଗରେ ଭାଷାରୁ ସଂଯମ ଓ ଶାଳୀନତାକୁ ବିସର୍ଜନ ଦେବା ଓ ସେଇ ପୂର୍ବସୂରୀମାନଙ୍କ ପ୍ରତି ଅକାରଣରେ କଟୂକ୍ତି ପ୍ରୟୋଗ କରିବା ତଥା ସେମାନଙ୍କ ଉପରେ ମିଥ୍ୟା-ଅଭିଯୋଗ ଆରୋପ କରିବା ହିଁ ଗବେଷଣା ବା ସେପରି କଲେ ସହଜରେ ଗବେଷକର ସ୍ୱୀକୃତି ମିଳିଯାଏ ।

(୨.୨.୩). ଡକ୍ଟର କାନୁନ୍‌ଗୋ କ'ଣ ଉପରେ ସୂଚିତ ଏଇ ଦୁଇ ପ୍ରକାର ଗବେଷଣାରେ ବିଶ୍ୱାସୀ ? କାରଣ ମୋର ତ ମନେ ହେଲା, ତାଙ୍କ ପ୍ରବନ୍ଧଟି ଏଇ ଦୁଇ ପ୍ରକାର ଗବେଷଣାର ସମିଶ୍ରିତ ରୂପ ।

(୨.୩). ଡକ୍ଟର କାନୁନଗୋ ମୋର ଛାତ୍ର ବା ହୁଏତ ମୋର ଛାତ୍ରଙ୍କ ଛାତ୍ର ବୟସର ହେବେ । କିନ୍ତୁ ତାଙ୍କ ପ୍ରବନ୍ଧରେ ସେ ମୋ ପ୍ରତି ନିମ୍ନତମ ସୌଜନ୍ୟ ପ୍ରକାଶ କରିବା ତ ଦୂରର କଥା, ବରଂ ମତେ ଆକ୍ରମଣ କରିବା ପ୍ରସଙ୍ଗରେ ସଂଯମ ଓ ଶାଳୀନତାର ସୀମା ଅତିକ୍ରମ କରିଥିବାର ମୋର ମନେ ହୋଇଥିଲା । ତା ବ୍ୟତୀତ ମୋ ଉପରେ କେତେକ ମିଥ୍ୟା-ଦୋଷାରୋପ/ଅଭିଯୋଗ ମଧ୍ୟ ସେଥିରେ କରାଯାଇଥିଲା । ଓଡ଼ିଶାର ବହୁ ଗବେଷକଙ୍କ ପରି ଡକ୍ଟର କାନୁନଗୋଙ୍କ ଗବେଷଣାରେ ଦେଶପ୍ରୀତି ବା ଜାତିପ୍ରୀତି-ଓ/ବା-ଦେବଭକ୍ତିଜନିତ ଭାବପ୍ରବଣତାର ପ୍ରତିଫଳନକୁ ଅତି ସହଜରେ ଆବିଷ୍କାର କରାଯାଇପାରେ । (ଏଇ ପ୍ରବନ୍ଧରେ ଅନ୍ୟତ୍ର ତାହାର ସୂଚନା କରାଯିବ ।) କିନ୍ତୁ ଏତେ ଦେଶପ୍ରୀତି-ଓ-ଦେବଭକ୍ତିସମ୍ପନ୍ନ ଡକ୍ଟର କାନୁନଗୋଙ୍କଠାରୁ

ପୂର୍ବସୂରୀଙ୍କ ପ୍ରତି ପ୍ରୀତି ବା ଭକ୍ତି ଦୂରେ ଥାଉ ନିମ୍ନତମ ସୌଜନ୍ୟ ଯେ ଆଶାକରାଯାଇପାରେ ନାହିଁ, ତାହା ହିଁ ବିସ୍ମୟକର ।

ସେ ମୋ ପ୍ରବନ୍ଧରୁ "ଅସୂୟାଯୁକ୍ତ ଯୁକ୍ତିସାରଶୂନ୍ୟ ଦମ୍ଭୋକ୍ତି"ର, "ଅହେତୁକ ଦମ୍ଭୋକ୍ତି"ର ଆବିଷ୍କାର କରିଛନ୍ତି (୧୯୯୭, ପୃ.୧୫୯୩/ଖ ଓ ୧୫୯୪/ଖ; ୨୦୦୦, ପୃ.୧୮୧ ଓ ୧୮୩) । ମୋର ବକ୍ତବ୍ୟ ବା ଉକ୍ତିକୁ କେଉଁ କାରଣରୁ ଓ କେଉଁ ଲକ୍ଷଣ ଦେଖି ସେ 'ଦମ୍ଭୋକ୍ତି' ଅଭିଧାର ଅଭିହିତ କରିଛନ୍ତି ତା ମତେ ଜଣାନାହିଁ । (ଅଳଙ୍କାର ଶାସ୍ତ୍ରରେ ଅତିଶୟୋକ୍ତି ପରି 'ଦମ୍ଭୋକ୍ତି' ନାମକ ଅଳଙ୍କାର ଅଛି କି ନାହିଁ, ଆଉ ଥିଲେ ତା'ର ସଂଜ୍ଞା ଓ ଲକ୍ଷଣ କ'ଣ ତା ବି ମତେ ଜଣାନାହିଁ) । ସେହିପରି ମୋ ପ୍ରବନ୍ଧର ବିଭିନ୍ନ ସ୍ଥାନରେ ସେ ମୋର 'ଅସୂୟା' ଓ 'କ୍ରୋଧ' ମଧ୍ୟ ଆବିଷ୍କାର କରିଛନ୍ତି । ଏ ସବୁ ମୋ ଉପରେ ମିଥ୍ୟା-ଅଭିଯୋଗ ବ୍ୟତୀତ ଆଉ କିଛି ନୁହେଁ । ମେଷଶାବକକୁ ହତ୍ୟା ବା ଶ୍ୱାନକୁ ଫାସୀ ଦେବାର ଇଚ୍ଛା ହେଲେ ତାହା କରାଯାଇପାରେ । କିନ୍ତୁ ସେଥିପାଇଁ ତା ଉପରେ ମିଥ୍ୟା-ଦୋଷାରୋପ କରିବାର ବା ତାକୁ ବଦନାମ କରିବାର କୌଣସି ଆବଶ୍ୟକତା ଅଛି କି ? ମୋ ପ୍ରବନ୍ଧରେ ଆଦୌ କ୍ରୋଧ ବା ଅସୂୟାର ପ୍ରତିଫଳନ ଘଟିନାହିଁ କି ତାର ସମ୍ଭାବନା ମଧ୍ୟ ନ ଥିଲା, କାରଣ ତା ତ ମୋର ମନରେ ମଧ୍ୟ ନ ଥିଲା । ଗବେଷଣା ପ୍ରସଙ୍ଗରେ ତଥ୍ୟ ଓ ଯୁକ୍ତିଭିତ୍ତିରେ ଯାହା ମତେ ସତ୍ୟ ବୋଲି ପ୍ରତିଭାତ ହୋଇଛି ତାହାକୁ ହିଁ ମୁଁ ଅତି ସ୍ପଷ୍ଟ ଭାବରେ ପ୍ରକାଶ କରିବାର ଉଦ୍ୟମ କରିଛି ମାତ୍ର । ଅବଶ୍ୟ ବିଚାର-ବିଭ୍ରାଟ ହେତୁ ସେ ଏପରି ଆବିଷ୍କାର କରିପାରିଥାନ୍ତି । ପ୍ରଚଳିତ ମତକୁ ବିରୋଧ କରୁଥିବା ମୋର ଭିନ୍ନ ମତକୁ ମୋର ଦମ୍ଭୋକ୍ତି, ଅସୂୟା ଓ କ୍ରୋଧ ବୋଲି ସେ ଭାବିଲେ ମୁଁ ନାଚାର ।

## (୩)

(୩. ୧). ସେ ଯାହାହେଉ ତାଙ୍କ ପ୍ରବନ୍ଧରେ ନିଜକୁ ଅତି ବିଜ୍ଞ ବୋଲି ଜାହିର କରୁଥିବା ଡକ୍ଟର କାନୁନ୍‌ଗୋଙ୍କ କାଳଜ୍ଞାନ ଯେ ନାହିଁ, ତାହାର ସ୍ପଷ୍ଟ ସୂଚନା ତାଙ୍କରି ପ୍ରବନ୍ଧରେ ହିଁ ରହିଛି । ସେ ୧୭ଶ ଓ ୧୮ଶ ଶତାବ୍ଦୀ ମଧ୍ୟରେ ଥିବା ପାର୍ଥକ୍ୟ ଜାଣିବା ପାଇଁ ଅକ୍ଷମ । ତେଣୁ ତାଙ୍କରି ମତରେ ୧୭୨୭ରୁ ୧୭୩୬ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଖୋର୍ଦ୍ଧା ରାଜା ଭୋଇ ୨ୟ ରାମଚନ୍ଦ୍ର ଦେବଙ୍କୁ ସେ, ୧୮ଶ ନୁହେଁ, ୧୭ଶ ଶତାବ୍ଦୀର ବୋଲି ଗ୍ରହଣ କରିଛନ୍ତି । ପୁଣି ଏପରି ଭ୍ରମ ହେତୁ ହିଁ ସେ ତାଙ୍କୁ 'ଜଗନ୍ନାଥ ଚରିତାମୃତ'ର ରଚୟିତା ଦିବାକର ଦାସଙ୍କ ସମସାମୟିକ ବୋଲି ଦାବି କରିଛନ୍ତି (କାନୁନ୍‌ଗୋ,

୧୯୯୭, ପୃ.୧୫୯୬/ଖ; ୨୦୦୦, ପୃ.୧୮୬-୮୭) ତଥା ସେହି ପ୍ରସଙ୍ଗରେ ମତେ ତୀବ୍ର ବିଦ୍ରୂପ ମଧ୍ୟ କରିଛନ୍ତି । କାରଣ ମୋ ପ୍ରତିପାଦ୍ୟକୁ ବିରୋଧ କରୁଥିବା ଏହି 'ତଥ୍ୟ'( ?)କୁ ସେ ତାଙ୍କ ବକ୍ତବ୍ୟରେ ବଳିଷ୍ଠତମ ଯୁକ୍ତି ବୋଲି ମନେ କରିଛନ୍ତି । କିନ୍ତୁ ୨ୟ ରାମଚନ୍ଦ୍ରଙ୍କୁ ୧୮ଶ ଶତାବ୍ଦୀରେ ଅବସ୍ଥାପିତ କଲେ ମୋ ପ୍ରତିପାଦ୍ୟର ବିରୋଧରେ ତାଙ୍କର ସମସ୍ତ ବକ୍ତବ୍ୟର ଭିତ୍ତିଭୂମି ଦୋହଲି ଯିବ ନାହିଁ କି ? କାରଣ 'ଜଗନ୍ନାଥ ଚରିତାମୃତ' ବା 'ଜଗନ୍ନାଥାମୃତ'ର ରଚନା କାଳ ନିଶ୍ଚିତ ଭାବରେ ୧୮ଶ ଶତାବ୍ଦୀର ପୂର୍ବବର୍ତ୍ତୀ । କେବଳ ଯେ କେଦାରନାଥ ମହାପାତ୍ର ଓ ସର୍ବେଶ୍ୱର ଦାସ ସେପରି ମତ ଦେଇଛନ୍ତି ତା ନୁହେଁ ସଚ୍ଚିଦାନନ୍ଦ ମିଶ୍ର ସେ ସମ୍ପର୍କରେ ବିସ୍ତାରିତ ଆଲୋଚନା କରି ଶେଷରେ ତାହାର ରଚନାକାଳ ୧୬୭୦ରୁ ୧୬୯୭ ମଧ୍ୟରେ (ଅର୍ଥାତ୍ ୧୭ଶ ଶତାବ୍ଦୀରେ) ବୋଲି ସିଦ୍ଧାନ୍ତ କରିଛନ୍ତି (ମିଶ୍ର, ସଚ୍ଚିଦାନନ୍ଦ, ୧୯୬୪, ପୃ.୭୧୯-୨୧) । ବିନାୟକ ମିଶ୍ର ଓ ସୁରେନ୍ଦ୍ର ମହାନ୍ତିଙ୍କ ମତରେ ତାହାର ରଚନା କାଳ ପୁଣି ଆହୁରି ପୂର୍ବବର୍ତ୍ତୀ ଅର୍ଥାତ୍ ୧୬ଶ ଶତାବ୍ଦୀ (ମିଶ୍ର, ବିନାୟକ, ୧୯୬୨ ପୃ.୮୩ ଓ ମହାନ୍ତି, ସୁରେନ୍ଦ୍ର, ୧୯୯୨ ପୃ. ୩୦୯) । ଏସବୁରୁ ଅନ୍ତତଃ ଏତିକି ପ୍ରମାଣିତ ହୁଏ ଯେ, ୧୮ଶ ଶତାବ୍ଦୀର ଭୋଇ ୨ୟ ରାମଚନ୍ଦ୍ରଙ୍କ ପୂର୍ବେ ଜଗନ୍ନାଥ ମନ୍ଦିରର ଗୁମୁଟରେ ପତିତପାବନ ବିରାଜିତ ଥିଲେ, ଯାହାର ସୂଚନା ରହିଛି ୧୭ଶ ଶତାବ୍ଦୀରେ ରଚିତ 'ଜଗନ୍ନାଥ ଚରିତାମୃତ'ରେ । ଆଉ ମୋ ପୂର୍ବ (ଅର୍ଥାତ୍ ୧୯୮୫ରେ ପ୍ରକାଶିତ ପ୍ରଥମ) ପ୍ରବନ୍ଧରେ ମୁଁ ମାତ୍ର ତାହା ହିଁ କହିଥିଲି ।

(୩.୨). କେବଳ ସେତିକି ନୁହେଁ, ଭୋଇ ୨ୟ ରାମଚନ୍ଦ୍ର ଜାତିଭ୍ରଷ୍ଟ ଓ ପତିତ ହେବାରୁ ତାଙ୍କ ସମୟରେ ଓ ତାଙ୍କୁ ଦର୍ଶନ କରିବାର ସୁଯୋଗ ଦେବାପାଇଁ ଜଗନ୍ନାଥ ମନ୍ଦିରର ସିଂହଦ୍ୱାରରେ ପତିତପାବନ ମୂର୍ତ୍ତି ବସିଥିବା ବା ସ୍ଥାପିତ ହୋଇଥିବା ରୂପକ ମିଥ୍ୟା କଥାଟି ବା ଭ୍ରମାତ୍ମକ ତଥ୍ୟ/ବିବରଣୀଟି କେବଳ ୧୯ଶ ଶତାବ୍ଦୀରେ ରାଣୀ ସୂର୍ଯ୍ୟମଣିଙ୍କ ସ୍ମାରକପତ୍ର ସହ ସଂଯୋଜିତ 'ମାଦଳାପାଞ୍ଜି'ର ଏକ ଉଦ୍ଧୃତାଂଶରେ ହିଁ ମିଳେ । କିନ୍ତୁ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ ତିନିଗୋଟି 'ମାଦଳା ପାଞ୍ଜି' ମଧ୍ୟରୁ ଯେଉଁ ଦୁଇଟିରେ ଭୋଇ ୨ୟ ରାମଚନ୍ଦ୍ରଙ୍କ ବିବରଣୀ ଅଛି ସେ ମଧ୍ୟରୁ କୌଣସି ଗୋଟିକରେ ମଧ୍ୟ ସେପରି ତଥ୍ୟ/ବିବରଣୀ ମିଳେ ନାହିଁ । କେବଳ ସେତିକି ନୁହେଁ, ୧୯ଶ ଶତାବ୍ଦୀରେ ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟଙ୍କଦ୍ୱାରା ବଙ୍ଗ ଭାଷାରେ ପ୍ରସ୍ତୁତ 'ମାଦଳାପାଞ୍ଜି'ର ପଦ୍ୟ ସଂସ୍କରଣରେ ମଧ୍ୟ ସେପରି ତଥ୍ୟ/ବିବରଣୀର ଉଲ୍ଲେଖ ନାହିଁ । (ସେହିପରି 'କଟକ ରାଜବଂଶାବଳୀ' ଓ 'ବାଲି'ଗାଁ ଦାସିଆ ଭଗବତ' ପରି ଅନ୍ୟ

କୌଣସି ମଧ୍ୟଯୁଗୀୟ ପୁସ୍ତକରେ ବି ସେପରି କଥା ବା ବିବରଣୀର ସୂଚନା ମିଳେ ନାହିଁ ।) ପ୍ରକୃତରେ ସେ ସବୁରେ ସେପରି ତଥ୍ୟ/ବିବରଣୀ ଉଲ୍ଲେଖ ଥିବାର କୌଣସି ସମ୍ଭାବନା ମଧ୍ୟ ନ ଥିଲା, କାରଣ ସେ ତଥ୍ୟ/ବିବରଣୀଟି ସତ୍ୟ ନ ଥିଲା । ସେପରି ଘଟଣା (ଅର୍ଥାତ୍ ଭୋଇ ୨ୟ ରାମଚନ୍ଦ୍ର ଦର୍ଶନ କରିବା ପାଇଁ ମନ୍ଦିରର ଗୁମୁଟରେ ପତିତପାବନଙ୍କ ସ୍ଥାପନ ହୋଇଥିବା) ମଧ୍ୟ ଆଦୌ ଘଟି ନଥିଲା । ତା ଥିଲା ସଂପୂର୍ଣ୍ଣ ଭାବରେ ମିଥ୍ୟା । ପୁଣି ସେପରି କୌଣସି ଘଟଣା ଘଟିଥିବାର ମଧ୍ୟ ସମ୍ଭାବନା ବି ନ ଥିଲା, କାରଣ ଭୋଇ ୨ୟ ରାମଚନ୍ଦ୍ରଙ୍କ ପୂର୍ବରୁ ଜଗନ୍ନାଥ ମନ୍ଦିରର ଗୁମୁଟରେ ପତିତପାବନ ବିରାଜିତ ହୋଇସାରିଥିଲେ । ଏଣୁ ରାଣୀ ସୂର୍ଯ୍ୟମଣିଙ୍କ ଆବେଦନ ସହ ସଂଯୁକ୍ତ 'ମାଦଳାପାଞ୍ଜି'ର ତଥାକଥିତ ଉଦ୍ଧୃତାଂଶଟି ପ୍ରକୃତରେ 'ମାଦଳାପାଞ୍ଜି'ର ଉଦ୍ଧୃତି ନାଁ ତାହାକୁ ଉଦ୍ଦେଶ୍ୟ ସାଧନ ନିମିତ୍ତ ୧୯ଶ ଶତାବ୍ଦୀରେ ହିଁ ପ୍ରସ୍ତୁତ କରାଯାଇ 'ମାଦଳାପାଞ୍ଜି'ର ଉଦ୍ଧୃତାଂଶ ବୋଲି ମିଥ୍ୟା ଦାବି କରାଯାଇଥିଲା ଓ ଚଳାଇ ନିଆଯାଇଥିଲା ? – ଏପରି ସନ୍ଦେହ ତ କରାଯାଇପାରେ, ପୁଣି ସେପରି ସିଦ୍ଧାନ୍ତ ମଧ୍ୟ କରାଯାଇପାରେ । ମୋ ପୂର୍ବ ପ୍ରବନ୍ଧରେ ମୁଁ ତାହା ହିଁ କରିଥିଲି ।

(୩. ୩). ଏପରି ଏକ ଜାଲ୍ 'ଉଦ୍ଧୃତାଂଶ' ପ୍ରସ୍ତୁତ କରି ତାହାକୁ 'ମାଦଳାପାଞ୍ଜି'ର ଉଦ୍ଧୃତାଂଶ ବୋଲି ମିଥ୍ୟା ଦାବି କରିବାର ଓ ଏପରି ଏକ ଭିତ୍ତିଭୂମିଶୂନ୍ୟ ବିବରଣୀ ବା ଗପ ସୃଷ୍ଟି କରିବାର କାରଣ କ'ଣ ହୋଇପାରେ ? ଏହାଦ୍ୱାରା କାହାର କି ଉଦ୍ଦେଶ୍ୟ ସାଧିତ ହେବାର ସମ୍ଭାବନା ଥିଲା ବା ସାଧିତ ହୋଇଥିଲା ? ଏପରି ପ୍ରଶ୍ନ ଉଠିପାରେ । ଏ ପ୍ରଶ୍ନର ଯଥାର୍ଥ ଉତ୍ତର ମିଳିପାରିଲେ ହିଁ ଏ ସମ୍ପର୍କୀୟ ସମସ୍ତ ସନ୍ଦେହର ଅବସାନ ହେବ ।

ନରହତ୍ୟା ଅପରାଧରେ ପୁରୀ ରାଜା ଦିବ୍ୟସିଂହ ଦେବ କଳାପାଣି ଯାଇଥିବାରୁ ତାଙ୍କ ଅନୁପସ୍ଥିତି/ଅବର୍ତ୍ତମାନରେ ପୁରୀ ଜଗନ୍ନାଥ ମନ୍ଦିର ପରିଚାଳନାରେ ଏକ ଶୂନ୍ୟତା ଦେଖାଦେଇଥିଲା । ଏ ସୁଯୋଗରେ ବ୍ରିଟିଶ୍ ସରକାର ମନ୍ଦିରର ପରିଚାଳନାକୁ ହାତକୁ ନେବାକୁ ଚାହୁଁଥିଲେ । କିନ୍ତୁ ରାଣୀ ସୂର୍ଯ୍ୟମଣି ସରକାରଙ୍କ ଏପରି ମତିଗତିର ସୁରାକ ପାଇ ତା'ର ପ୍ରତିକାର ଉଦ୍ଦେଶ୍ୟରେ କଳାପାଣି ଯାଇଥିବା ଦିବ୍ୟସିଂହ ଦେବଙ୍କ ନାବାଳକ ପୁତ୍ର ଜଗନ୍ନାଥ ଜେନାମଣିଙ୍କୁ କୌଳିକ ପ୍ରଥାନୁଯାୟୀ ରାଜା ମୁକୁନ୍ଦ ଦେବ ନାମ ଦେଇ ପୁରୀ ରାଜସିଂହାସନରେ ଅଭିଷିକ୍ତ କରାଇଥିଲେ । ଅବଶ୍ୟ ଜଗନ୍ନାଥ ଜେନାମଣି ଓରଫ ରାଜା ମୁକୁନ୍ଦ ଦେବ ନାବାଳକ ଥିଲେ; କିନ୍ତୁ ରାଣୀ ସୂର୍ଯ୍ୟମଣି ତ ତାଙ୍କର ମାତା ମହଫେଜ୍ ଭାବରେ ମନ୍ଦିର ପରିଚାଳନା କରିପାରିବେ; ଏହା ଫଳରେ ମନ୍ଦିର ପରିଚାଳନାରେ ଉପୁଜିଥିବା ଶୂନ୍ୟତାର ଅବସାନ ହେବ ଓ ସରକାର ଆଉ ମନ୍ଦିରର

ପରିଚାଳନା ହାତକୁ ନେବାର କୌଣସି କାରଣ ଦର୍ଶାଇପାରିବେ ନାହିଁ – ଏହାହିଁ ଥିଲା ରାଣୀଙ୍କ ଉଦ୍ଦେଶ୍ୟ । ସରକାର କିନ୍ତୁ କୂଟନୀତି-ନ୍ୟାୟବଳର ଗୋଟିଚାଳନାରେ ପ୍ରତିପକ୍ଷ ରାଣୀଙ୍କ ନିକଟରେ ଏତେ ଶୀଘ୍ର ହାର ମାନିବା ପାଇଁ ପ୍ରସ୍ତୁତ ନ ଥିଲେ । ତେଣୁ ସରକାର ମୁକୁନ୍ଦ ଦେବଙ୍କୁ ପୁରୀର ରାଜା ବୋଲି ସ୍ୱୀକୃତି ଦେଲେ ନାହିଁ । ସରକାରଙ୍କ ବକ୍ତବ୍ୟ ଥିଲା, ଦିବ୍ୟସିଂହ ଦେବ ଅନୁପସ୍ଥିତ ଥିଲେ ମଧ୍ୟ ସେ ହେଉଛନ୍ତି ପ୍ରକୃତ ରାଜା । ତାଙ୍କ ଜୀବିତାବସ୍ଥାରେ ତାଙ୍କ ପୁଅ ରାଜା ହୋଇପାରିବେ ବା କିପରି ? ତା ଉଭୟ ଆଇନ୍ ଓ ନୀତି ଦୃଷ୍ଟିରୁ ଅସଙ୍ଗତ ହେବ । ଏଣେ କିନ୍ତୁ ସେଇ ସରକାରଙ୍କ ଦୃଷ୍ଟିରେ ରାଜା ଦିବ୍ୟସିଂହ ଅନୁପସ୍ଥିତ ଥିବାରୁ ମନ୍ଦିର ପରିଚାଳନାରେ ସୃଷ୍ଟି ହୋଇଥିଲା ଏକ ଶୂନ୍ୟତା । ଅର୍ଥାତ୍ ସରକାରଙ୍କ ଦୃଷ୍ଟିରେ ଦିବ୍ୟସିଂହ ଅନୁପସ୍ଥିତ ଥିଲେ ମଧ୍ୟ ରାଜା; ଆଉ ସେ ରାଜା ହୋଇଥିଲେ ମଧ୍ୟ ଅନୁପସ୍ଥିତ । ଅର୍ଥାତ୍ ମୁକୁନ୍ଦ ରାଜା ବୋଲି ସ୍ୱୀକୃତି ପାଇପାରିବେ ନାହିଁ ଓ ସେ କାରଣରୁ ମନ୍ଦିର ପରିଚାଳନାରେ ରହିଛି ଶୂନ୍ୟତା । ତେଣୁ ସରକାର ମନ୍ଦିର ପରିଚାଳନା ହାତକୁ ନେବା ଆବଶ୍ୟକ ଓ ସେଥିରେ କୌଣସି ବାଧା ନାହିଁ ।

ଏ ସମସ୍ୟାର କୌଣସି ସମାଧାନ, ଏପରି ବିଷମ ପରିସ୍ଥିତିରୁ ମୁକ୍ତି ପାଇବାର କୌଣସି ଉପାୟ ନ ଥିଲା ପରି ଆପାତତଃ ବୋଧ ହେଉଥିଲେ ମଧ୍ୟ ପ୍ରକୃତରେ ଗୋଟିଏ ମାତ୍ର ସମାଧାନ, ଗୋଟିଏ ମାତ୍ର ଉପାୟ ଥିଲା । ତା ଥିଲା ଦିବ୍ୟସିଂହ ଜୀବିତ ଥିଲେ ମଧ୍ୟ ସେ ରାଜା ହେବାକୁ ଅଯୋଗ୍ୟ ବୋଲି ପ୍ରମାଣ କରିବା । ତା ହେଲେ ଜଗନ୍ନାଥ ଜେନାମଣି ଓରଫ ମୁକୁନ୍ଦ ଦେବ ନାବାଳକ ହୋଇଥିଲେ ମଧ୍ୟ ବିନା ବାଧାରେ ରାଜାର ସ୍ୱୀକୃତି ପାଇପାରିବେ । ପୁଣି ତା ହୋଇପାରିଲେ ରାଣୀ ନାବାଳକ ମୁକୁନ୍ଦଙ୍କର ମାତା ମହାଫେଜ୍ ଭାବରେ ମନ୍ଦିର ପରିଚାଳନା କରିପାରିବେ । ତେଣୁ ମନ୍ଦିର ପରିଚାଳନାରେ ଶୂନ୍ୟତା ତ ରହିବ ନାହିଁ ଓ ସରକାର ମନ୍ଦିର ପରିଚାଳନା ହାତକୁ ନେବାର ଆବଶ୍ୟକତା ଓ ସୁଯୋଗ ବି ରହିବ ନାହିଁ ।

'ଯେ (ଓଡ଼ିଶାର, ତା ପରେ ଖୋର୍ଦ୍ଧାର ଓ ଶେଷରେ) ପୁରୀର ରାଜା, ସେ ହିଁ ଜଗନ୍ନାଥଙ୍କ ଆଦ୍ୟସେବକ' ବୋଲି ଓଡ଼ିଶାରେ ପ୍ରାଚୀନ କାଳରୁ ଏକ ପରମ୍ପରା ବା ବିଧି ପ୍ରଚଳିତ ଥିଲା । ଭାଷା ବ୍ୟବହାରରେ ଦକ୍ଷତା/କୌଶଳ ବା ପାରଦର୍ଶିତା (ବା Manipulation) ମାଧ୍ୟମରେ ଦିବ୍ୟସିଂହଙ୍କୁ ପୁରୀର ରାଜ ସିଂହାସନ/ପଦକୁ ଅଯୋଗ୍ୟ ବୋଲି ପ୍ରତିପାଦିତ କରିବାପାଇଁ ଏହି ପରମ୍ପରାକୁ ଅତି ସଫଳତାର ସହ ବିନିଯୋଗ/ ପ୍ରୟୋଗ କରାଗଲା । ଭାଷାର ସଫଳ ବ୍ୟବହାର ମାଧ୍ୟମରେ ବ୍ୟକ୍ତି କିପରି ଶକ୍ତିଶାଳୀ

ହୋଇପାରେ ଏହା ତାହାର ଏକ ସାର୍ଥକ ଓ ଚମତ୍କାର ଉଦାହରଣ । ମନେହୁଏ ଏ କ୍ଷେତ୍ରରେ ଭାଷା-ବ୍ୟବହାରରେ ପ୍ରଦର୍ଶିତ ଦକ୍ଷତା ବା କୌଶଳର ସମସ୍ତ ଗୌରବ ପରବର୍ତ୍ତୀ କାଳର ଉତ୍କଳଗୌରବ ମଧୁସୂଦନଙ୍କର ହିଁ ପ୍ରାପ୍ୟ । ଅବଶ୍ୟ ରାଣୀ ସୂର୍ଯ୍ୟମଣି ଥିଲେ ଏହି ଘଟଣାର କେନ୍ଦ୍ରବିନ୍ଦୁରେ । କିନ୍ତୁ ପ୍ରକୃତରେ ରାଣୀଙ୍କ ଆଇନ୍ ଉପଦେଷ୍ଟା ଭାବରେ ଉତ୍କଳଗୌରବ ମଧୁସୂଦନ ହିଁ ଏହାର ପ୍ରକୃତ ନାୟକ ବୋଲି ଅନୁମାନ କରାଯାଇପାରେ ।

ସୂଚନା ଦିଆଯାଇଛି ଯେ କେବଳ ପୁରୀର ରାଜା ଭାବରେ ହିଁ ଦିବ୍ୟସିଂହ ଥିଲେ ଜଗନ୍ନାଥଙ୍କ ଆଦ୍ୟସେବକ । ବର୍ତ୍ତମାନ ରାଣୀ ସୂର୍ଯ୍ୟମଣିଙ୍କ ଉଦ୍ଦେଶ୍ୟସାଧନକୁ ଆଖି ଆଗରେ ରଖି, 'ଯିଏ ପୁରୀର ରାଜା, ସେ ହିଁ ଜଗନ୍ନାଥଙ୍କ ଆଦ୍ୟସେବକ' ବୋଲି କୁହା ନ ଯାଇ, କୁହାଗଲା ଯେ 'ଯିଏ ଆଦ୍ୟସେବକ, ସେ ହିଁ ପୁରୀର ରାଜା' । ଏ ଉଭୟ ଉକ୍ତି ବା ବକ୍ତବ୍ୟ ଆପାତତଃ-ଏକ-ଅର୍ଥବାଚୀ ବା ଏକ-ଅର୍ଥବାଚୀ ବୋଲି ମନେ ହେଉଥିଲେ ମଧ୍ୟ - ଭାଷା ବ୍ୟବହାରରେ କୌଶଳ ହେତୁ ବାଚିକ ସାମ୍ୟ ଭିତର ଦେଇ ଅର୍ଥଗତ-ବୈଷମ୍ୟ ସୃଷ୍ଟିକରି ପ୍ରକୃତରେ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରୁଥିଲା । କେବଳ ସେତିକି ନୁହେଁ, ତା ପରେ ପୁଣି 'ଯିଏ ଆଦ୍ୟସେବକ, ସେ ହିଁ ପୁରୀର ରାଜା' ଉକ୍ତି/ବକ୍ତବ୍ୟଟିକୁ ନାସ୍ତିବାଚକ କରାଯାଇ କୁହାଗଲା, 'ଯିଏ ଆଦ୍ୟସେବକ ନୁହେଁ, ସେ ପୁରୀର ରାଜା ନୁହେଁ' ବା ଆହୁରି ସ୍ପଷ୍ଟ କରାଯାଇ କୁହାଗଲା 'ଯିଏ ଆଦ୍ୟସେବକ ନୁହେଁ ବା ହୋଇପାରିବ ନାହିଁ, ସେ ପୁରୀର ରାଜା ହୋଇପାରିବ ନାହିଁ ।' ଉକ୍ତି ବା ବକ୍ତବ୍ୟଟିର ଏଇ କ୍ରମ-ବିବର୍ତ୍ତନକୁ ନିମ୍ନ ଭାବରେ ପ୍ରକାଶ କରାଯାଇପାରେ :

(୧) ଯିଏ ଓଡିଶାର ବା ଖୋର୍ଦ୍ଧା/ପୁରୀର ରାଜା, ସେ ହିଁ ଜଗନ୍ନାଥଙ୍କ ଆଦ୍ୟସେବକ ।

(୨) ଯିଏ ଆଦ୍ୟସେବକ, ସେ ହିଁ ଖୋର୍ଦ୍ଧା/ପୁରୀର ରାଜା ।

(୩) ଯିଏ ଆଦ୍ୟସେବକ ନୁହେଁ, ସେ ଖୋର୍ଦ୍ଧା/ପୁରୀଉ ରାଜା ନୁହେଁ ।

(୪) ଯିଏ ଆଦ୍ୟସେବକ ହୋଇପାରିବ ନାହିଁ, ସେ ଖୋର୍ଦ୍ଧା/ପୁରୀର ରାଜା ହୋଇପାରିବ ନାହିଁ ।

ଉକ୍ତି/ବକ୍ତବ୍ୟ-ବିବର୍ତ୍ତନର ଏଇ କ୍ରମଟି କୌଣସିଠାରେ ଲିପିବଦ୍ଧ ହୋଇ ନ ଥାଇପାରେ, କିନ୍ତୁ ସେଇ କ୍ରମଟିକୁ ଅସ୍ୱୀକାର କରିବା ସମ୍ଭବ ନୁହେଁ । ଏ ମଧ୍ୟରୁ ୧ମ ଓ ୪ର୍ଥ ବା ଶେଷ ଉକ୍ତି/ବକ୍ତବ୍ୟ ମଧ୍ୟରେ ଯେଉଁ ପାର୍ଥକ୍ୟ ରହିଛି ତା ଅପେକ୍ଷାକୃତ ଅଧିକ ସ୍ପଷ୍ଟ ହୋଇଥିଲେ ମଧ୍ୟ ତା ବି ଧରିପାରିବା ଜଣେ ସାଧାରଣ ଲୋକ ପକ୍ଷରେ ଆଦୌ ସହଜ ନୁହେଁ । (କ୍ରମ-ବିବର୍ତ୍ତନର ବିଭିନ୍ନ ସ୍ତର ଭିତର ଦେଇ ଗତି କରିବା ବେଳେ ଉକ୍ତି ବା

ବକ୍ତବ୍ୟଗୁଡ଼ିକ ମଧ୍ୟରେ ଥିବା ପାର୍ଥକ୍ୟ ଧରିପାରିବା ତ ଅପେକ୍ଷାକୃତ ଅନେକ କଷ୍ଟ ।) ଅନ୍ୟ ସାଧାରଣ ଲୋକଙ୍କ କଥା ଦୂରେ ଥାଉ ତାହାକୁ ଅତି ସତର୍କ ବ୍ରିଟିଶ ସରକାର ମଧ୍ୟ ଧରିପାରି ନ ଥିଲେ । ଏଇପରି ଭାବରେ ୪ର୍ଥ ବା ଶେଷ ଉକ୍ତି/ବକ୍ତବ୍ୟଟିକୁ, – ତା କୌଣସି ବିଧି ହୋଇ ନ ଥିଲେ ମଧ୍ୟ, – ଏକ ବିଧିର ରୂପ ଦିଆଗଲା ଓ ବ୍ୟବହାର କରାଗଲା ହତଭାଗ୍ୟ ଦିବ୍ୟସିଂହ ଦେବଙ୍କୁ ତାଙ୍କ ଜୀବିତାବସ୍ଥାରେ ପୁରୀ ରାଜ ସିଂହାସନରୁ ହଟାଇ ଦେବାପାଇଁ । କାରଣ ସେ ଯଦି 'ଆଦ୍ୟସେବକ' ହେବାପାଇଁ ଅଯୋଗ୍ୟ ବୋଲି ପ୍ରମାଣ କରିଦିଆଯାଇପାରେ, ତେବେ ତ ସେ ଆପେ ଆପେ ପୁରୀରାଜା ହେବାପାଇଁ ଅଯୋଗ୍ୟ ହୋଇଯିବେ । ଅନ୍ତତଃ ତାହା ହିଁ ଥିଲା ଯୋଜନା ।

ତେଣୁ ଦିବ୍ୟସିଂହ ଦେବ ସମୁଦ୍ରଯାତ୍ରା କରି କଳାପାଣି ଯାଇଥିବାରୁ ତଥା ବନ୍ଦୀଶାଳାରେ ମ୍ଳେଚ୍ଛମାନଙ୍କ ହାତରୁ ଓ ସେମାନଙ୍କ ସହ ପାନାହାର କରିଥିବାରୁ ପତିତ ତଥା ଜଗନ୍ନାଥଙ୍କ ସେବାପୂଜାକୁ ବା 'ଆଦ୍ୟସେବକ' ହେବାକୁ ଅଯୋଗ୍ୟ ଓ ତେଣୁ ପୁରୀର ରାଜା ହେବାକୁ ଅଯୋଗ୍ୟ ବୋଲି ଦାବି ଅବଶ୍ୟ କରାଯାଇପାରେ । ତେବେ ସେପରି ଦାବିକୁ ସିଦ୍ଧ କରିବାପାଇଁ ଶାସ୍ତ୍ରୀୟ ପ୍ରମାଣ ଆବଶ୍ୟକ ଥିଲା । କିନ୍ତୁ ସେପରି ଶାସ୍ତ୍ରୀୟ ପ୍ରମାଣ କିଛି ନ ଥିଲା । ତେଣୁ ଶାସ୍ତ୍ରୀୟ ପ୍ରମାଣ ପରିବର୍ତ୍ତେ ଏପରି ଦାବିକୁ ସମର୍ଥନ କରୁଥିବା ପୁରୀ ଗୋବର୍ଦ୍ଧନ ପୀଠର ଶଙ୍କରାଚାର୍ଯ୍ୟ ଓ ଅନ୍ୟ କେତେକ ଶାସ୍ତ୍ରବିଦ୍ ପଣ୍ଡିତମାନଙ୍କ ଲିଖିତ ଅଭିମତ ସଂଗ୍ରହ କରାଗଲା, ଯାହା ଆଦୌ କଷ୍ଟକର ନ ଥିଲା । କାରଣ ସେମାନଙ୍କର ଥିଲା ପୁରୀ ରାଜବଂଶ ପ୍ରତି ଅଶେଷ ଶ୍ରଦ୍ଧା, ସମ୍ମାନ ଓ ଶୁଭେଚ୍ଛା । ଜଗନ୍ନାଥ ମନ୍ଦିରର ପରିଚାଳନା ବ୍ରିଟିଶ ସରକାରଙ୍କ ହାତକୁ ନ ଯାଇ ପୂର୍ବ ପରମ୍ପରା ଅନୁଯାୟୀ ସେଇ ରାଜବଂଶ ହାତରେ ରହୁ ବୋଲି ବି ସେମାନେ ସମସ୍ତେ ଚାହୁଁଥିଲେ । ତେଣୁ ଦିବ୍ୟସିଂହ କଳାପାଣି ଯାଇ ମ୍ଳେଚ୍ଛ ହାତରେ ଖାଇଥିବାରୁ ସେ କଳାପାଣିରୁ କେବେ ଫେରିଆସିଲେ ମଧ୍ୟ ଜଗନ୍ନାଥଙ୍କ ସେବାପୂଜାକୁ ଅର୍ଥାତ୍ ଆଦ୍ୟସେବକ ହେବାକୁ ଅଯୋଗ୍ୟ ହେବେ ବୋଲି ଗୋଟିଏ ଅଭିମତ ସେମାନଙ୍କଠାରୁ ଅତି ସହଜରେ ସଂଗ୍ରହ କରାଯାଇପାରିଲା । ସେମାନେ ତାହାକୁ ଆଦୌ ଦୋଷାବହ ବୋଲି ଭାବିଲେ ନାହିଁ । ପୁଣି ଏଇ ଅଭିମତକୁ ଶାସ୍ତ୍ରୀୟ ରୂପ ଓ ମର୍ଯ୍ୟାଦା ଦେବା ଉଦ୍ଦେଶ୍ୟରେ ସଂସ୍କୃତ ଭାଷାରେ ଲେଖାଗଲା ।

ତେବେ କେବଳ ସେତିକି ନୁହେଁ, ଏହି ତଥାକଥିତ ଶାସ୍ତ୍ରୀୟ-ପ୍ରମାଣ ବ୍ୟତୀତ ପରମ୍ପରାରୁ ମଧ୍ୟ ଗୋଟିଏ ଉଦାହରଣ ଖୋଜାଗଲା । କାରଣ ହୁଏତ ତଥାକଥିତ ଶାସ୍ତ୍ରୀୟ ପ୍ରମାଣଟି ପ୍ରକୃତରେ ଶାସ୍ତ୍ରୀୟ ହୋଇନଥିବାରୁ ତାହା ତେଣୁ ଦୁର୍ବଳ, ବୋଲି ମନେ

କରାଯିବାରୁ ତାହାକୁ ଅଧିକ ଶକ୍ତିଶାଳୀ ଓ ବିଶ୍ୱାସଯୋଗ୍ୟ କରିବାପାଇଁ ପରମ୍ପରାରୁ ଉଦାହରଣ ଦେବାର ଆବଶ୍ୟକତା ଅନୁଭୂତ ହେଲା । ଅଥବା ବିଚାର କରାଗଲା ଯେ ପରମ୍ପରା-ପ୍ରେମୀ ବ୍ରିଟିଶ ଶାସନାଧିକାରୀମାନଙ୍କ ସହଜରେ ବିଶ୍ୱାସ ଜନ୍ମାଇବାପାଇଁ ପରମ୍ପରାରୁ ଉଦାହରଣ ଦେବା ଆବଶ୍ୟକ । ସେ ଯାହାହେଉ, ପରମ୍ପରାରେ ମଧ୍ୟ ଠିକ୍ ସେଇପରି ଉଦାହରଣଟିଏ ନ ଥିଲା । ତେବେ ପରମ୍ପରାରୁ ଯେତିକି ମାଲମସଲା ମିଳିଲା ତାହାକୁ କିଛି ପରିମାଣରେ ପରିବର୍ତ୍ତିତ/ପରିବର୍ଦ୍ଧିତ କରି ଏପରି ଉଦାହରଣଟିଏ ସହଜରେ ତିଆରି କରିଦିଆଯାଇପାରେ । ଆଉ ତାହା ହିଁ କରିବାର ଉଦ୍ୟମ କରାଗଲା । ଜନଶ୍ରୁତି-ଓ-ମାଦଳାପାଞ୍ଜିଭିତ୍ତିକ ପରମ୍ପରାରେ ଥିଲା ଯେ ଭୋଇ ୨ୟ ରାମଚନ୍ଦ୍ର ଏକ ମୁସଲମାନ ରମଣୀକୁ ବିବାହ କରି ଜାତିଭ୍ରଷ୍ଟ ଓ ପତିତ ହୋଇଥିଲେ । ସେଥିରେ ଆହୁରି ମଧ୍ୟ ଥିଲା ଯେ ସେଇ ୨ୟ ରାମଚନ୍ଦ୍ରଙ୍କୁ ତାଙ୍କ ଜୀବିତାବସ୍ଥାରେ ରାଜ୍ୟ ହରାଇବାପାଇଁ ବି ପଡ଼ିଥିଲା । ମାଦଳାପାଞ୍ଜି ଅବଲମ୍ବନରେ ଐତିହାସିକମାନେ ଅବଶ୍ୟ ବିଶ୍ୱାସ କରନ୍ତି ଯେ ସେ ଅତ୍ୟନ୍ତ ଅମାନିଆ ହୋଇପଡ଼ିବାରୁ ଓ ଗୋପନରେ ଜଗନ୍ନାଥଙ୍କୁ ପୁରୀରୁ ନେଇ ଆଠଗଡ଼ର ମାରଦା ପରି ସ୍ଥାନରେ ଗୁପ୍ତରେ ରଖିବା ଫଳରେ ବଙ୍ଗ ନବାବଙ୍କ ଯାତ୍ରୀକର ବାବଦ ରାଜସ୍ୱ ହାନି ହୋଇଥିବାରୁ ନବାବଙ୍କ ପ୍ରତିଭୂ, କଟକର ସୁବାଦାର, ତାଙ୍କୁ ରାଜ୍ୟଚ୍ୟୁତ କରିଥିଲେ (ଦ୍ର: ମହତାବ, ୧୯୬୦, ପୃ.୪୬୮; ମହାପାତ୍ର, କେଦାରନାଥ, ୧୯୬୯, ପୃ.୧୮୮-୮୯ ଓ Kulke, 1978, pp. 336-37; 1979 pp. 183-86 and 1993, pp. 47-49 ତଥା ଏହି ସଙ୍କଳନର 'ପତିତପାବନ ଜଗନ୍ନାଥ' ପ୍ରବନ୍ଧ) । କିନ୍ତୁ ପରମ୍ପରାରେ ୨ୟ ରାମଚନ୍ଦ୍ର ଜାତିଚ୍ୟୁତ ତଥା ପତିତ ଓ ତେଣୁ ଜଗନ୍ନାଥଙ୍କ 'ଆଦ୍ୟସେବକ' ହୋଇପାରିନଥିବାରୁ ରାଜ୍ୟଚ୍ୟୁତ ହୋଇଥିବାର ବିବରଣୀ ଯେପରି ନ ଥିଲା, ସେହିପରି ମଧ୍ୟ ସେସବୁ ଘଟଣା ପ୍ରସଙ୍ଗରେ ସିଂହଦ୍ୱାର ଗୁମୁଟରେ ବିରାଜିତ ପତିତପାବନଙ୍କର କୌଣସି ସମ୍ପର୍କ ବା ଯୋଗସୂତ୍ର ଥିବାର ସୂଚନା ଇ ନ ଥିଲା । (ଆଉ ସେ ପ୍ରସଙ୍ଗରେ ପତିତପାବନଙ୍କ ସୂଚନା ଥିବାର କୌଣସି ସମ୍ଭାବନା ବି ନ ଥିଲା କାରଣ ୨ୟ ରାମଚନ୍ଦ୍ରଙ୍କ ପୂର୍ବରୁ ହିଁ ପତିତପାବନ ସିଂହଦ୍ୱାର ଗୁମୁଟରେ ବିରାଜିତ ଥିଲେ - ଯାହା ପୂର୍ବେ ଦର୍ଶାଯାଇଛି ।) କିନ୍ତୁ ଏପରି ସୁଯୋଗକୁ ହାତଛଡ଼ା କରୁଛି କିଏ ? ତେଣୁ ୨ୟ ରାମଚନ୍ଦ୍ର ଜାତିଚ୍ୟୁତ ତଥା ପତିତ ହୋଇଥିବା ବିବରଣୀ ଆଉ ସେ ଜୀବିତାବସ୍ଥାରେ ରାଜ୍ୟଚ୍ୟୁତ ହୋଇଥିବା ବିବରଣୀ ଦୁଇଟିକୁ ମିଶାଇ ଓ ତା ସହ ଆଉ କେତେକ ବିଷୟ କଳ୍ପନାରୁ ଯୋଗ କରି ବେଶ କିଛି ପରିମାଣରେ ଐତିହାସିକ ଭିତ୍ତିଭୂମିଶୂନ୍ୟ - ଅର୍ଥାତ୍ କିଛି ପାରମ୍ପରିକ ତଥ୍ୟ ଓ କିଛି ମିଥ୍ୟାକୁ ମିଶାଇ- ଏକ ପରିବର୍ଦ୍ଧିତ ଜନଶ୍ରୁତି ତିଆରି କରାଗଲା

ବା ସଂରଚିତ (Constructed) ହେଲା । ଏହି ଜନଶ୍ରୁତିକୁ ତିଆରି କରାଯାଇଥିଲା ପରମ୍ପରାରେ ସେପରି ଉଦାହରଣଟିଏ ଥିଲା ବୋଲି ଦାବି କରି ଉପରେ ସୂଚିତ ତଥାକଥିତ ଶାସ୍ତ୍ରୀୟ ପ୍ରମାଣକୁ ସମର୍ଥନ ଯୋଗାଇଦେବା ଉଦ୍ଦେଶ୍ୟରେ । ଅଧିକାଂଶ ଜନଶ୍ରୁତି ଏହିପରି ଭାବରେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନପାଇଁ ତିଆରି ହୋଇଥାଏ । ସେ ଯାହାହେଉ, ସେଇ ପରିବର୍ଦ୍ଧିତ ଜନଶ୍ରୁତି/ଉଦାହରଣକୁ ଏପରି କୌଶଳର ସହ ସଂରଚନା କରାଯାଇଥିଲା ଯେ ତା ସହଜରେ ସମସ୍ତଙ୍କର ବିଶ୍ୱାସ ଉତ୍ପାଦନରେ ସମ୍ପୂର୍ଣ୍ଣ ଭାବରେ ସଫଳ ଓ ସମର୍ଥ ହେଲା ଓ ତା'ର ସମ୍ପୂର୍ଣ୍ଣ ଐତିହାସିକ ପ୍ରାମାଣିକତା ସମ୍ପର୍କରେ କାହାରି ମନରେ କୌଣସି ସନ୍ଦେହ ରହିଲା ନାହିଁ । ଏକ ରାଜନୀତିକ ଉଦ୍ଦେଶ୍ୟ ସାଧନର ଯୂପକାଷ୍ଠରେ ସତ୍ୟକୁ ଏହିପରି ଭାବରେ ବଳି ପକାଇ ଦିଆଗଲା ।

କିଛି ପାରମ୍ପରିକ ତଥ୍ୟ ଓ କିଛି ମିଥ୍ୟାର ସମିଶ୍ରଣରେ ଗଠିତ ଅର୍ଥାତ ବେଶ କିଛି ପରିମାଣରେ ଐତିହାସିକ ଭିତ୍ତିଭୂମିଶୂନ୍ୟ ଏହି ପରିବର୍ଦ୍ଧିତ ଜନଶ୍ରୁତି - ବା ପରମ୍ପରାରୁ ମିଳୁଥିବା ତଥାକଥିତ 'ଉଦାହରଣ' - ଅନୁଯାୟୀ, ଭୋଇ ୨ୟ ରାମଚନ୍ଦ୍ର ଏକ ମୁସଲମାନ ରମଣୀଙ୍କୁ ବିବାହ କରି ଜାତିଭ୍ରଷ୍ଟ ଓ ପତିତ ତ ହେଲେ, ପୁଣି ସେ କାରଣରୁ ଜଗନ୍ନାଥଙ୍କ ସେବାକୁ, ଅର୍ଥାତ୍ ଆଦ୍ୟସେବକ ହେବାକୁ, ଅଯୋଗ୍ୟ ବି ହେଲେ । ଆଉରି ମଧ ସେଇ ପରିବର୍ଦ୍ଧିତ ଜନଶ୍ରୁତି ଅନୁଯାୟୀ, ଜାତିଭ୍ରଷ୍ଟ ଓ ପତିତ ହୋଇଥିବା ସତ୍ତ୍ୱେ, ୨ୟ ରାମଚନ୍ଦ୍ର ମନ୍ଦିରରେ ପ୍ରବେଶ ନ କରି ବି କିପରି ଜଗନ୍ନାଥଙ୍କୁ ଦର୍ଶନ କରିପାରିବେ କେବଳ ସେଇଥିପାଇଁ ପତିତପାବନ ମୂର୍ତ୍ତି ସିଂହଦ୍ୱାରରେ ବସିଲେ । ସେଥିରେ ପୁଣି କୁହାଯାଇଥିଲା ଯେ ସେଇ ୨ୟ ରାମଚନ୍ଦ୍ର ଜଗନ୍ନାଥଙ୍କ ସେବାପୂଜାକୁ (ଅର୍ଥାତ୍ ଆଦ୍ୟସେବକ ହେବାକୁ) ଅଯୋଗ୍ୟ ହେବାରୁ ହିଁ ତାଙ୍କୁ ରାଜ୍ୟଚ୍ୟୁତ ହେବାକୁ ହୋଇଥିଲା ... ଇତ୍ୟାଦି । ସିଂହଦ୍ୱାର ଗୁମୁଟରେ ପତିତପାବନ ମୂର୍ତ୍ତି ବିରାଜିତ ଥିବାରୁ ଓ ଜନଶ୍ରୁତିରେ ତା'ର ସୂଚନା ଦିଆଯାଇ ଥିବାରୁ ଜନଶ୍ରୁତିଟି ପ୍ରାମାଣିକ ତଥା ଐତିହାସିକ ଭିତ୍ତିଭୂମିସମ୍ପନ୍ନ ବୋଲି ମନେ ହେଲା ତଥା ସେପରି ଧାରଣାଟିଏ ସହଜରେ ତିଆରି କରାଯାଇପାରିଲା ।

ମୋଟ ଉପରେ ପରମ୍ପରାରୁ ମିଳୁଥିବା କିଛି ତଥ୍ୟ ସହ କିଛି ମିଥ୍ୟାର ସମିଶ୍ରଣରେ ଏପରି ଏକ ପରିବର୍ଦ୍ଧିତ ଜନଶ୍ରୁତି ତିଆରି କରିବାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ୧୯ଶ ଶତକରେ ଦ୍ୱୀପାନ୍ତରିତ ଦିବ୍ୟସିଂହ ଦେବଙ୍କୁ ଜଗନ୍ନାଥଙ୍କ ସେବାପୂଜାକୁ (ଅର୍ଥାତ୍ ଆଦ୍ୟସେବକ ହେବାକୁ) ଅଯୋଗ୍ୟ ଓ ତେଣୁ ପୁରୀର ରାଜା ପଦକୁ ମଧ ଅଯୋଗ୍ୟ ବୋଲି ପ୍ରତିପାଦନ କରି ସେ ହିଁ ତଥାପି ପୁରୀର ରାଜା ବୋଲି ବିଟ୍ରିଶ ସରକାରଙ୍କ ଅଭିମତ ବା ସ୍ୱୀକୃତିକୁ ଚାଲେଞ୍ଜ କରିବା । ଆଉ ଏଇ ମୁଖ୍ୟ ଉଦ୍ଦେଶ୍ୟ ସହ ସମ୍ପର୍କାନ୍ୱିତ ଓ ତା'

ଉପରେ ସମ୍ପୂର୍ଣ୍ଣ ଭାବରେ ନିର୍ଭରଶୀଳ ଉପ-ଉଦ୍ଦେଶ୍ୟଗୁଡ଼ିକ ଥିଲା : (୧) ଯଦି ଦିବ୍ୟସିଂହ ଆପେ ଆପେ ରାଜା ପଦକୁ ଅଯୋଗ୍ୟ ହୋଇଯାଆନ୍ତି, ତେବେ ସରକାର ତାଙ୍କ ନାବାଳଗ ପୁତ୍ର ଜଗନ୍ନାଥ ଜେନାମଣି ଓରଫ୍ ମୁକୁନ୍ଦ ଦେବ୍‌କୁ ରାଜା ବୋଲି ସ୍ୱୀକୃତି ଦେବାକୁ ଆପତ୍ତି କରିପାରିବେ ନାହିଁ ବା ଆପତ୍ତି କରିବାର କୌଣସି କାରଣ ରହିବ ନାହିଁ । (୨) ଆଉ ନାବାଳଗ ମୁକୁନ୍ଦ ଦେବ ରାଜା ହେଲେ ରାଣୀ ସୂର୍ଯ୍ୟମଣି ତାଙ୍କର ମାତା ମହାଫେଜ୍ ଭାବରେ ଜଗନ୍ନାଥ ମନ୍ଦିର ପରିଚାଳନା କରିପାରିବେ । (୩) ତେଣୁ ମନ୍ଦିର ପରିଚାଳନାରେ ଥିବା ଶୂନ୍ୟତା ଆଉ ରହିପାରିବ ନାହିଁ ଓ ବ୍ରିଟିଶ ସରକାର ମନ୍ଦିର ପରିଚାଳନା ହାତକୁ ନେବାର ସୁଯୋଗ ପାଇପାରିବେ ନାହିଁ । ତେଣୁ ଏଇସବୁ ଉଦ୍ଦେଶ୍ୟ ସାଧନପାଇଁ କିଛି ସତ୍ୟ ସହ କିଛି ମିଥ୍ୟା ମିଶାଇ ତିଆରି କରାଯାଇଥିଲା ପୂର୍ବୋକ୍ତ ଜନଶ୍ରୁତି । ଆଉ ସେଇ ଜନଶ୍ରୁତିରେ ଜାତିଚ୍ୟୁତ ଓ ପତିତ ଭୋଇ ୨ୟ ରାମଚନ୍ଦ୍ରଙ୍କୁ ଜଗନ୍ନାଥ ଦର୍ଶନର ସୁଯୋଗ ଦେବାପାଇଁ ହିଁ ପତିତପାବନ ମୂର୍ତ୍ତି ସିଂହଦ୍ୱାରରେ ବସିବା ତଥ୍ୟ/ବିବରଣୀଟି ସମ୍ପୂର୍ଣ୍ଣ ଭାବରେ ମିଥ୍ୟା ଥିଲା । ଆଉ ଏଇ ମିଥ୍ୟା ବିବରଣୀଟି ରାଣୀ ସୂର୍ଯ୍ୟମଣିଙ୍କ ଆବେଦନ ସହ ସଂଯୁକ୍ତ 'ମାଦଳାପାଞ୍ଜି'ର ଏକ ତଥାକଥିତ ଉଦ୍ଧୃତାଂଶ ମଧ୍ୟରେ ଥିଲା । ସେ କାରଣରୁ 'ମାଦଳାପାଞ୍ଜି'ର ସେଇ ତଥାକଥିତ ଉଦ୍ଧୃତାଂଶଟି ଜାଲ୍ ବୋଲି କେବଳ ସନ୍ଦେହ ନୁହେଁ, ସିଦ୍ଧାନ୍ତ ମଧ୍ୟ କରାଯାଇପାରେ । ଆଉ ମୁଁ ତାହା ହିଁ କରିଥିଲି ।

## (୪)

(୪.୧). ଡକ୍ଟର କାନୁନଗୋଙ୍କର କାଳଜ୍ଞାନ ତ ନାହିଁ । ପୁଣି କେବଳ ସେତିକି ନୁହେଁ, ତାଙ୍କର କାଣ୍ଡଜ୍ଞାନ ଅଛି କି ନାହିଁ ସେ ବିଷୟରେ ମଧ୍ୟ ସନ୍ଦେହ ହୁଏ । କାରଣ ସେ ପାରମ୍ପରିକ ହିନ୍ଦୁ ସମାଜରେ ଥିବା ଶୂଦ୍ରମାନଙ୍କ ସହ ଚଣ୍ଡାଳ ଆଦି ଅଛୁଆଁ ବା ଅସ୍ପୃଶ୍ୟ ବର୍ଗର ଲୋକମାନଙ୍କୁ ଚିହ୍ନିତ କରିଛନ୍ତି । ଶୂଦ୍ର ଓ ଅଛୁଆଁମାନେ ଯେ ଦୁଇ ବିଭିନ୍ନ ବର୍ଗ ବା ଗୋଷ୍ଠୀର ଲୋକ ଆଉ ଶୂଦ୍ରମାନେ ଯେ ଅଛୁଆଁ ନୁହଁନ୍ତି, ତା ବି ସେ ଜାଣନ୍ତି ନାହିଁ । ଶୂଦ୍ର ଓ ଅଛୁଆଁ ସମାନ ବା ଏକ ବର୍ଗ/ଗୋଷ୍ଠୀର ଲୋକ ବୋଲି ତାଙ୍କର ବିଶ୍ୱାସ- ଯାହା ବିସ୍ମୟକର । କାରଣ ତା ସତ୍ୟ ନୁହେଁ କି ଆମ ସାମାଜିକ ଚଳଣି ତାହାକୁ ସମର୍ଥନ କରେ ନାହିଁ । ମହାତ୍ମାଗାନ୍ଧୀ ଅଛୁଆଁମାନଙ୍କପାଇଁ ହିଁ ହରିଜନ ଅଭିଧା ବ୍ୟବହାର କରିଥିଲେ, ଶୂଦ୍ରମାନଙ୍କପାଇଁ ନୁହେଁ । ଆମ୍ବେଦକର ଥିଲେ ଏଇ ଅଛୁଆଁ ଶ୍ରେଣୀର ଓ ସେମାନଙ୍କ ନେତା । ବର୍ତ୍ତମାନ ସେଦିନର ସେଇ ଅଛୁଆଁମାନେ 'ଦଳିତ' ଅଭିଧାରେ ଅଭିହିତ । ଡକ୍ଟର କାନୁନଗୋ ଏ ସବୁ ଜାଣି ନ ଥିବା ପ୍ରକୃତରେ ବିସ୍ମୟଜନକ ।

ବୈଦିକ ଚତୁର୍ବର୍ଣ୍ଣ ମଧ୍ୟରେ ଅଛବମାନେ ଅନ୍ତର୍ଭୁକ୍ତ ହୋଇପାରି ନ ଥିଲେ । ତେଣୁ ସେମାନଙ୍କୁ ବେଳେ ବେଳେ, ବିଶେଷ ଭାବରେ ଦକ୍ଷିଣ ଭାରତରେ, ପଞ୍ଚମ ବର୍ଣ୍ଣ ବୋଲି ଗ୍ରହଣ କରାଯାଏ । ସେ କାରଣରୁ ଦକ୍ଷିଣ ଭାରତରେ ସେମାନଙ୍କୁ 'ପଞ୍ଚମା' ବୋଲି କୁହାଯାଏ । ସେଇଥିପାଇଁ ମୁଁ ପଞ୍ଚମ-ବର୍ଗ ଅଭିବ୍ୟକ୍ତି ବ୍ୟବହାର କରିଥିଲି । ଡକ୍ଟର କାନୁନଗୋ ତା ବୁଝିପାରିନାହାଁନ୍ତି । (ଏ ସମ୍ପର୍କରେ ଅଧିକ ତଥ୍ୟପାଇଁ ଦ୍ରଷ୍ଟବ୍ୟ : ଦାଶ, ଗଗନେନ୍ଦ୍ରନାଥ, ୧୯୯୮, ପୃ.୮, ପା.ଟୀ. ନ. ୮ ଓ ଦାସ, ନୀଳକଣ୍ଠ, ୧୯୫୩, ପୃ.୧୫୩) । ଜଗନ୍ନାଥ ମନ୍ଦିରର ଦ୍ୱାର ଶୂଦ୍ରମାନଙ୍କପାଇଁ ଅବଶ୍ୟ ଉନ୍ମୁକ୍ତ ଥିଲା; ଉନ୍ମୁକ୍ତ ନ ଥିଲା କେବଳ ଅଛବମାନଙ୍କପାଇଁ । ଦାଣ୍ଡି ରାମାୟଣର ରଚୟିତା ବଳରାମ ଦାସ ଶୂଦ୍ର ଥିଲେ, କିନ୍ତୁ ଅଛବ ନ ଥିଲେ । ତେଣୁ ତାଙ୍କପାଇଁ ବଡ଼ ଦେଉଳର ଦ୍ୱାର ରୁଦ୍ଧ ହୋଇଥିବାର ପ୍ରଶ୍ନ ଉଠିପାରେ ନାହିଁ । ସେହିପରି ଜଗନ୍ନାଥ ମନ୍ଦିରର ପରିସରରେ ବ୍ରାହ୍ମଣ ଓ ଶୂଦ୍ର ଏକ ପଙ୍‌କ୍ତିରେ ବସି ଅନ୍ନ-ମହାପ୍ରସାଦ ସେବନରେ ମଧ୍ୟ କୌଣସି ବାଧା ବି ନ ଥିଲା । ଆଉ ଏହା ମଧ୍ୟରେ ହିଁ ରହିଛି ଜଗନ୍ନାଥଙ୍କର ବିଶେଷତ୍ୱ ।

(୪.୨). ଜଗନ୍ନାଥ ଅବଶ୍ୟ ମୂଳତଃ ଆଦିବାସୀମାନଙ୍କର ଦେବତା ଥିଲେ । କିନ୍ତୁ କାଳକ୍ରମେ ଜଗନ୍ନାଥଙ୍କର ଆର୍ଯ୍ୟାୟନ ଓ ବ୍ରାହ୍ମଣାୟନ ଫଳରେ ଚଣ୍ଡାଳ ଆଦି ଅଛବମାନଙ୍କପାଇଁ ଜଗନ୍ନାଥ ମନ୍ଦିରର ଦ୍ୱାର ରୁଦ୍ଧ ହୋଇଯାଇଥିଲା । କେବେ ଯେ ଏପରି ହେଲା ତା କହିବା କଷ୍ଟକର । ତେବେ ଗଙ୍ଗରାଜାମାନଙ୍କ ସମୟରେ ଏପରି ହୋଇଥିବାର ଅନୁମିତ ହୁଏ । ୧୬ଶ ଶତାବ୍ଦୀରେ ଅଛବମାନଙ୍କର ଯେ ଜଗନ୍ନାଥ ମନ୍ଦିରରେ ପ୍ରବେଶାଧିକାର ନ ଥିଲା ତା ବିଭିନ୍ନ ସୂତ୍ରରୁ ଜଣାଯାଏ । ବଳରାମ ଦାସଙ୍କ 'ଲକ୍ଷ୍ମୀ ପୁରାଣ'ରେ ହିଁ ଏପରି ଭେଦଭାବର ପ୍ରତିବାଦ କରାଯାଇଥିଲା । ଏପରି ଭେଦଭାବ ନ ଥିଲେ ତା'ର ପ୍ରତିବାଦ କରାଯାଇଥାଆନ୍ତା ବା କାହିଁକି ? 'ଚୈତନ୍ୟ ଚରିତାମୃତ'ରେ ମଧ୍ୟ ତା'ର ସୂଚନା ମିଳିଥାଏ । ଚୈତନ୍ୟଙ୍କ ଶିଷ୍ୟ ଓ ବୃନ୍ଦାବନର ଷଡ୍-ଗୋସ୍ୱାମୀମାନଙ୍କ ମଧ୍ୟରେ ସନାତନ ଗୋସ୍ୱାମୀ ଥିଲେ ଅନ୍ୟତମ । ସେ ଥିଲେ ଭରଦ୍ୱାଜ ଗୋତ୍ରୀୟ ଯଜୁର୍ବେଦୀ ବ୍ରାହ୍ମଣ । ସେ ବଙ୍ଗର ନବାବ୍ ହୋସେନ୍ ସାହଙ୍କ ଅଧୀନସ୍ଥ ଜଣେ ଉଚ୍ଚ ପ୍ରଶାସନାଧିକାରୀ ଥିଲେ । ତାଙ୍କ ରାଜା/ନବାବ୍‌ଦତ୍ତ ପଦବୀ ଥିଲା 'ସାକର ମଲ୍ଲିକ' । ସେ ରାଜକାର୍ଯ୍ୟ ପରିତ୍ୟାଗ କରି ଚୈତନ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । କିନ୍ତୁ ସେ ମୁସଲମାନ ନବାବଙ୍କ ଅଧୀନରେ କାର୍ଯ୍ୟ କରିଥିବା ବେଳେ ମୁସଲମାନମାନଙ୍କ ଅତି ନିକଟ ସଂସ୍ପର୍ଶରେ ଆସିଥିବାରୁ ଆପଣାକୁ ପତିତ ବୋଲି ମନେ କରୁଥିଲେ । ସେ ଥରେ ପୁରୀ ଆସିଥିଲେ । ସେ ପୁରୀରେ ରହୁଥିବା ତାଙ୍କ ବସାଘରଠାରୁ ମନ୍ଦିରର ସିଂହଦ୍ୱାର

ସମ୍ମୁଖସ୍ଥ ବାଟ ଦେଇ ଗଲେ ଚୈତନ୍ୟଙ୍କ ବାସସ୍ଥାନ ବିଶେଷ ଦୂରବର୍ତ୍ତୀ ହୁଅନ୍ତା ନାହିଁ । ସେ କିନ୍ତୁ ସମୁଦ୍ର ତୀରବର୍ତ୍ତୀ ବୁଲାଣି ବାଟରେ ଉତପ୍ତ ବାଲୁକା ଉପରଦେଇ ଚୈତନ୍ୟଙ୍କୁ ଭେଟିବାକୁ ଗଲେ । ଫଳରେ ତାଙ୍କ ପାଦରେ ଫୋଟକା ବାହାରି ପଡ଼ିଲା । ଚୈତନ୍ୟ ବିସ୍ମିତ ହୋଇ ସେ ସିଂହଦ୍ୱାର ସମ୍ମୁଖସ୍ଥ ଅପେକ୍ଷାକୃତ କମ୍ ଦୂରବର୍ତ୍ତୀ ପଥରେ ନ ଆସି ସମୁଦ୍ର ତୀରବର୍ତ୍ତୀ ବୁଲାଣି ବାଟରେ ଓ ପୁଣି ସେ କାରଣରୁ ଉତପ୍ତ ବାଲୁକା ଉପରେ ଆସିବାର କାରଣ ପଚାରିବାରୁ ସେ କହିଥିଲେ,

> "ସିଂହଦ୍ୱାରେ ଯାଇତେ ମୋର ନାହିଁ ଅଧିକାର ।
> ବିଶେଷେ ଠାକୁରେର ତାହାଁ ସେବକ ପ୍ରଚାର ।। ୧୨୧
> ସେବକ ଗତାଗତି କରେ ନାହିଁ ଅବସର ।
> ତା'ର ସ୍ପର୍ଶ ହୈଲେ ସର୍ବନାଶ ହୈବେ ମୋର ।।" ୧୨୨ ଇତ୍ୟାଦି
> (ଚୈତନ୍ୟ ଚରିତାମୃତ, ଅନ୍ତ୍ୟ, ୪) ।

ଅର୍ଥାତ୍ ନିଜକୁ ପତିତ ମନେକରୁଥିବାରୁ ତାଙ୍କ ସ୍ପର୍ଶରେ ଜଗନ୍ନାଥଙ୍କ ସେବକମାନଙ୍କୁ ସ୍ପର୍ଶଦୋଷ ଲାଗିବ ବୋଲି ସେ ସେମାନଙ୍କଠାରୁ ନିଜକୁ ଦୂରରେ ରଖୁଥିଲେ । ଚୈତନ୍ୟ ମଧ୍ୟ ତାଙ୍କର ଏ ପ୍ରକାର ଆଚରଣକୁ ପସନ୍ଦ କରିଥିଲେ । କାରଣ ଜଗନ୍ନାଥ ମନ୍ଦିରର ପ୍ରଚଳିତ ରୀତିନୀତିରେ ସେ କୌଣସି ପ୍ରକାର ହସ୍ତକ୍ଷେପ କରିବା ବା ପରିବର୍ତ୍ତନ କରିବାପାଇଁ ଚାହୁଁ ନ ଥିଲେ, ଯଦିଓ ସେ ନିଜେ ଥିଲେ ଜଣେ ଉଦାରବାଦୀ । ମୋଟଉପରେ ଏଥିରୁ ଜଗନ୍ନାଥ ମନ୍ଦିରରେ ସେତେବେଳେ ମଧ୍ୟ ଭେଦଭାବ ଥିଲା ବୋଲି ସୂଚନା ମିଳେ । 'ଦାର୍ଢ୍ୟତା ଭକ୍ତି'ର 'ଦାସିଆ ବାଉରୀ ସମ୍ବାଦ'ରେ ବି ରହିଛି ତା'ର ସ୍ପଷ୍ଟ ସୂଚନା । ଏ ପ୍ରସଙ୍ଗରେ ମୁଁ ଉପେନ୍ଦ୍ର ଭଞ୍ଜଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରୁ ଯେଉଁ ପଙ୍କ୍ତିଟି,

> "ସ୍ନାନ ଯେ ଗୁଣ୍ଡିଚା ବେନି ସ୍ୱୟଂ ଲୀଳା ଯାର ।
> ପତିତ ପାବନ ଅର୍ଥେ ପ୍ରାସାଦୁଁ ବାହାର ।"

ଉଦ୍ଧାର କରିଥିଲି ସେ ତା'ର ଯେଉଁ ବ୍ୟାଖ୍ୟା ଦେଇଛନ୍ତି (କାନୁନଗୋ, ୧୯୯୭, ପୃ.୧୫୯୪କ-୧୫୯୪; ୨୦୦୦, ପୃ.୧୮୦-୮୨) ତାହା ଗ୍ରହଣୀୟ ନୁହେଁ । ତାଙ୍କ ମତରେ ଏହି ପଙ୍କ୍ତିରେ ଥିବା 'ପତିତ' ଶବ୍ଦଟିର ଅର୍ଥ "ପାପୀ" । କିନ୍ତୁ କେବଳ ନିଷ୍ପାପମାନଙ୍କର ଜଗନ୍ନାଥ ମନ୍ଦିରରେ ପ୍ରବେଶର ଅଧିକାର ଥିଲା, ଆଉ ପାପୀମାନଙ୍କର ସେପରି ଅଧିକାର ନ ଥିଲା ବୋଲି ଦାବି କରାଯାଇ ପାରେ ନାହିଁ । ସେପରି କୌଣସି ବିଧାନ ବା ପ୍ରଥା ଥିବାର କୌଣସି ସୂତ୍ରରୁ ଜଣାଯାଏ ନାହିଁ କି ତା'ର କୌଣସି ପ୍ରମାଣ ମଧ୍ୟ ନାହିଁ । ଆଉ ଯଦି ଡକ୍ଟର କାନୁନଗୋଙ୍କର ବିଶ୍ୱାସ ଓ ବକ୍ତବ୍ୟ ଅନୁଯାୟୀ –

ଜଗନ୍ନାଥ ମନ୍ଦିରରେ ଆଚଣ୍ଡାଳ-ବ୍ରାହ୍ମଣ ସମସ୍ତଙ୍କର ପ୍ରବେଶର ସମାନ ଅଧିକାର ଥିଲା, ତେବେ ଆଉ କାହାପାଇଁ, ଆଉ କେଉଁ ପତିତମାନଙ୍କ (ବା ଡକ୍ଟର କାନୁନଗୋଙ୍କ ବକ୍ତବ୍ୟ ଅନୁଯାୟୀ କେଉଁ ପାପୀମାନଙ୍କ) ପାବନପାଇଁ 'ସ୍ନାନ ଓ ଗୁଣ୍ଡିଚା ଯାତ୍ରା' ସମୟରେ ଜଗନ୍ନାଥ ମନ୍ଦିରର ବାହାରକୁ ଆସୁଥିଲେ ବୋଲି ଉପେନ୍ଦ୍ର ଭଞ୍ଜ ବିଚାର କରୁଥିଲେ ? ଆଉ କେଉଁ ପାପୀ ବାକି ରହିଲେ ? ଏ ପ୍ରଶ୍ନର କୌଣସି ସଦୁତ୍ତର ଦେବାକୁ ଡକ୍ଟର କାନୁନଗୋ ଅସମର୍ଥ ହୋଇଛନ୍ତି । ସେ ପଙ୍କ୍ତିଟିରେ ଥିବା 'ପତିତ' ଶବ୍ଦଟିର ଅର୍ଥ ମନ୍ଦିରରେ ପ୍ରବେଶାଧିକାରୀ ନ ଥିବା ଅଛବ ଜାତିର ଲୋକ ବୋଲି ଗ୍ରହଣ କଲେ ତା'ର ବକ୍ତବ୍ୟ ବୁଝିବାରେ ଆଉ କୌଣସି ଅସୁବିଧା ରହିବ ନାହିଁ । ତେଣୁ ଉପେନ୍ଦ୍ର ଭଞ୍ଜ ଏଇ ଅର୍ଥରେ ପତିତ ଶବ୍ଦଟି ବ୍ୟବହାର କରିଥିଲେ ବୋଲି ଅନୁମାନ କରାଯାଇପାରେ । ଏହା ଦେଶପ୍ରୀତି ଓ/ବା ଦେବଭକ୍ତି ରୂପକ ଭାବପ୍ରବଣତାର ବନ୍ୟାରେ ଭାସମାନ ଡକ୍ଟର କାନୁନଗୋଙ୍କ ପକ୍ଷରେ ପ୍ରୀତିକର ନ ହେଲେ ମଧ୍ୟ ସତ୍ୟ ।

ଅଛବମାନଙ୍କର ମନ୍ଦିରରେ ପ୍ରବେଶାଧିକାର ନ ଥିବାରୁ ମହାତ୍ମା ଗାନ୍ଧୀ ନିଜେ ବି ଜଗନ୍ନାଥ ମନ୍ଦିର ମଧ୍ୟକୁ ପ୍ରବେଶ କରୁ ନ ଥିଲେ । ତେଣୁ ୧୯୩୮ରେ କସ୍ତୁରବା ଆଦି ମହାତ୍ମା ଗାନ୍ଧୀଙ୍କ ଅଜ୍ଞାତସାରରେ ଡେଲାଙ୍ଗରୁ ଯାଇ ମନ୍ଦିର ମଧ୍ୟରେ ଜଗନ୍ନାଥଙ୍କୁ ଦର୍ଶନ କରିବାରେ ସେ ଅତ୍ୟନ୍ତ ବ୍ୟଥିତ ହୋଇପଡ଼ିଥିଲେ । ଏ ବିଷୟଟି ବେଶ ଜଣା କଥା । ଏତେ ବେଶି ଜଣା କଥା ହୋଇଥିବା ସତ୍ତ୍ୱେ ତାହା ବି ଡକ୍ଟର କାନୁନଗୋଙ୍କୁ ଜଣା ନ ଥିବା ବିସ୍ମୟର କଥା । ମହାତ୍ମା ଗାନ୍ଧୀଙ୍କ ସମ୍ପର୍କରେ ଯେ କୌଣସି ପ୍ରାମାଣିକ ପୁସ୍ତକରେ ଏ ତଥ୍ୟ ମିଳିବ । ଗୋପବନ୍ଧୁ ଚୌଧୁରୀ ତାଙ୍କ 'ଗାନ୍ଧୀ ଓ ଉତ୍କଳ' ପୁସ୍ତକରେ ଡେଲାଙ୍ଗଠାରେ ଗାନ୍ଧୀଙ୍କ ବକ୍ତବ୍ୟ ନିମ୍ନ ଭାବରେ ଉଦ୍ଧାର କରିଛନ୍ତି, "ପରେ ଓଡ଼ିଶା ତ ମୋ ପାଇଁ ଏକ ତୀର୍ଥ ହୋଇଥିଲା । ସେଠି ଜଗନ୍ନାଥ ଅଛନ୍ତି ବୋଲି ତାହା ମୋର ତୀର୍ଥ ନୁହେଁ, କାରଣ ସେ ଜଗନ୍ନାଥ ମନ୍ଦିର ଦୁଆର ତ ମତେ ବନ୍ଦ, ହରିଜନଙ୍କ ପାଇଁ ବନ୍ଦ ।" (ଚୌଧୁରୀ. ୧୯୪୫, ପୃ.୮୬) । କସ୍ତୁରବା ଆଦିଙ୍କ ଜଗନ୍ନାଥ ଦର୍ଶନରେ ମହାତ୍ମାଗାନ୍ଧୀ ବ୍ୟଥିତ ହୋଇଥିବା ବିବରଣୀ ସେ ପୁସ୍ତକରେ ତ ଅଛି (ତତ୍ରୈବ, ପୃ.୯୪-୯୮) ତା ବ୍ୟତୀତ ଚିନ୍ତାମଣି ମିଶ୍ରଙ୍କ 'ଅର୍ଦ୍ଧ ଶତାବ୍ଦୀର ଅନୁଭୂତି' ପୁସ୍ତକରେ ମଧ୍ୟ ଅଛି (ମିଶ୍ର. ଚିନ୍ତାମଣି, ୧୯୮୫, ପୃ.୪୮) ।

୧୯୪୮ର ଫେବୃଆରୀ ମାସରେ, ମହାତ୍ମା ଗାନ୍ଧୀଙ୍କ ତିରୋଧାନର ଅବ୍ୟବହିତ ପରେ, ହରିଜନମାନେ ସଂଘବଦ୍ଧ କିନ୍ତୁ ଶାନ୍ତିପୂର୍ଣ୍ଣ ଭାବରେ ପୁରୀ ବଡ଼ଦେଉଳରେ ପ୍ରବେଶ କରିବାର ଉଦ୍ୟମ କଲେ । ପଣ୍ଡାମାନଙ୍କ ବିରୋଧ ହେତୁ

ପ୍ରଥମ କେତେଥରର ଉଦ୍ୟମ ବ୍ୟର୍ଥ ହେବା ପରେ ସେ ମାସର ୨ୟ ସପ୍ତାହରେ ମୋହନ ନାୟକଙ୍କ ନେତୃତ୍ୱରେ ହରିଜନମାନେ ଅବଶେଷରେ ପ୍ରଥମ ଥରପାଇଁ ଜଗନ୍ନାଥ ମନ୍ଦିର ମଧ୍ୟକୁ ପ୍ରବେଶ କରିବାରେ ସମର୍ଥ ହୋଇଥିଲେ । ସେହି ଦିନ ପୁରୀର ମହୋଦଧିରେ ମହାତ୍ମା ଗାନ୍ଧୀଙ୍କ ଚିତାଭସ୍ମ ମଧ୍ୟ ବିସର୍ଜିତ ହୋଇଥିଲା । ଡକ୍ଟର କାନୁନଗୋ ସେ ସମୟର ସମ୍ବାଦପତ୍ରର ପୃଷ୍ଠା ଓଲଟାଇଲେ ସହଜରେ ତାହାର ପ୍ରମାଣ ପାଇପାରିବେ । କାରଣ ଏ ସମ୍ବାଦ ଖୁବ୍ ବଡ଼ ବଡ଼ ହରଫ୍‌ର ଶିରୋନାମା ତଳେ ହିଁ ପ୍ରକାଶ ପାଇଥିଲା । ଏହା ସେ ଜାଣି ନ ଥିବା ମଧ୍ୟ ଆଉ ଏକ ବିସ୍ମୟଜନକ ବିଷୟ । ଏହା ଏକ ଐତିହାସିକ ସତ୍ୟ । ଆଉ ଏଇ ଐତିହାସିକ ସତ୍ୟଟି କହିଥିବାରୁ ସେ ମୋର ବକ୍ତବ୍ୟକୁ "ଅସୂୟାଯୁକ୍ତ ଯୁକ୍ତିସାରଶୂନ୍ୟ ଦମ୍ଭୋକ୍ତି" ଆଖ୍ୟାରେ ଅଭିହିତ କରିଛନ୍ତି ତଥା ତାର ଐତିହାସିକତାକୁ ଅଗ୍ରାହ୍ୟ କରିଦେଇଛନ୍ତି (କାନୁନଗୋ, ୧୯୯୭, ପୃ.୧୫୯୩ଖ ଓ ୧୫୯୪ଖ; ୨୦୦୦, ପୃ.୧୮୧ ଓ ୧୮୩ )। ଅସଲ କଥା ହେଉଛି, ଦେଶପ୍ରୀତି–ଓ/ବା–ଦେବଭକ୍ତି–ଜନିତ ଭାବପ୍ରବଣତା ତାଙ୍କୁ ଏପରି ଭାବରେ ଗ୍ରାସ କରିଛି ଯେ ଉନ୍ମୁକ୍ତ ମନରେ ଐତିହାସିକ ସତ୍ୟକୁ ଜାଣିବାର ଓ ଜାଣି ତାକୁ ଗ୍ରହଣ କରିବାର କୌଣସି ଆଗ୍ରହ ଓ ଅଭୀପ୍ସା ତାଙ୍କର ନାହିଁ । କେତେଗୁଡ଼ିଏ ବଦ୍ଧମୂଳ କିନ୍ତୁ ଭ୍ରମାତ୍ମକ ଧାରଣାକୁ ସେ ଜାବୁଡ଼ିଧରି ବସିଛନ୍ତି । ଯାହାକୁ ଆଦର୍ଶ ବୋଲି ଗ୍ରହଣ ଓ ପ୍ରଖ୍ୟାପନ କରାଯାଏ ବା ଯାହା ହେବା ଉଚିତ ବାସ୍ତବ କ୍ଷେତ୍ରରେ ତାହା ସବୁ ବେଳେ ଘଟି ନ ଥାଏ । ସେ କିନ୍ତୁ ତା ବୁଝିବା ପାଇଁ ପ୍ରସ୍ତୁତ ନୁହଁନ୍ତି । ସର୍ବତ୍ର ଓଡ଼ିଶା ଓ ଜଗନ୍ନାଥଙ୍କ ବିଶେଷତ୍ୱ ଓ ମହତ୍ତ୍ୱକୁ ଯେନତେନ ପ୍ରକାରେଣ ପ୍ରତିପାଦନ କରିବାପାଇଁ ସେ ବଦ୍ଧପରିକର । ଏଥିରେ ସତ୍ୟ ବଳି ପଡ଼ିବା ସ୍ୱାଭାବିକ ।

(୪.୩). ପ୍ରସଙ୍ଗକ୍ରମେ ଡକ୍ଟର କାନୁନଗୋଙ୍କର ଆଉ ଗୋଟିଏ ମନ୍ତବ୍ୟର ଉତ୍ତର ଏଠାରେ ଦେବା ଉଚିତ ହେବ । ମୋର ଅନ୍ୟ ଏକ ପ୍ରବନ୍ଧରେ ମୁଁ କହିଥିଲି, "ପୁଣି ସେଥିପାଇଁ କେତେକ ବିଶ୍ୱାସ କରନ୍ତି ଯେ ଜଗନ୍ନାଥ ମନ୍ଦିରର ପ୍ରବେଶାଧିକାରରୁ ବଞ୍ଚିତ ଏଇ ଅଛବ ଜାତିର ଲୋକମାନଙ୍କୁ ଜଗନ୍ନାଥ ଦର୍ଶନର ସାନ୍ତ୍ୱନାମୂଳକ ବ୍ୟବସ୍ଥା ସ୍ୱରୂପ ମନ୍ଦିରର ମୁଖଶାଳା ବା ଗୁମୁଟ/ପ୍ରବେଶ ଦ୍ୱାରରେ ପତିତପାବନ ମୂର୍ତ୍ତି ଖୋଦିତ ହୋଇଥିଲା ।"(ଦାଶ, ଗଗନେନ୍ଦ୍ରନାଥ,୧୯୯୬କ, ଝଙ୍କାର, ୪୮/୫, ପୃ.୫୬୦; ୨୦୧୪, ପୃ.୨୦୧) । ମୋର ଏହି ବକ୍ତବ୍ୟକୁ ବିଦ୍ରୂପାତ୍ମକ ସ୍ୱରରେ ଅଗ୍ରାହ୍ୟ କରିବା ପ୍ରସଙ୍ଗରେ ସେ ମନ୍ତବ୍ୟ କରନ୍ତି, "... ... କେଉଁ କେଉଁମାନେ ଏପରି ଉଦ୍ଭଟ ବିଶ୍ୱାସ କରନ୍ତି ସେମାନଙ୍କର କୌଣସି ପରିଚୟ ସେ ଏ ପ୍ରବନ୍ଧରେ ବା ଦ୍ରଷ୍ଟବ୍ୟ ଲେଖାଯାଇଥିବା

ପୂର୍ବ ପ୍ରବନ୍ଧରେ ଦେଇନାହାଁନ୍ତି ବା ଦେବାକୁ ଉଚିତ ମନେ କରିନାହାଁନ୍ତି । ତେଣୁ ପ୍ରକୃତରେ ଏପରି ବିଶ୍ୱାସ କରୁଥିବା ବ୍ୟକ୍ତି ଅଛନ୍ତି କି ନାହିଁ, ତା ଜାଣିବାର କୌଣସି ଉପାୟ ନାହିଁ ।" (କାନୁନଗୋ, ୧୯୯୭, ପୃ.୧୫୯୮କ; ୨୦୦୦, ପୃ.୧୯୦) । ଏହା ମୋ ସମ୍ପର୍କରେ ଏକ ମିଥ୍ୟା ଅଭିଯୋଗ ମାତ୍ର । କାରଣ ମୋ ପୂର୍ବ ପ୍ରବନ୍ଧରେ ମୁଁ କହିଥିଲି, "ପୁଣି ଅଛୁଆଁ ଜାତିମାନଙ୍କୁ ଜଗନ୍ନାଥ ଦର୍ଶନର ସୁଯୋଗ ଦେବାପାଇଁ ଚୈତନ୍ୟ ଏହି ମୂର୍ତ୍ତି ପ୍ରତିଷ୍ଠା କରାଇଥିଲେ ବୋଲି କୁହାଯାଏ ।" ଅର୍ଥାତ୍ ଏହା ଏକ ଜନଶ୍ରୁତି ବୋଲି କହିବା ପରେ ପରେ କେଉଁମାନେ ଏପରି ଜନଶ୍ରୁତିର ଉଲ୍ଲେଖ କରିଛନ୍ତି ମୁଁ ସେମାନଙ୍କର ନାମୋଲ୍ଲେଖ ମଧ୍ୟ କରିଥିଲି । ସେମାନେ ହେଉଛନ୍ତି, ନଗେନ୍ଦ୍ରନାଥ ମିତ୍ର, ଗୁରୁଦାସ ସରକାର ଓ ସୁନ୍ଦରାନନ୍ଦ ବିଦ୍ୟାବିନୋଦ (ଦାଶ, ଗଗନେନ୍ଦ୍ରନାଥ, ୧୯୮୫, ପୃ.୪୭୯ଖ । ଅବଶ୍ୟ ଅଛବ ଜାତିର ଲୋକମାନଙ୍କୁ ଜଗନ୍ନାଥ ଦର୍ଶନର ସୁଯୋଗ ଦେବାର ଉଦ୍ଦେଶ୍ୟ ଏ ମୂର୍ତ୍ତିର ପ୍ରତିଷ୍ଠା ମୂଳରେ ଥିଲେ ମଧ୍ୟ ନିଜେ ଚୈତନ୍ୟ ଏ ମୂର୍ତ୍ତି ସ୍ଥାପନ/ଖୋଦନ କରାଇଥିଲେ କି ନାହିଁ ତା ଏକ ସ୍ୱତନ୍ତ୍ର ପ୍ରଶ୍ନ । ହୁଏତ ଏ ମୂର୍ତ୍ତି ସ୍ଥାପିତ/ଖୋଦିତ ହୋଇସାରିବା ପରେ ହିଁ ତା ସହ ଚୈତନ୍ୟଙ୍କ ନାମ ଯୋଡ଼ି ଦିଆଯାଇ ପାରିଥାଏ । ସେ ପ୍ରଶ୍ନ କିନ୍ତୁ ଏଠାରେ ଅବାନ୍ତର ।) ତା ବ୍ୟତୀତ ବିଶିଷ୍ଟ ଗବେଷକ ପ୍ରଭାତ ମୁଖର୍ଜୀ ମଧ୍ୟ କୌଣସି ଜନଶ୍ରୁତି ଉପରେ ନିର୍ଭର ନ କରି ସମ୍ପୂର୍ଣ୍ଣ ସ୍ୱାଧୀନ ଭାବରେ ସେପରି ବିଶ୍ୱାସ କରନ୍ତି ବୋଲି ମଧ୍ୟ କହିଥିଲି (ତତ୍ରୈବ) । ସେ ସମସ୍ତେ ବିଶ୍ୱାସ କରିଥିଲେ ଯେ ଅଛୁଆଁ ଜାତିମାନଙ୍କୁ ଜଗନ୍ନାଥ ଦର୍ଶନର ସୁଯୋଗ ଦେବା ପାଇଁ ଏ ମୂର୍ତ୍ତି ସ୍ଥାପନ/ଖୋଦନ କରାଯାଇଥିଲା । ତେଣୁ ଏ ପ୍ରସଙ୍ଗରେ ସେ ମୋ ଉପରେ ମିଥ୍ୟା ଅଭିଯୋଗ ଆରୋପ କରିନାହାଁନ୍ତି କି ? ବର୍ତ୍ତମାନ ମୋର ପାଲଟା ପ୍ରଶ୍ନ : ମୋ ଉପରେ ଏପରି ମିଥ୍ୟା ଅଭିଯୋଗ ଆରୋପର କାରଣ କ'ଣ ?

ପୁଣି କେବଳ ସେତିକି ନୁହେଁ, ସେ ପ୍ରସଙ୍ଗରେ ମୁଁ ଏକ ଜନଶ୍ରୁତିର ସୂଚନା ଦେଇଥିବାରୁ ମତେ ବିଦ୍ରୂପ କରି ସେ ଆହୁରି ମଧ୍ୟ କହନ୍ତି, "ତଥାପି କିଛି ଶୁଣାଶୁଣି କଥାକୁ ଆଧାର କରି ସେ ନିଜର ମନୋପଯୋଗୀ ସିଦ୍ଧାନ୍ତରେ ଉପନୀତ ହେବାକୁ ଉଚିତ ମନେ କରିଅଛନ୍ତି ।'' (ତତ୍ରୈବ) । ମୁଁ କେବଳ କୌଣସି ଶୁଣାଶୁଣି କଥା ବା ଜନଶ୍ରୁତି ଉପରେ ନିର୍ଭର କରି ନ ଥିଲି । ଯେଉଁମାନେ ଜନଶ୍ରୁତିର ସୂଚନା ଦେଇଥିଲେ ମୁଁ ସେମାନଙ୍କ ଲିଖିତ ଅଭିମତ ଉପରେ ବି ନିର୍ଭର କରିଥିଲି ଓ ତା'ର ସ୍ପଷ୍ଟ ସୂଚନା ମଧ୍ୟ ଦେଇଥିଲି ଯାହା ଉପରେ ଦିଆଗଲା । ତେବେ ପ୍ରସଙ୍ଗକ୍ରମେ ମୋର ବିନୀତ ପ୍ରଶ୍ନ "ଶୁଣାଶୁଣି କଥା'' ବା ଜନଶ୍ରୁତି ପ୍ରତି ଡକ୍ଟର କାନୁନଗୋଙ୍କ ଏପରି ତାଚ୍ଛଲ୍ୟର କାରଣ

କ'ଣ ? ଏହି ତଥାକଥିତ ଶୁଣାଶୁଣି କଥା ମଧ୍ୟରେ ଲୋକଚଳଣି ଓ ଲୋକ ବିଶ୍ୱାସର ପ୍ରତିଫଳନ ହିଁ ଘଟିଥାଏ । ସେଣୁ ସମାଜବିଜ୍ଞାନୀମାନେ ସବୁଦିନେ ତା ଉପରେ ଗୁରୁତ୍ୱ ଆରୋପ କରିଆସିଛନ୍ତି । ଏବେ ଐତିହାସିକମାନେ ମଧ୍ୟ ତା ଉପରେ ବେଶ୍ ଗୁରୁତ୍ୱ ଦେଉଛନ୍ତି । ଏହା ବି କଣ ଡକ୍ଟର କାନୁନଗୋ ଜାଣିନାହାଁନ୍ତି ? ଏଠି କହିଦେବାର କଥା, ମୋର ଜନଶ୍ରୁତି ସମ୍ପର୍କିତ ବକ୍ତବ୍ୟ କେତେକ ଗବେଷକଙ୍କ ଲିଖିତ ଅଭିମତ ଉପରେ ପ୍ରତିଷ୍ଠିତ ତ ଥିଲା । ପୁଣି ସେପରି ଗୋଟିଏ ଜନଶ୍ରୁତି ଯେ ପ୍ରଚଳିତ ଥିଲା ତା ଆଉ ଏକ ସୂତ୍ରରୁ ମଧ୍ୟ ଜଣାଯାଏ । ଚିନ୍ତାମଣି ଆଚାର୍ଯ୍ୟ ତାଙ୍କ ଇଂରାଜୀ ପୁସ୍ତକରେ ପ୍ରସଙ୍ଗକ୍ରମେ କହନ୍ତି, "The image of Patitapaban, it is said, was placed to enable the so-called lower class Hindus, to look at the Lord,..." (ଆଚାର୍ଯ୍ୟ ଚିନ୍ତାମଣି, ୧୯୪୯.ପୃ.୪୪) । ଆଚାର୍ଯ୍ୟଙ୍କ ବକ୍ତବ୍ୟର "It is said"ରୁ ସ୍ପଷ୍ଟ ଜଣାଯାଏ ଯେ ଏପରି ଲୋକବିଶ୍ୱାସଟିଏ ଥିଲା । ମୋର "କେତେକ ବିଶ୍ୱାସ କରନ୍ତି" ବକ୍ତବ୍ୟ ମଧ୍ୟରେ ମୁଁ ଠିକ୍ ତାହା ହିଁ କହିଥିଲି । ଏ ଲୋକବିଶ୍ୱାସର ଐତିହାସିକ ଭିତ୍ତିଭୂମି ଥିବାର ଉଜ୍ଜ୍ୱଳ ସମ୍ଭାବନା ମଧ୍ୟ ରହିଛି ବୋଲି ମୋର ବିଶ୍ୱାସ । ସେ ସମ୍ପର୍କରେ ଅଧିକ ଗବେଷଣା କରାଯାଇପାରେ । ତାହାକୁ କିନ୍ତୁ ତାଚ୍ଛଲ୍ୟର ସହ ଉଡାଇ ଦିଆଯାଇପାରେ ନାହିଁ । ସେଇ ପରିଚୟହୀନ ବହୁ ଲୋକଙ୍କ ବିଶ୍ୱାସର ଭିତ୍ତିଭୂମି ଉପରେ ତ ଜଗନ୍ନାଥ ଧର୍ମର ପ୍ରତିଷ୍ଠା ।

(୫)

(୫). ଡକ୍ଟର କାନୁନଗୋ ଆହୁରି ଅନେକ କଥା କହିଛନ୍ତି । ଯଥା : ମୁଁ ପଣ୍ଡିତ ନୀଳକଂଠଙ୍କ ବକ୍ତବ୍ୟ ବୁଝିବାରେ ଅସମର୍ଥ (କାନୁନଗୋ, ୧୯୯୭, ପୃ.୧୫୯୪;୨୦୦୦, ପୃ.୧୮୨-୮୩); ଜନଶ୍ରୁତି, କିମ୍ବଦନ୍ତୀ ଓ ଇତିହାସର ସଂଜ୍ଞା ମତେ ଜଣା ନାହିଁ (ତତ୍ରୈବ, ପୃ. ୧୫୯୫; ୨୦୦୦, ପୃ,୧୮୫) ଇତ୍ୟାଦି ଇତ୍ୟାଦି । ପୁଣି ଜଗନ୍ନାଥ ମନ୍ଦିରର ପତ୍ରାବଳୀ ଅନ୍ତର୍ଗତ ରାଣୀ ସୂର୍ଯ୍ୟମଣିଙ୍କ ଆବେଦନପତ୍ର ସହ ସଂଯୁକ୍ତ 'ମାଦଳାପାଞ୍ଜି'ର ତଥାକଥିତ ଅଂଶଟି ଯେ କୌଣସି ଆଇନ ଅଦାଲତରେ ଗ୍ରହଣଯୋଗ୍ୟ ହେତୁ ତା ନିଶ୍ଚୟ ପ୍ରାମାଣିକ ବୋଲି ମଧ୍ୟ ପ୍ରବଚନ ମତେ ସେ ଶୁଣାଇଛନ୍ତ ।

ତେବେ ସେ ସବୁ ସମ୍ପର୍କରେ ଆଉ ଅଧିକ ଆଲୋଚନାର ଆବଶ୍ୟକତା ଅଛି ବୋଲି ମୁଁ ଅନୁଭବ କରୁନାହିଁ । କାରଣ ଉପରେ ଏ ପର୍ଯ୍ୟନ୍ତ କରାଯାଇଥିବା ଆଲୋଚନାରୁ ମୋ ବକ୍ତବ୍ୟର ଦୃଢ଼ ଭିତ୍ତିଭୂମି ଥିବା ଯେପରି ପ୍ରତିପାଦିତ ହୋଇଛି,

ମୋ ବକ୍ତବ୍ୟ ବିରୋଧରେ ସେ ଉଠାଇଥିବା ଆପତ୍ତିଗୁଡ଼ିକ ମଧ୍ୟ ସେହିପରି ଦୁର୍ବଳ ଭିତ୍ତିଭୂମିସମ୍ପନ୍ନ ବୋଲି ସ୍ପଷ୍ଟ ହୋଇଯାଇଛି । ଯେ କୌଣସି ଅବଗାହୀ ପାଠକ ଉନ୍ମୁକ୍ତ ମନ ନେଇ ବିଷୟଟିର ବିଚାର ଅନୁଶୀଳନ କଲେ ସେ ମୋ ସିଦ୍ଧାନ୍ତର ସାରବତ୍ତା ସହଜରେ ଉପଲବ୍ଧି କରିପାରିବ ବୋଲି ମୋର ଦୃଢ଼ ବିଶ୍ୱାସ ରହିଛି । ଅବଶ୍ୟ ଡକ୍ଟର କାନୁନଗୋ ମୋ ପ୍ରତିପାଦ୍ୟର ସାରବତ୍ତା ଉପଲବ୍ଧି କରି ନ ପାରିଲେ ମୁଁ ଆଦୌ ବିସ୍ମିତ ହେବି ନାହିଁ । କିନ୍ତୁ ଆଉ ତାଙ୍କ ସହ ବିତର୍କ କରିବା ପାଇଁ ମୋର ଅଭିରୁଚି ବା ପ୍ରବୃତ୍ତି ନାହିଁ । କାରଣ ଏକେ ତ ତାଙ୍କର କାଳଜ୍ଞାନର ଅଭାବ ରହିଛି, ସେଥିରେ ପୁଣି ତାଙ୍କର କାଣ୍ଡଜ୍ଞାନ ଅଛି କି ନାହିଁ ସେ ସମ୍ପର୍କରେ ସନ୍ଦେହର ଅବକାଶ ମଧ୍ୟ ଅଛି । ଶେଷରେ ଦେଶପ୍ରୀତି-ଓ/ବା-ଦେବଭକ୍ତିଜନିତ ଭାବପ୍ରବଣତା ହେତୁ ତାଙ୍କର କେତେକ ବଦ୍ଧମୂଳ କିନ୍ତୁ ଭ୍ରମାତ୍ମକ ବିଶ୍ୱାସ ଓ ଧାରଣା ରହିଛି । ତେଣୁ ସେ ଉନ୍ମୁକ୍ତ ମନ ନେଇ ବିଷୟଟିକୁ ନ ଦେଖି ନିଜର ସେଇ ବିଶ୍ୱାସ ଓ ଧାରଣାକୁ ପରମ୍ପରା ଓ ପାରମ୍ପରିକ ଅନୁଷ୍ଠାନ ଉପରେ ଆରୋପ ମାତ୍ର କରୁଛନ୍ତି । ଏ ସବୁ କାରଣରୁ ତାଙ୍କ ସହ ଆଉ ବିତର୍କ କରିବାର କୌଣସି ଆବଶ୍ୟକତା ଅଛି ବୋଲି ମୁଁ ମନେ କରୁ ନାହିଁ । ତେଣୁ ଏହା ହିଁ ମୋର ସେଇ ବିତର୍କ ସମ୍ପର୍କିତ ଶେଷ ଆଲୋଚନା ।

## ଉପାଦାନ ପଞ୍ଜିକା

(କ)

ଚୈତନ୍ୟ ଚରିତାମୃତ – କୃଷ୍ଣଦାସ କବିରାଜ ।

ଜଗନ୍ନାଥ ଚରିତାମୃତ – ଦିବାକର ଦାସ ।

ଦାର୍ଢ୍ୟତା ଭକ୍ତି – ରାମ ଦାସ ।

ପୁରୁଷୋତ୍ତମ ଚନ୍ଦ୍ରିକା, ୧୨୫୧, ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟ ।

ମାଦଳା ପାଞ୍ଜି , ୧୯୪୦, ସଂ. ଆର୍ତ୍ତଭଲ୍ଲଭ ମହାନ୍ତି ।

ଲକ୍ଷ୍ମୀପୁରାଣ – ବଳରାମ ଦାସ ।

Katakarajavamsavali, Vol. I, (1987) eds. G.C. Tripathi and Hermann Kulke

(ଖ)

ଆଚାର୍ଯ୍ୟ, ଚିନ୍ତାମଣି, ୧୯୪୯, Puri. (Berhampur)

କାନୁନଗୋ, ହରିହର, ୧୯୯୭, ପତିତପାବନ ଜଗନ୍ନାଥ ଓ ଶ୍ରୀ ମନ୍ଦିରର ମୁକ୍ତ ପରମ୍ପରା । (ଝଙ୍କାର, ୪୮/୧୧)

କାନୁନଗୋ, ହରିହର, ୨୦୦୦, ଇତିହାସ, ପରମ୍ପରା ଓ ଜଗନ୍ନାଥ । (ଅନୁଗୋଳ)

ଚୌଧୁରୀ, ଗୋପବନ୍ଧୁ, ୧୯୪୫, ଗାନ୍ଧୀ ଓ ଉତ୍କଳ । (କଟକ)

ଦାସ, ସର୍ବେଶ୍ୱର, ୧୯୬୩, ଭକ୍ତକବି ଜଗନ୍ନାଥ ଦାସଙ୍କ ଜୀବନ ଚରିତର ଉପାଦାନ । (ଝଙ୍କାର, ୧୫/୬)

ଦାଶ, ଗଗନେନ୍ଦ୍ର ନାଥ, ୧୯୮୫, ପତିତପାବନ ଜଗନ୍ନାଥ । (ଝଙ୍କାର, ୩୭/୬)

ଦାଶ, ଗଗନେନ୍ଦ୍ର ନାଥ, ୧୯୯୬କ, ସ୍ୱର୍ଣ୍ଣ ସମାର୍ଜନୀ ଛେରାପହଁରାର ? (ଝଙ୍କାର, ୪୩/୫) ; ୨୦୧୪, ପୁନଶ୍ଚ ଜନଶ୍ରୁତି କାଞ୍ଚିକାବେରୀ, (ଭୁବନେଶ୍ୱର), ପୃ.୧୯୪-୨୩୧ ।

ଦାଶ, ଗଗନେନ୍ଦ୍ର ନାଥ, ୧୯୯୬ଖ, ସ୍ୱର୍ଣ୍ଣ ସମାର୍ଜନୀ ଛେରାପହଁରାର ? (ଝଙ୍କାର, ୪୫/୬); ୨୦୧୪, ପୁନଶ୍ଚ ଜନଶ୍ରୁତି କାଞ୍ଚିକାବେରୀ, (ଭୁବନେଶ୍ୱର), ପୃ.୧୯୪-୨୩୧ ।

ଦାଶ, ଗଗନେନ୍ଦ୍ର ନାଥ, ୧୯୯୮, Hindus and Tribals. (New Delhi)

ମହତାବ, ହରେକୃଷ୍ଣ, ୧୯୬୦, History of Orissa, Vol. II. (Cuttack)

ମହାପାତ୍ର, କେଦାରନାଥ, ୧୯୬୯, ଖୁରଧା ଇତିହାସ । (ଭୁବନେଶ୍ୱର)

ମହାନ୍ତି, ସୁରେନ୍ଦ୍ର, ୧୯୯୨, ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ ଓ ଉତ୍ତର-ମଧ୍ୟ ପର୍ବ । (କଟକ)

ମିଶ୍ର, ନୀଳମଣି, ୧୯୭୮, ଭକ୍ତ ବାଲିଗାଁ ଦାସ (ଜୀବନୀ ଓ ରଚନା) । କଟକ

ମିଶ୍ର, ବିନାୟକ, ୧୯୬୨, ଓଡ଼ିଆ ସାହିତ୍ୟର ଇତିହାସ । (କଟକ)

ମିଶ୍ର, ସଚ୍ଚିଦାନନ୍ଦ, ୧୯୬୪, ଜଗନ୍ନାଥାମୃତ - ଏକ ଅଧ୍ୟୟନ । (ଝଙ୍କାର, ୧୭/୮) ।

Kulke, Hermann, 1978, The Struggle between the Rajas of Khurda and the Muslim Subahdars of Cuttack for the Dominance of the Jagannatha Temple. In: The Cult of Jagannath and the Regional Tradition of Orissa, eds. A Eschmann, H. Kulke and G.C.Tripathi, (New Delhi)

Kulke, Hermann, 1979, Jagannatha Kult und Gajapati-Koenigtum. (Wiesbaden)

Kulke, Hermann, 1993, Kings and Cults. (New Delhi)

(ପ୍ରଥମ ପ୍ରକାଶ : ଝଙ୍କାର ୫୬/୩, ୨୦୦୪)



# ସତ୍ୟବାଦୀ ଯୁଗ ନୁହେଁ, ସତ୍ୟବାଦୀ ଚିନ୍ତାସ୍ରୋତ

ଭାରତୀୟ ସଂସ୍କୃତିରେ କାଳର ପରିକଳ୍ପନା ବା ଅବବୋଧ (conception) ମୂଳତଃ ଆବର୍ତ୍ତନଶୀଳ ଚକ୍ରାକାର (circular) । ପାଶ୍ଚାତ୍ୟ ସଂସ୍କୃତିରେ କାଳର ପରିକଳ୍ପନା ମୂଳତଃ ସରଳ ରୈଖିକ ବା କେବଳ ରୈଖିକ (linear) । ଏ କାରଣରୁ ପାଶ୍ଚାତ୍ୟ ସଂସ୍କୃତିରେ ଇତିହାସ ସଚେତନତା ବୋଧହୁଏ ଅପେକ୍ଷାକୃତ ଅଧିକ ତୀବ୍ର । ଆଉ ଇତିହାସରେ କାଳ ବା ସମୟର ସ୍ରୋତକୁ ଉତ୍ତମ ରୂପେ ଧରିରଖି ତାହାର ସହଜ ଓ ସରଳ ଅବବୋଧପାଇଁ କାଳ ବା ସମୟର ସ୍ରୋତକୁ ଖଣ୍ଡ ଖଣ୍ଡ କରି ବିଭିନ୍ନ ବିଭାଗରେ ବିଭକ୍ତ କରାଯାଇ ଏହି ବିଭାଗ ଗୁଡ଼ିକୁ ଯୁଗ ଆଖ୍ୟାରେ ଆଖ୍ୟାୟିତ କରାଯାଏ । ଭାରତୀୟ ସଂସ୍କୃତିରେ ଏହି ଯୁଗଗୁଡିକର ସଂଖ୍ୟା ନିର୍ଦ୍ଦିଷ୍ଟ ଓ ଚକ୍ରାକାରରେ ତାହାର ଆବର୍ତ୍ତନ ବା ଘୂର୍ଣ୍ଣନ ଚାଲିଥାଏ; ପ୍ରତ୍ୟେକ ଯୁଗ ବାରମ୍ବାର ଆସୁଥାଏ ଓ ଯାଉଥାଏ । କିନ୍ତୁ ପାଶ୍ଚାତ୍ୟ ସଂସ୍କୃତିରେ ଗୋଟିଏ ଯୁଗର ଥରେ ଅନ୍ତ ହେଲେ ତାର ଆଉ ପୁନରାବର୍ତ୍ତନ ବା ପୁନରାଗମନ ହୁଏ ନାହିଁ । ପାଶ୍ଚାତ୍ୟ ସଂସ୍କୃତିର ସଂସ୍ପର୍ଶରେ ଆସି ଆମେ ଏବେ ଯେଉଁ ଇତିହାସର ଓ ତା ମଧ୍ୟରେ ସାହିତ୍ୟର ଇତିହାସର ଯେଉଁ ପରିକଳ୍ପନା କରିଛୁ ସେଥିରେ ବି ସେଇପରି ଯୁଗ ପରିକଳ୍ପନା କରାଯାଇଛି । ତେବେ ମନେ ରଖିବା ପାଇଁ ହେବ ଯେ ଇତିହାସରେ କାଳ ବା ସମୟ-ସ୍ରୋତର ସହଜ ଓ ସରଳ ଅବବୋଧପାଇଁ ତାହାକୁ ଖଣ୍ଡ ଖଣ୍ଡ କରି କାଟି ବିଭିନ୍ନ ବିଭାଗରେ ବିଭକ୍ତ କରି ସେହି ପ୍ରତ୍ୟେକ ବିଭାଗକୁ ଯୁଗ ଆଖ୍ୟାରେ ଆଖ୍ୟାୟିତ କରାଯାଏ । ସାହିତ୍ୟରେ ଇତିହାସରେ ମଧ୍ୟ ସେ କାରଣରୁ ଓ ସେହିପରି ଯୁଗର ପରିକଳ୍ପନା କରାଯାଇଛି ।

ତେବେ କାଳ ବା ସମୟ-ସ୍ରୋତକୁ ଏହିପରି ଖଣ୍ଡ ଖଣ୍ଡ କରି କାଟି ଯୁଗବିଭାଗର ପରିକଳ୍ପନା ଇତିହାସର ସହଜ ଅବବୋଧ ଉଦ୍ଦେଶ୍ୟରେ କରାଯାଇଥିଲେ ମଧ ତାହା ମୂଳତଃ ଓ ମୁଖ୍ୟତଃ କୃତ୍ରିମ, କାରଣ ପ୍ରକୃତ ପକ୍ଷେ ନଦୀର ପ୍ରବହମାନ ଜଳ ସ୍ରୋତ ପରି ସମୟର ସ୍ରୋତକୁ ବା କାଳକୁ ଖଣ୍ଡ ଖଣ୍ଡ କରି ଭାଙ୍ଗିବା ବା କାଟିବା ଓ ପ୍ରତ୍ୟେକ ଖଣ୍ଡ ବା ଭାଗକୁ

ପରସ୍ପରଠାରୁ ବିଛିନ୍ନ କରି ପୃଥକ ପୃଥକ କୋଠରୀରେ ଆବଦ୍ଧ କରି ରଖିବା ଆଦୌ ସମ୍ଭବ ନୁହେଁ । ଏ କାଟିବା ବା ଭାଙ୍ଗିବା କାମଟି ମାତ୍ର ମଣିଷର, ମହାକାଳର ପରିକଳ୍ପନା କରିପାରୁନଥିବା ସୀମିତ ଦୃଷ୍ଟି ସମ୍ପନ୍ନ ଐତିହାସିକର ବା ସମୀକ୍ଷକର, ମନ ମଧ୍ୟରେ ହିଁ ସାଧିତ ହୁଏ; ପ୍ରକୃତରେ ନୁହେଁ । ପୁଣି ଏପରି ପ୍ରଚେଷ୍ଟା ଭିତର ଦେଇ ଯେଉଁ ଦୃଷ୍ଟି ତାହା ଏକ ପାଖିଆ (one-sided) ଓ ତ୍ରୁଟିପୂର୍ଣ୍ଣ ହେବାକୁ ବାଧ୍ୟ । ଏହା କାଳର ପୂର୍ଣ୍ଣ ଅବବୋଧ ନୁହେଁ, ହୋଇପାରେ ନାହିଁ । ଦିନ ରାତିରେ ପରିଣତ ହୁଏ । କିନ୍ତୁ ଠିକ୍ କେଉଁ ମୁହୂର୍ତ୍ତରେ ଦିନର ଶେଷ ହୁଏ ଆଉ ରାତିର ଆରମ୍ଭ ହୁଏ ତା କହିବା, ସ୍ଥିର କରିବା ଆଦୌ ସମ୍ଭବ ନୁହେଁ, ତା ସୂର୍ଯ୍ୟ ଦିଗ୍‌ବଳୟରେ ବୁଡ଼ିବାପାଇଁ ଆରମ୍ଭ କରିବା ସମୟରେ ସୂର୍ଯ୍ୟ ଠିକ୍ ବୁଡ଼ିଯିବା ବେଳେ ନାଁ ନିର୍ଦ୍ଦିଷ୍ଟ ଘଣ୍ଟା, ମିନିଟ୍, ସେକେଣ୍ଡରେ ନାଁ ଆଉ କେତେବେଳେ ? ପୁଣି ବିଭିନ୍ନ ସ୍ଥାନର ଲୋକମାନଙ୍କପାଇଁ, ପାହାଡ଼ ଉପର ଓ ପାହାଡ଼ ତଳର ଲୋକଙ୍କ ପାଇଁ ସୂର୍ଯ୍ୟ ବୁଡ଼ିବାର ସମୟ ଏକ ନୁହେଁ; ସୂର୍ଯ୍ୟ ବି ବେଳେ ବେଳେ ବିଭିନ୍ନ କାରଣରୁ ଆଦୌ ଦେଖା ଦିଅନ୍ତି ନାହିଁ । ତେଣୁ କୃତ୍ରିମ ଭାବରେ ଆମେ ଦିନ ଓ ରାତି ମଧ୍ୟରେ ଏକ ଭେଦ ରେଖା ଟାଣୁ, ସେହିପରି ସପ୍ତାହ, ମାସ ଓ ବର୍ଷ ମଧ୍ୟରେ, ସେହିପରି ବିଭିନ୍ନ ଯୁଗ ମଧ୍ୟରେ ଆମେ ଭେଦ ରେଖା ଟାଣୁ । ଗୋଟିଏ ଯୁଗ ଆଉ ଏକ ଯୁଗଠାରୁ ଅଲଗା, ଦିନ ରାତିଠାରୁ ଅଲଗା ହେବାପରି । କିନ୍ତୁ ଉଭୟ କ୍ଷେତ୍ରରେ ଦୁହିଁଙ୍କ ମଧ୍ୟରେ ଟଣା ହୋଇଥିବା ସୀମା କୃତ୍ରିମ । ଏହି ତତ୍ତ୍ୱକୁ ସ୍ମରଣ ରଖି ସାହିତ୍ୟରେ ଯୁଗବିଭାଗ କରିବାପାଇଁ ପଡ଼ିବ ।

ତାପରେ ଇତିହାସର ଏଇ ଯୁଗ ବିଭାଗର ମୂଳସୂତ୍ରକୁ ବା ଭିତ୍ତିଭୂମିକୁ ଆବିଷ୍କାର କରିବା କଥା । ଯେତେବେଳେ ଇତିହାସ ଥିଲା, କେବଳ ଶାସକଗୋଷ୍ଠୀର ଇତିହାସ ସେତେବେଳେ ଶାସକମାନଙ୍କ ଶାସନକାଳ ହିଁ ଯୁଗବିଭାଗର ନିୟାମକ ଥିଲା, କାରଣ ତାକୁ ହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ବୋଲି ବିବେଚନା କରାଯାଉଥିଲା । ତେଣୁ ସେମାନଙ୍କ ନାମାନୁଯାୟୀ ଯୁଗର ନାମକରଣ କରାଯାଉଥିଲା । ଏବେ ଐତିହାସିକ ମାନେ ଆହୁରି ତଳେଇ କରି ମହାକାଳ ସ୍ରୋତର ପ୍ରକୃତ ପରିଚୟ ପାଇବାପାଇଁ ତାର ମୂଳ ପ୍ରବୃତ୍ତି ବା ଧର୍ମକୁ ଆବିଷ୍କାର କରି ଚିହ୍ନି ରଖିବାପାଇଁ ଚେଷ୍ଟା କରୁଛନ୍ତି । ତେଣୁ ଆଜି ଇତିହାସର ସ୍ୱରୂପ, ଆଉ ହୁଏତ ସଂଜ୍ଞା ମଧ୍ୟ, ବଦଳି ଯାଇଛି । ସେଇ ପୁରୁଣା ସୂତ୍ରର ଭିତ୍ତିଭୂମି ଉପରେ ଆଉ ନୂଆ ଯୁଗ ବିଭାଗର ପରିକଳ୍ପନା ସ୍ପୃହଣୀୟ ନୁହେଁ । ଆଜିର ଇତିହାସରେ ଶାସକମାନଙ୍କ ଇତିବୃତ୍ତ ଅପେକ୍ଷା ବିଭିନ୍ନ ଆର୍ଥନୀତିକ, ସାମାଜିକ, ଧର୍ମଗତ, ସଂସ୍କୃତିକ ଓ ରାଜନୀତିକ ଶକ୍ତି ଓ ପ୍ରତିଶକ୍ତି, ତାର ଉଦ୍ଭବ ବା ଉନ୍ମେଷ ଓ ବିକାଶ, ଓ ସେମାନଙ୍କର କ୍ରିୟା ଓ ପ୍ରତିକ୍ରିୟା, ସେମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ, ସଂଘର୍ଷ ଓ ସଂଘାତକୁ

ଆବିଷ୍କାର କରି ଓ ଧରିରଖିବାର ପ୍ରଚେଷ୍ଟା ହେଉଛି । ସେଥିରେ ପୁଣି ଗୋଟିଏ ନିର୍ଦ୍ଦିଷ୍ଟ ଶକ୍ତିର ବିଲୟ ଓ ଆଉ ଗୋଟିଏ ନୂତନ ଶକ୍ତିର ଅଭ୍ୟୁଦୟ ମଧ୍ୟରେ ସ୍ପଷ୍ଟ ସୀମାରେଖା ଟଣାଯାଇ ପାରୁନାହିଁ, କାରଣ ଅନେକ ସମୟରେ ପୁରାତନ ଶକ୍ତି ହିଁ ପରିସ୍ଥିତିର ଚାପରେ ଓ ଅନ୍ୟାନ୍ୟ ଶକ୍ତିର ପ୍ରଭାବ, ପ୍ରତିସ୍ପର୍ଦ୍ଧା ଓ ପ୍ରତିକ୍ରିୟାରେ ଆପେ ଆପେ କ୍ରମଶଃ ନୂତନ ଶକ୍ତିରେ ପରିଣତ ହେବାର ଲକ୍ଷ୍ୟ କରାଯାଉଛି । ତେଣୁ ଇତିହାସରେ ତଥା ସାହିତ୍ୟର ଇତିହାସରେ ଏପରି ଯୁଗ ବିଭାଗ ସମ୍ପୂର୍ଣ୍ଣ ଭାବରେ ତ୍ରୁଟିପୂର୍ଣ୍ଣ, ଅସଙ୍ଗତ, ଅପ୍ରାସଙ୍ଗିକ ତଥା ଅସମୀଚୀନ, ଅବୈଜ୍ଞାନିକ ଓ କୃତ୍ରିମ । କିନ୍ତୁ ସାହିତ୍ୟକୁ ବୁଝିବାରେ ଆମେ ଯୁଗବିଭାଗ ସହ ଏତେ ଅଭ୍ୟସ୍ତ ହୋଇଯାଇଛୁ ଯେ ନିକଟ ଭବିଷ୍ୟତରେ ଏଇ ନାଗପାଶରୁ ମୁକ୍ତି ପାଇବାର ସମ୍ଭାବନା ନାହିଁ । ତେଣୁ ସେଇ କୃତ୍ରିମତା, ଅସଙ୍ଗତି ଓ ଅସମୀଚୀନତା ସମ୍ପର୍କରେ ସଚେତନ ଥାଇ ମଧ୍ୟ ଯଦି କେହି ପରମ୍ପରା ଓ ଅଭ୍ୟାସର ରୋମନ୍ଥନରେ ସାହିତ୍ୟରେ ଯୁଗ ବିଭାଗ କରିବାପାଇଁ ବସେ ତେବେ ତାର ମୂଳଭିତ୍ତି କଣ ହେବା ଉଚିତ୍ ?

ମୋ କ୍ଷୁଦ୍ର ମତରେ ଗୋଟିଏ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ – ଆଉ ସମୟ ସୀମାକୁ ଏଠାରେ କିଛିଟା ହୁଗୁଳା ଅର୍ଥରେ ବ୍ୟବହାର କରାଯାଉଛି – ଗୋଟିଏ ନିର୍ଦ୍ଦିଷ୍ଟ ସାହିତ୍ୟର ଭାବଧର୍ମ ବା ଆତ୍ମା (content/matter) ଓ/ବା ଶିଳ୍ପକର୍ମ ବା ରୀତି (manner) ବା ଶୈଳୀ (style) କ୍ଷେତ୍ରରେ ଯଦି ଏକ ସୁନିର୍ଦ୍ଦିଷ୍ଟ ଚିନ୍ତାଧାରା ଓ/ବା ରୂପବୈଚିତ୍ର୍ୟ ମୁଖ୍ୟ ସ୍ଥାନ ଅଧିକାର କରିଥାଏ ବା ସବୁଠାରୁ ପ୍ରଭାବଶାଳୀ ବୋଲି ବିବେଚିତ ହୁଏ ତାହେଲେ ତାହାକୁ ସେହି ସାହିତ୍ୟର ଏକ ଯୁଗ ଆଖ୍ୟା ଦିଆଯାଇପାରେ । ଏ ପ୍ରସଙ୍ଗରେ ସ୍ମରଣ ରଖିବା ଉଚିତ୍ ଯେ ଆବଶ୍ୟକ ସ୍ଥଳେ କେତେକ ସମଧର୍ମା ଯୁଗକୁ ଆଛନ୍ନ ବା ଆବୃତ କରି ରଖିଥିବା ଗୋଟିଏ ମହାଯୁଗ ଓ ଗୋଟିଏ ଯୁଗ ମଧ୍ୟରେ ବିଭିନ୍ନ ଉପଯୁଗର ପରିକଳ୍ପନା ମଧ୍ୟ କରାଯାଇପାରେ । ପୁଣି ଏକ ନିର୍ଦ୍ଦିଷ୍ଟ ସାହିତ୍ୟର ବିଭିନ୍ନ ବିଭାଗରେ ଯଥା କବିତା, ନାଟକ, ଉପନ୍ୟାସ ଆଦି ବିଭାଗରେ ଏକ ସମୟରେ ବିଭିନ୍ନ ସମୟସୀମାସମ୍ପନ୍ନ ବିଭିନ୍ନ ସ୍ୱତନ୍ତ୍ର ଯୁଗର ପରିକଳ୍ପନା ମଧ୍ୟ ଆବଶ୍ୟକ ହୋଇପାରେ । ଅନ୍ୟ କଥାରେ ଏକ ନିର୍ଦ୍ଦିଷ୍ଟ ସାହିତ୍ୟର କବିତା କ୍ଷେତ୍ରରେ ଯୁଗ ବିଭାଗର ସମୟସୀମା ଉପନ୍ୟାସ କ୍ଷେତ୍ରରେ ଯୁଗବିଭାଗର ସମୟସୀମା ସହ ସମାନ୍ତରାଳ ନ ହୋଇପାରେ ବା ଉପନ୍ୟାସ ସହ ନାଟକର ଯୁଗବିଭାଗର ସମୟସୀମା ସମାନ୍ତରାଳ ନ ହୋଇ ପାରେ । ଏହି ଦୃଷ୍ଟିକୋଣକୁ ଉପେକ୍ଷା କଲେ ସାହିତ୍ୟରେ ଯୁଗ ବିଭାଗର ଆହୁରି ଅଧିକ କୃତ୍ରିମ, ଜଟିଳ, ଦୁର୍ବୋଧ ତଥା ଦ୍ୱନ୍ଦ୍ୱାତ୍ମକ ହୋଇ ପଡ଼ିବାର ସମ୍ଭାବନା ଦେଖାଯିବ । ପୁଣି ନିର୍ଦ୍ଦିଷ୍ଟ ସାହିତ୍ୟିକ ଯୁଗର ମୁଖ୍ୟ

ଭାବଧର୍ମ ଓ/ବା ଶିଳ୍ପକର୍ମ ପଛରେ ବା ମୂଳରେ ଯଦି ବାହାରର ଶକ୍ତି (external force), ଯଥା : ଅନୁଷ୍ଠାନ, ଘଟଣା, ଗୋଷ୍ଠୀ ବା ବ୍ୟକ୍ତିଙ୍କୁ ଆବିଷ୍କାର କରାଯାଇପାରେ ତା ହେଲେ ଯୁଗର ନାମକରଣ ସେହି ଶକ୍ତି, ଯଥା: ଅନୁଷ୍ଠାନ, ଘଟଣା, ଗୋଷ୍ଠୀ ବା ବ୍ୟକ୍ତିଙ୍କୁ କେନ୍ଦ୍ର କରି ହୋଇପାରେ । ସେହିପରି ଯଦି ନିର୍ଦ୍ଦିଷ୍ଟ ଆଭ୍ୟନ୍ତରୀଣ ସାହିତ୍ୟିକ ଶକ୍ତି (internal force), ଅନୁଷ୍ଠାନ, ଘଟଣା, ଗୋଷ୍ଠୀ ବା ବ୍ୟକ୍ତିଙ୍କୁ ଭିତ୍ତିକରି ବା କେନ୍ଦ୍ର କରି ସେହି ଯୁଗର ସୃଷ୍ଟି ହୋଇଥାଏ ତା ହେଲେ ଯୁଗର ଅନୁରୂପ ନାମକରଣ କରାଯାଇପାରେ ।

ପୂର୍ବୋକ୍ତ ସୈଦ୍ଧାନ୍ତିକ ଆଲୋଚନାର ଭିତ୍ତିଭୂମି ଉପରେ ସାଧାରଣ ଓ ସଂକ୍ଷିପ୍ତ ଭାବରେ ଓଡ଼ିଆ ସାହିତ୍ୟରେ ଯୁଗବିଭାଗ ଓ ବିଶେଷ ଭାବରେ ତଥାକଥିତ ସତ୍ୟବାଦୀ ଯୁଗ ଉପରେ କିଞ୍ଚିତ ଆଲୋକପାତ କରାଯାଉ । ଓଡ଼ିଆ ସାହିତ୍ୟରେ ସାଧାରଣ ଭାବରେ ଦୁଇଟି ମହାଯୁଗର ପରିକଳ୍ପନା କରାଯାଇପାରେ: (୧) ପ୍ରାଚୀନ ଓ ମଧ୍ୟକାଳୀନ ମହାଯୁଗ ଓ (୨) ଆଧୁନିକ ମହାଯୁଗ । ଏଠାରେ ଏତିକି ସୂଚାଇଦେବା ଆବଶ୍ୟକ, ଇତିହାସର ଅନୁଶୀଳନ କ୍ଷେତ୍ରରେ ପ୍ରାଚୀନ (ancient), ମଧ୍ୟକାଳୀନ (medieval) ଓ ଆଧୁନିକ (modern) ଯୁଗ ପରିକଳ୍ପନା ତଥା ପରିଭାଷା ଆମର ଏତେ ପରିଚିତ ହୋଇପଡିଛି ଯେ ବର୍ତ୍ତମାନର ଆଲୋଚନା ପ୍ରସଙ୍ଗରେ ହଠାତ୍ ତାହାକୁ ବାଦ୍ ଦେବା ସହଜ ବା ଏପରି କି ସମ୍ଭବ ବି ନୁହେଁ । ତେଣୁ ପରମ୍ପରାର ଅନୁସରଣରେ ଏଠାରେ (୧) ପ୍ରାଚୀନ ଓ ମଧ୍ୟକାଳୀନ (୨) ଆଧୁନିକ ମହାଯୁଗର ପରିକଳ୍ପନା ଓ ନାମକରଣ କରାଯାଇଛି । କାରଣ ଭାରତର ଇତିହାସକୁ ବି ପାଶ୍ଚାତ୍ୟ ଇତିହାସର ଛାଞ୍ଚରେ ପ୍ରାଚୀନ, ମଧ୍ୟକାଳୀନ ଓ ଆଧୁନିକ ଯୁଗତ୍ରୟ ମଧ୍ୟରେ ବିଭାଗୀକରଣ କରାଯାଇଛି । ତାହା କେତେଦୂର ଯଥାର୍ଥ ସେ କଥା ବର୍ତ୍ତମାନ ପ୍ରବନ୍ଧର ପରିସୀମାର ବାହାରେ । ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଏପରି ବିଭାଗୀକରଣ କେତେକ ଅତି ଜଟିଳ ସମସ୍ୟା ସୃଷ୍ଟି କରିଛି । ପୁଣି ଭାରତୀୟ ଇତିହାସର ଏପରି ବିଭାଗୀକରଣ କରାଗଲାବେଳେ ଯୁଗ ଯୁଗ ମଧ୍ୟରେ ଯେଉଁ ସମୟଗତ ସୀମାରେଖା ଟଣାଯାଇଛି ଭାରତର ବହୁ ଆଞ୍ଚଳିକ ଇତିହାସ ରଚନା କଲାବେଳେ ସେଇ ସେଇ ସୀମାରେଖା ଠିକ୍ ସେମିତି ଭାବରେ ଟଣାଯାଇ ପାରୁନାହିଁ । ତେଣୁ ଯୁଗର ଧର୍ମ ବା ଲକ୍ଷଣ (characteristics) ଭିତ୍ତିରେ ବା ଅନୁଯାୟୀ ଭାରତୀୟ ଇତିହାସପାଇଁ ମଧ୍ୟଯୁଗ ବା ମଧ୍ୟକାଳ ଯେବେ ଆରମ୍ଭ ହୋଇଥିବାର ଜଣାଯାଇଛି, ଓଡିଶାର ଇତିହାସ ରଚନା କ୍ଷେତ୍ରରେ ମଧ୍ୟଯୁଗ ବା ମଧ୍ୟକାଳ ଠିକ୍ ସେଇ ସମୟରେ ଆରମ୍ଭ ହୋଇନାହିଁ । ପୁଣି ଓଡ଼ିଶା ଇତିହାସର ମଧ୍ୟକାଳ ଓ ଓଡ଼ିଆ ସାହିତ୍ୟର ମଧ୍ୟକାଳର

ସୀମାରେଖା ବି ଶତାଂଶରେ ଏକା ନୁହେଁ । ଏଇ ପରିପ୍ରେକ୍ଷୀରେ ହିଁ ଓଡ଼ିଆ ସାହିତ୍ୟର ଉପରୋକ୍ତ ପ୍ରାଚୀନ ଓ ମଧ୍ୟକାଳୀନ ପରିଭାଷାକୁ ମିଶାଇ ଗୋଟିଏ ମହାଯୁଗର ପରିକଳ୍ପନା କରାଯାଇଛି । ଏହି ମହାଯୁଗ ମଧ୍ୟରେ ବହୁଯୁଗ ଓ ଏପରିକି ଉପ-ଯୁଗର ମଧ୍ୟ ପରିକଳ୍ପନା କରାଯାଇପାରେ । ଏହି ମହାଯୁଗର ଅବସାନ ୧୮୬୮ ବା ୧୮୭୦ ଖ୍ରୀଷ୍ଟାବ୍ଦରେ ହେଲା ଓ ୧୮୭୦ରୁ ଆଧୁନିକ ମହାଯୁଗର ଆରମ୍ଭ ହେଲା ବୋଲି ପ୍ରକାରାନ୍ତରରେ ଧରି ବି ନିଆଯାଇଛି ଓ ଏଠାରେ ମଧ୍ୟ ଧରି ନିଆଯାଇପାରେ । ପୁଣି ଏହି ଆଧୁନିକ ମହାଯୁଗ ମଧ୍ୟରେ ବିଭିନ୍ନ ଯୁଗ ଓ ଏପରିକି ଉପ-ଯୁଗର ପରିକଳ୍ପନା କରାଯାଇ ପାରେ । ବର୍ତ୍ତମାନ ପ୍ରଶ୍ନ ହେଉଛି ଏହି ଆଧୁନିକ ମହାଯୁଗ ମଧ୍ୟରେ ସତ୍ୟବାଦୀ ଶିରୋନାମାଯୁକ୍ତ ଏକ ଯୁଗର ବା ଏପରିକି ହୁଏତ ଉପଯୁଗର ପରିକଳ୍ପନା କରାଯାଇ ପାରେ କି ?

କେତେକ ସମାଲୋଚକ ଅବଶ୍ୟ ସତ୍ୟବାଦୀ ବିଦ୍ୟାଳୟର ପ୍ରତିଷ୍ଠାକାଳ ୧୯୦୯ରୁ ଆରମ୍ଭ କରି ୧୯୨୦ ମଧ୍ୟରେ ଓଡ଼ିଆ ସାହିତ୍ୟରେ ସତ୍ୟବାଦୀଯୁଗର ପରିକଳ୍ପନା କରିଛନ୍ତି । କିନ୍ତୁ ଏଇ ସମୟସୀମା ମଧ୍ୟରେ ରଚିତ ଓଡ଼ିଆ ସାହିତ୍ୟକୁ ଏକ ଯୁଗ ଆଖ୍ୟା ଦେବା ଓ ତାହାକୁ ପୁଣି ସତ୍ୟବାଦୀ ଯୁଗ ବୋଲି ଅଭିହିତ କରିବା କେତେଦୂର ଯଥାର୍ଥ ?

ବିଷୟଟିକୁ ଦୁଇଟି ଦିଗରୁ ବିଚାର କରାଯାଇ ପାରେ । ପ୍ରଥମତଃ ଏହି ସମୟର ଓଡ଼ିଆ ସାହିତ୍ୟର ପୂର୍ଣ୍ଣାଙ୍ଗ ଅନୁଶୀଳନ କରି ସେଥିରେ ଫୁଟି ଉଠିଥିବା ଭାବଧର୍ମ ଓ ଶିଳ୍ପକର୍ମଗତ ବୈଶିଷ୍ଟ୍ୟର ଅନୁସନ୍ଧାନ ଓ ଆବିଷ୍କାର ତଥା ତାର ମୂଳଉତ୍ସ ନିରୂପଣ ମାଧ୍ୟମରେ ଏ ପ୍ରଶ୍ନର ଉତ୍ତର ଦିଆଯାଇପାରେ । କିମ୍ବା ଦ୍ୱିତୀୟତଃ ସତ୍ୟବାଦୀ ସାହିତ୍ୟ-ସାଧକ ଗୋଷ୍ଠୀଙ୍କ ସାହିତ୍ୟର ମୁଖ୍ୟ ଭାବଧର୍ମ ଓ ଶିଳ୍ପକର୍ମଗତ ବୈଶିଷ୍ଟ୍ୟ ଗୁଡ଼ିକୁ ବା ମୂଳ ପ୍ରବୃତ୍ତିଗୁଡ଼ିକୁ ପ୍ରଥମେ ଚିହ୍ନିତ କରି ତାହାର ସୃଷ୍ଟିଉତ୍ସ ଅନ୍ୱେଷଣ କରିବା ସହ ତାହା ଉକ୍ତ ସମୟ (ଅର୍ଥାତ୍ ୧୯୦୯ ରୁ ୧୯୨୦) ମଧ୍ୟରେ ଓଡ଼ିଆ ସାହିତ୍ୟକୁ ଆଚ୍ଛନ୍ନ କରି ରଖିଥିଲା କି ନାହିଁ ବା ବିଶେଷ ଭାବରେ ପ୍ରଭାବିତ କରିଥିଲା କି ନାହିଁ ତାହାର ଅନୁଶୀଳନ କରିବା ଭିତରେ ମଧ୍ୟ ଏ ପ୍ରଶ୍ନର ଉତ୍ତର ଖୋଜାଯାଇପାରେ । ନିମ୍ନରେ ଏଇ ଦ୍ୱିତୀୟ ଦୃଷ୍ଟିକୋଣରୁ ଏ ବିଷୟରେ ବିଚାର କରାଯାଉଛି ।

ସତ୍ୟବାଦୀ ସାହିତ୍ୟ-ସାଧକ ଗୋଷ୍ଠୀଙ୍କ ସାହିତ୍ୟର ଅନୁଶୀଳନ କଲେ, ସେଥିରେ ଭାବଧର୍ମଗତ ନିମ୍ନ ମୂଳ ପ୍ରବୃତ୍ତିଗୁଡ଼ିକ ବା ଅନ୍ତଃସ୍ୱର ଆବିଷ୍କାର କରାଯାଇ ପାରେ ।

୧- ଉତ୍କଳ ଜାତୀୟତାବାଦ,

୨- ସମାଜସଂସ୍କାର,

୩- ମାନବତାବାଦ ବା ମାନବ ପ୍ରେମ (Humanitarianism)

ପ୍ରଥମେ ଉତ୍କଳୀୟ ଜାତୀୟତାର କଥା ଦେଖାଯାଉ । ଟିକିଏ ବେଖାପିଆ ମନେହେଲେ ହେଁ ସାହିତ୍ୟରେ ଉତ୍କଳୀୟ ଜାତୀୟତାବାଦର ପ୍ରତିଫଳନ ପ୍ରଥମଥରପାଇଁ ଦେଖିବାକୁ ମିଳେ, ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟଙ୍କ ବଙ୍ଗଭାଷାରେ ରଚିତ 'କାଞ୍ଚିକାବେରୀ' କାବ୍ୟରେ, ହୁଏତ ବା ରଙ୍ଗଲାଲଙ୍କ ଅଜ୍ଞାତସାରରେ, ୧୮୭୯ ବା ୧୮୮୦ରେ । ଉତ୍କଳର ଭୂଗୋଳ ଓ ଇତିହାସକୁ ବା ବର୍ତ୍ତମାନ ଓ ଅତୀତକୁ ଶ୍ରଦ୍ଧାର ଚକ୍ଷୁରେ ଦେଖିବାରେ ଓ ତାହାକୁ ଭବିଷ୍ୟତର ପ୍ରେରଣାର ଉତ୍ସ ବୋଲି ଗ୍ରହଣ କରିବାରେ ବା ସୂଚନା ଦେବାରେ ରଙ୍ଗଲାଲ ହିଁ ଅଗ୍ରଗାମୀ ଥିଲେ । ଏହା ଅବିଶ୍ୱାସ୍ୟ ହେଲେହେଁ ସତ୍ୟ । ଏହା ପରେ ରାଧାନାଥଙ୍କ ଲେଖନୀରେ ଏହାର ପୁଷ୍କଳ ବିକାଶ ସାଧିତ ହୁଏ । ଏ କ୍ଷେତ୍ରରେ 'କାଞ୍ଚିକାବେରୀ' ନାଟକର ରଚୟିତା ରାମଶଙ୍କରଙ୍କ କିଛି ପରୋକ୍ଷ ଅବଦାନକୁ ମଧ୍ୟ ସ୍ୱୀକୃତି ଦିଆଯାଇପାରେ । ଅନ୍ୟ କଥାରେ ଓଡ଼ିଆ ସାହିତ୍ୟରେ ବିଶେଷ ଭାବରେ କାବ୍ୟ କବିତା କ୍ଷେତ୍ରରେ ଉତ୍କଳୀୟ ଜାତୀୟତାବାଦର ପ୍ରତିଫଳନ ଆଦୌ ସତ୍ୟବାଦୀ ସାହିତ୍ୟର ଅବଦାନ ନୁହେଁ । ଦାବି ଅବଶ୍ୟ କରାଯାଇପାରେ ଯେ ସତ୍ୟବାଦୀ ସାହିତ୍ୟରେ ପ୍ରତିଫଳିତ ଏହି ଉତ୍କଳୀୟ ଜାତୀୟତାବାଦର ସ୍ୱରୂପ ତା ପୂର୍ବବର୍ତ୍ତୀ ସାହିତ୍ୟରେ ପ୍ରତିଫଳିତ ଉତ୍କଳୀୟ ଜାତୀୟତାବାଦଠାରୁ ଅନେକ ଭାବରେ ସ୍ୱତନ୍ତ୍ର ଥିଲା । ଏପରି ଦାବି ସତ୍ୟବାଦୀ ସାହିତ୍ୟଗୋଷ୍ଠୀର ଅନ୍ୟତମ ନୀଳକଣ୍ଠ ହି ପ୍ରକାରାନ୍ତରରେ କରିଯାଇଛନ୍ତି, ରାଧାନାଥ ସାହିତ୍ୟରେ ପ୍ରତିଫଳିତ ଉତ୍କଳର ଅତୀତକୁ ପ୍ରକୃତପକ୍ଷେ ଉତ୍କଳର ଅତୀତ ବୋଲି ସ୍ୱୀକାର କରିବାପାଇଁ କୁଣ୍ଠିତ ହୋଇପଡ଼ି ବା ବିଦେଶାଗତ ବୋଲି କହି । କିନ୍ତୁ ଏ ସ୍ୱାତନ୍ତ୍ର୍ୟ ଯେତେ ଗୁରୁତ୍ୱପୂର୍ଣ୍ଣ ବୋଲି ଆପାତତଃ ମନେହେଉଥିଲେ ହେଁ ତା ପ୍ରକୃତପକ୍ଷେ ଠିକ୍ ସେତିକି ଗୁରୁତ୍ୱପୂର୍ଣ୍ଣ ନୁହେଁ । ଏହା ଏଥି ପୂର୍ବବର୍ତ୍ତୀ ସାହିତ୍ୟରେ ପ୍ରତିଫଳିତ ଉତ୍କଳୀୟ ଜାତୀୟତାବାଦର ଖୁବ୍ ଅଧିକରେ ଏକ ପରିମାର୍ଜିତ ରୂପମାତ୍ର ବା ମୋଟଉପରେ ସାହିତ୍ୟରେ ଉତ୍କଳୀୟ ଜାତୀୟତାବାଦର ପ୍ରତିଫଳନ ବିବର୍ତ୍ତନରେ ଏକ ସ୍ତର ମାତ୍ର । ଅନ୍ୟ କଥାରେ ପୂର୍ବରୁ ସାହିତ୍ୟରେ ପ୍ରତିଫଳିତ ଉତ୍କଳୀୟ ଜାତୀୟତାବାଦର ମୂଳସ୍ୱରକୁ ଅକ୍ଷୁଣ୍ଣ ରଖି କେବଳ ତାହାର ସ୍ୱରୂପର କିଛି ସଂସ୍କାର ସାଧନ ହିଁ କରିଥିଲେ ସତ୍ୟବାଦୀ ସାହିତ୍ୟସାଧକମାନେ, କିନ୍ତୁ ସେ କ୍ଷେତ୍ରରେ ଏକ ନୂତନ ଚିନ୍ତାଧାରା ସୃଷ୍ଟି କରି ନୁହେଁ କି, ପ୍ରକୃତ ଏକ ନୂତନ ଦୃଷ୍ଟିକୋଣ ଫୁଟାଇ ନୁହେଁ । ପୁଣି ତା ମଧ୍ୟ କେବଳ ସତ୍ୟବାଦୀ ସାହିତ୍ୟସାଧକମାନଙ୍କ ଅବଦାନ ନୁହେଁ, ଆହୁରି ଅନେକ ସେ କ୍ଷେତ୍ରରେ, ହୁଏତ ବା ଅଜ୍ଞାତସାରରେ, ସକ୍ରିୟ ଥିବାର ଜଣାଯାଏ । ଖୁବ୍ ଅଧିକରେ ସତ୍ୟବାଦୀ ସାଧକ ଗୋଷ୍ଠୀ ପୂର୍ବେ ସୃଷ୍ଟ ଭାବଧାରାର ସଂସ୍କୃତ, ବିକଶିତ ଓ ସଂପ୍ରସାରିତ ଅନୁବର୍ତ୍ତନ ହିଁ କରିଥିଲେ ।

ସେହିପରି ସତ୍ୟବାଦୀ ସାହିତ୍ୟସାଧକଗୋଷ୍ଠୀଙ୍କ ଆବିର୍ଭାବ ପୂର୍ବରୁ ସମାଜସଂସ୍କାରର ସ୍ୱର ଓଡ଼ିଶାରେ ତଥା ଓଡ଼ିଆ ସାହିତ୍ୟରେ ଶୁଣାଯାଇଥିଲା । ୧୮୮୯ରେ କରଣ ସମାଜରେ ସଂସ୍କାର ଆଣିବା ପାଇଁ ନନ୍ଦକିଶୋର ଦାସଙ୍କ ସ୍ଥାପିତ ଉତ୍କଳ ସମ୍ମିଳନୀ ସଭାଠାରୁ ଆରମ୍ଭ କରି 'କଳିକାଳ'(୧୮୮୩), 'ବୁଢାବର'(୧୮୯୬) 'ବିଷମୋଦକ'(୧୮୯୯) ଓ ଯୁଗଧର୍ମ (୧୯୦୧) ଆଦି ନାଟକର ରଚୟିତା ରାମଶଙ୍କର, ଫକୀର ମୋହନ, ଶ୍ରୀବତ୍ସ ପଣ୍ଡା, 'ବାଲ୍ୟବିବାହ' (୧୯୦୫), 'ବୃଦ୍ଧ ବିବାହ' (୧୯୦୫), 'ବ୍ୟଭିଚାରଦୋଷ ପ୍ରଦର୍ଶନ' (୧୯୦୬) ଆଦି ନାଟକ ଲେଖିଥିବା ବୀର ବିକ୍ରମ ଦେବ, ଭିକାରୀ ଚରଣ ପଟ୍ଟନାୟକ ଆଦି ଏ କ୍ଷେତ୍ରରେ ଅଗ୍ରଗାମୀତ୍ୱ ଗ୍ରହଣ କରିଥିଲେ । ଠିକ୍ ବ୍ରାହ୍ମଣ ସମାଜରେ ନିଶ ରଖିବା କଥାଟିକୁ କେନ୍ଦ୍ରକରି ନୀଳକଣ୍ଠଙ୍କ ପୂର୍ବରୁ ଆଉ କେହି ପ୍ରବନ୍ଧ ହୁଏତ ଲେଖି ନଥିଲେ । କିନ୍ତୁ ଏହା ବୃହତ୍ତର ସମାଜ ସଂସ୍କାରର ଛାଞ୍ଚ ମଧ୍ୟରେ ସାମାନ୍ୟ ଓଲମ ବିଲୋମ ମାତ୍ର । (ଆଉ ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ରାବାସରେ ବିଭିନ୍ନ ବର୍ଣ୍ଣର ବା ଜାତିର ଛାତ୍ରମାନେ ଏକ ପଙ୍‌କ୍ତିରେ ବସି ଭୋଜନ କରିବା ପ୍ରକୃତରେ ଏକ ଅଭିନବ ପଦକ୍ଷେପ ଥିଲା । କିନ୍ତୁ ତାହା ତ ସତ୍ୟବାଦୀ ସାହିତ୍ୟର ବିଷୟବସ୍ତୁ ନ ଥିଲା ।

ପୁଣି ସତ୍ୟବାଦୀ ସାହିତ୍ୟ ସାଧକଗୋଷ୍ଠୀଙ୍କ ଆବିର୍ଭାବ ପୂର୍ବରୁ ସାହିତ୍ୟରେ ଫକୀର ମୋହନ, ନନ୍ଦକିଶୋର ଓ ମଧୁସୂଦନ ଆଦି ମଧ୍ୟ ମାନବପ୍ରେମର ବାଣୀ ପ୍ରଚାର କରିଥିଲେ । ସତ୍ୟବାଦୀ ସାହିତ୍ୟର ଏ ମୂଳ ସ୍ୱରଟି ମଧ ସମ୍ପୂର୍ଣ୍ଣ ଭାବରେ ନୂଆ ନୁହେଁ । ତାହା ପୂର୍ବସୃଷ୍ଟ ଭାବଧାରାର ଅନୁବର୍ତ୍ତନ ବ୍ୟତୀତ ଆଉ କିଛି ହୋଇ ନ ପାରେ ।

ମୋଟ ଉପରେ ସତ୍ୟବାଦୀ ସାହିତ୍ୟସାଧକମାନଙ୍କ ସାହିତ୍ୟରେ ମୂଳ ଅନ୍ତଃସ୍ୱର ସେମାନଙ୍କ ଆବିର୍ଭାବ ପୂର୍ବରୁ ଶୁଣାଯାଇଥିଲା । ସତ୍ୟବାଦୀ ସାଧକଗୋଷ୍ଠୀ କେଉଁଠି କିପରି ତାର ସଂସ୍କାର ସାଧନ କରି, ସେ କ୍ଷେତ୍ରରେ ସାମାନ୍ୟ ପରିବର୍ଜନ, ପରିବର୍ତ୍ତନ ଓ ଏପରିକି ପରିବର୍ଦ୍ଧନ କରିଥିଲେ, ତାର ବିକାଶ ସାଧନ କରିଥିଲେ; ହୁଏତ ବା ସେ କ୍ଷେତ୍ରରେ କିଛି ପ୍ରବଣତା ମଧ ଦେଖାଇ ଥିଲେ । ଅନ୍ୟ କଥାରେ ସତ୍ୟବାଦୀ ସାଧକଗୋଷ୍ଠୀଙ୍କ ଯେଉଁ ଅବଦାନକୁ ଗୁରୁତ୍ୱପୂର୍ଣ୍ଣ ବୋଲି ଧରାଯାଇପାରେ, ତା ସମ୍ପୂର୍ଣ୍ଣ ଭାବରେ ତାଙ୍କର ନିଜସ୍ୱ ବା ମୌଳିକ ନଥିଲା ।

ପୁଣି ୧୯୦୯ରୁ ୧୯୨୦ ମଧ୍ୟରେ ରଚିତ ଓଡ଼ିଆ ସାହିତ୍ୟରେ କେବଳ ଏଇ ତିନୋଟି ମୁଖ୍ୟ ସ୍ୱର ଶୁଣାଯାଇ ନଥିଲା । ଅନ୍ୟ କଥାରେ ସତ୍ୟବାଦୀ ସାହିତ୍ୟ ସାଧକଗୋଷ୍ଠୀଙ୍କ ଚିନ୍ତାଧାରା ସେ ସମୟର ଓଡ଼ିଆ ସାହିତ୍ୟକୁ ସମ୍ପୂର୍ଣ୍ଣ କାହିଁକି ବିଶେଷ

ଭାବରେ ମଧ୍ୟ ଆଚ୍ଛାଦିତ କରି ରଖିପାରି ନଥିଲା । ସ୍ମରଣ କରାଯାଇପାରେ, ଫକୀରମୋହନଙ୍କ 'ମାମୁଁ' (୧୯୧୩), 'ପ୍ରାୟଶ୍ଚିତ୍ତ' (୧୯୧୫), 'ବୌଦ୍ଧାବତାର' (୧୯୦୯), 'ପ୍ରାର୍ଥନା' (୧୯୧୨), 'ଧୂଳି' (୧୯୧୨), ଗଙ୍ଗାଧରଙ୍କ 'ତପସ୍ୱିନୀ' (୧୯୧୪), 'ପ୍ରଣୟବଲ୍ଲରୀ' (୧୯୧୫), ନନ୍ଦକିଶୋରଙ୍କ 'କନକଲତା' (୧୯୧୫), ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ 'ଧୋ ରେ ବାୟା ଧୋ' (୧୯୧୦), ଚିନ୍ତାମଣି ମହାନ୍ତିଙ୍କ 'ସପ୍ତରଥୀ' (୧୯୧୦), 'ସାଳନ୍ଦୀ' (୧୯୧୨), 'ସପ୍ତସତୀ' (୧୯୧୨), 'କଳ୍ପଲତା' (୧୯୧୫), ରାମଶଙ୍କରଙ୍କ 'ଲୀଳାବତୀ' (୧୯୨୨), 'ରାମାଭିଷେକ' (୧୯୧୭), ଅଶ୍ୱିନୀ କୁମାରଙ୍କ 'ଭୀଷ୍ମ' (୧୯୧୭), 'ସାବିତ୍ରୀ' (୧୯୧୭), 'ସେଓଜୀ' (୧୯୧୯), ଭିକାରୀ ଚରଣଙ୍କର 'ସଂସାର ଚିତ୍ର' (୧୯୧୫), ରାଧାମୋହନ ରାଜେନ୍ଦ୍ର ଦେବଙ୍କ 'ପ୍ରକୃତି ରହସ୍ୟ' (୧୯୧୪), 'ଶ୍ରୀ ପ୍ରତାପ' (୧୯୧୫) 'ପ୍ରକୃତ ପ୍ରଣୟ' (୧୯୧୫), 'ପାଞ୍ଚାଳୀ ପଟ୍ଟାପହରଣ' (୧୯୧୬) ଆଦି ରଚିତ ହୋଇଥିଲା ଏହି ସମୟରେ । ଆଉ ସେ ସବୁରେ ସତ୍ୟବାଦୀ ସାହିତ୍ୟର ମୁଖ୍ୟ ସ୍ୱର ହୁଏତ ଆଦୌ ପ୍ରତିଧ୍ୱନିତ ହୋଇନାହିଁ ଅଥବା ପରୋକ୍ଷ ବା ମାତ୍ର ଅସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଇଛି । ତେଣୁ ସତ୍ୟବାଦୀ ସାହିତ୍ୟସାଧକଗୋଷ୍ଠୀ ଆଦରି ନେଇଥିବା ଚିନ୍ତାଧାରା ଏହି ସମୟର ଓଡ଼ିଆ ସାହିତ୍ୟକୁ ସମ୍ପୂର୍ଣ୍ଣ ଭାବରେ ଆଚ୍ଛନ୍ନ କରି ପାରି ନଥିଲା, ଏପରିକି କେବଳ ପ୍ରତିନିଧିମୂଳକ ଓଡ଼ିଆ କାବ୍ୟ କବିତା ଓ ନାଟକ ରଚନା କ୍ଷେତ୍ରରେ ବି ସତ୍ୟବାଦୀଗୋଷ୍ଠୀଙ୍କ ଅନୁସୃତ ଚିନ୍ତାଧାରା ମଧ ଏକମାତ୍ର ଚିନ୍ତାଧାରା ନଥିଲା । ତେଣୁ ଓଡ଼ିଆ ସାହିତ୍ୟର ୧୯୦୯ ରୁ ୧୯୨୦ ସମୟକୁ ଓଡ଼ିଆ ସାହିତ୍ୟରେ ବା ଆଧୁନିକ ମହାଯୁଗ ମଧ୍ୟରେ ସତ୍ୟବାଦୀ ଯୁଗବୋଲି ନାମିତ କରିବା ସ୍ପୃହଣୀୟ ହେବ ନାହିଁ ।

ସେ ସମ୍ପର୍କରେ ଆହୁରି ମଧ୍ୟ କହିରଖିବା ଉଚିତ ଯେ ଏହି ସମୟ (ଅର୍ଥାତ୍ ୧୯୦୯ରୁ ୧୯୨୦) ମଧ୍ୟରେ ଯେଉଁସବୁ ସାହିତ୍ୟ କୃତିରେ ସତ୍ୟବାଦୀ ସାହିତ୍ୟରେ ସ୍ଥାନ ପାଇଥିବା ମୂଳସ୍ୱର ଗୁଡ଼ିକର ପ୍ରତିଧ୍ୱନି ଶୁଣାଯାଏ ସେ ସବୁର ପଛରେ ଯେ କେବଳ ସତ୍ୟବାଦୀ ସାଧକମାନଙ୍କର ପ୍ରେରଣା ଓ ପ୍ରଚୋଦନା ରହିଛି ତା ବି ଜୋରଦେଇ କହି ହେବ ନାହିଁ, ପୁଣି ତାର କୌଣସି ପ୍ରମାଣ ବି ନାହିଁ । ବରଂ ସେ କ୍ଷେତ୍ରରେ ସତ୍ୟବାଦୀ ସାହିତ୍ୟର ପ୍ରେରଣାର ଉତ୍ସ ମଧ୍ୟ ଥିଲା ସେମାନଙ୍କର ପ୍ରେରଣାର ଉତ୍ସ । ସତ୍ୟବାଦୀ ସାହିତ୍ୟଗୋଷ୍ଠୀ ଯେଉଁ ସାହିତ୍ୟ କୃତି, ବ୍ୟକ୍ତି ଓ ଅନୁଷ୍ଠାନଦ୍ୱାରା ଅନୁପ୍ରେରିତ ହୋଇ ଏଇସବୁ ଚିନ୍ତାଧାରା ଓ ଦୃଷ୍ଟିକୋଣକୁ ଗ୍ରହଣ କରିଥିଲେ, ବୋଧହୁଏ ସେଇସବୁ ସାହିତ୍ୟ

କୃତି, ବ୍ୟକ୍ତି ଓ ଅନୁଷ୍ଠାନ ମଧ୍ୟ ସତ୍ୟବାଦୀ ସାଧକଗୋଷ୍ଠୀଙ୍କ ସମସାମୟିକ ଅନ୍ୟାନ୍ୟ ବହୁ ସାହିତ୍ୟିକମାନଙ୍କୁ ସମ ପରିମାଣରେ ଅନୁପ୍ରେରିତ ଓ ଉଦ୍‌ବୋଧିତ କରିଥିଲା । ଏପରି ସନ୍ଦେହ ଓ ସିଦ୍ଧାନ୍ତ କରିବାର କାରଣ ସତ୍ୟବାଦୀଗୋଷ୍ଠୀଙ୍କ ସାହିତ୍ୟକୃତିରେ ଫୁଟିଉଠିଥିବା ଚିନ୍ତାଧାରା, ଦୃଷ୍ଟିକୋଣ ଓ ମୂଳ ପ୍ରବୃତ୍ତି ସଂମ୍ପୂର୍ଣ୍ଣ ଭାବରେ ସେମାନଙ୍କର ନିଜସ୍ୱ ବା ମୌଳିକ ନଥିଲା ।

ଶିଳ୍ପକର୍ମ ବା ଶୈଳୀ ବା ଆଙ୍ଗିକ କ୍ଷେତ୍ରରେ ମଧ୍ୟ ଅନୁରୂପ ଉକ୍ତି ମୋଟାମୋଟି ପ୍ରଯୁଜ୍ୟ । ଭାଷାର ବ୍ୟବହାରରେ, ଛନ୍ଦର ପ୍ରୟୋଗରେ, ଉପଧା ମିଳନରେ ଏପରିକି ବାଲାଡ୍‌ ବା ଗାଥା କବିତା ଉପରେ ଗୁରୁତ୍ୱ ଦେବାରେ ସତ୍ୟବାଦୀର ସାହିତ୍ୟସାଧକମାନେ ଏଇ ୧୯୦୯ରୁ ୧୯୨୦ ମଧ୍ୟରେ ହୁଏତ କିଛି ପରୀକ୍ଷା କରିଛନ୍ତି, କିଛି ନୂଆ ଦୃଷ୍ଟିକୋଣର ସୂଚନା ଦେଇଛନ୍ତି । କିନ୍ତୁ ତା ସେପରି କିଛି ଗୁରୁତ୍ୱପୂର୍ଣ୍ଣ ନୁହେଁ ବା ସେ ସବୁ ଶୈଳୀ ବା ଆଙ୍ଗିକ ସେଇ ସମୟ ମଧ୍ୟରେ ସେପରି ପ୍ରଭାବଶାଳୀ ହୋଇ ନ ଥିଲା

ଏଇ ସବୁ କାରଣରୁ ଓଡିଆ ସାହିତ୍ୟରେ ୧୯୦୯ରୁ ୧୯୨୦ ପର୍ଯ୍ୟନ୍ତ ସମୟକୁ ସତ୍ୟବାଦୀ ଯୁଗ ବୋଲି ଅଭିହିତ କରିବାପାଇଁ କୁଣ୍ଠା ଲାଗେ । ଏ ମନ୍ତବ୍ୟ ଅନେକଙ୍କୁ ଅଡୁଆ ଲାଗିପାରେ । କାରଣ ପ୍ରତିଷ୍ଠିତ ବିଚାରଧାରା ଓ ବିଶ୍ୱାସରେ ଆଘାତ ଲାଗିଲେ ବହୁ ଲୋକଙ୍କୁ ଅଡୁଆ ଲାଗେ । ଆଉ ଗତ କେତେବର୍ଷ ମଧ୍ୟରେ ଓଡ଼ିଆ ସାହିତ୍ୟଚର୍ଚ୍ଚା କ୍ଷେତ୍ରରେ ସତ୍ୟବାଦୀ ଯୁଗ ଧାରଣାଟି କେବଳ ସୁପରିଚିତ ନୁହେଁ, ବଦ୍ଧମୂଳ ଓ ପ୍ରତିଷ୍ଠିତ ହୋଇଯାଇଛି । ସତ୍ୟବାଦୀର ସାଧକଗୋଷ୍ଠୀ କେବଳ ଓଡ଼ିଆ ସାହିତ୍ୟ ନୁହେଁ, ଓଡ଼ିଶାର ଜାତୀୟ ଜୀବନର ଅନ୍ୟାନ୍ୟ ବହୁବିଧ କ୍ଷେତ୍ରରେ ଏତେ ଓ ଏପରି ସ୍ମରଣୀୟ ଓ ବନ୍ଦନୀୟ ଭୂମିକା ଗ୍ରହଣ କରିଥିଲେ ଯେ ଯାହାର ପ୍ରଭାବ ଏବେ ବି ସମ୍ପୂର୍ଣ୍ଣ ରୂପେ ତିରୋହିତ ହୋଇନାହିଁ । ତେଣୁ ସେମାନଙ୍କ ଭୂମିକାର ବିଚାର କ୍ଷେତ୍ରରେ ଭାବପ୍ରବଣତାରୁ ମୁକ୍ତ ହେବା ଅତୀବ କଷ୍ଟକର । ଏବେ ବି ସେମାନଙ୍କର ବହୁ ଅନୁରକ୍ତ ଛାତ୍ର ଓ ସେମାନଙ୍କ ନେତୃତ୍ୱାଧୀନରେ କାମ କରିଥିବା ବହୁ କର୍ମୀ ଏବର ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ନିଜର ଦୀପ୍ତି ବିସ୍ତାର କରି ଚାଲିଛନ୍ତି । ସତ୍ୟବାଦୀର ସାଧକମାନଙ୍କ ଅତି ନିକଟ ସଂସ୍ପର୍ଶରେ ଆସିଥିବା ଏଇ ଉତ୍ତରପୁରୁଷମାନେ ସେମାନଙ୍କ ପ୍ରତି ନିଜ ନିଜର ଶ୍ରଦ୍ଧା ଓ ସମ୍ମାନ ବଶତଃ ସେମାନଙ୍କୁ ଆଜି କିମ୍ବଦନ୍ତୀ ଓ ଜନଶ୍ରୁତିର ନାୟକରେ ପରିଣତ କରିଦେଇଛନ୍ତି । ତେଣୁ ଭାବପ୍ରବଣତାରୁ ମୁକ୍ତ ହୋଇ ସେମାନଙ୍କୁ ଜଣେ ଜଣେ ସାଧାରଣ ମଣିଷ ରୂପରେ ଦେଖି ସେମାନଙ୍କ ଅବଦାନ ଓ କୃତିତ୍ୱର ବସ୍ତୁନିଷ୍ଠ କଳନା ଆଜି ଅତ୍ୟନ୍ତ କଷ୍ଟକର ହୋଇ ପଡ଼ିଛି ।

ଯୁଗଟିଏ ଅବଶ୍ୟ ହୁଏ ୧ ୨ ବର୍ଷରେ । ତେଣୁ ଏ ପ୍ରଶ୍ନଟି ଏଠାରେ ଅତ୍ୟନ୍ତ ପ୍ରାସଙ୍ଗିକ ଯେ କେବଳ ସେଇଥିପାଇଁ ସତ୍ୟବାଦୀର ସାହିତ୍ୟ ସାଧକମାନଙ୍କ କୃତିତ୍ୱ ଓ ଅବଦାନକୁ ସ୍ୱୀକୃତି ଦେବା ସକାଶେ, ସେମାନଙ୍କ ପ୍ରତିଭା ଓ ସୃଷ୍ଟି ଧର୍ମକୁ ସମ୍ମାନ ଦେବା ସକାଶେ ନିତାନ୍ତ ପକ୍ଷେ ୧ ୨ ବର୍ଷିଆ, ଅର୍ଥାତ୍ ମାତ୍ର ୧ ୨ ବର୍ଷ ବ୍ୟାପୀ ଗୋଟିଏ ଯୁଗର ପରିକଳ୍ପନା କଣ ଅତ୍ୟନ୍ତ ଆବଶ୍ୟକ ? ସେମାନଙ୍କୁ ଯୁଗସ୍ରଷ୍ଟା ବୋଲି ଅଭିହିତ କରିବା କଣ ଅତ୍ୟନ୍ତ ଆବଶ୍ୟକ ? ତା ନ ହେଲେ କଣ ସେମାନଙ୍କ ଅବଦାନ ଓ କୃତିତ୍ୱକୁ, ସେମାନଙ୍କ ସୃଷ୍ଟିଧର୍ମକୁ ଶ୍ରଦ୍ଧା ଓ ସମ୍ମାନ ଦିଆଯାଇ ପାରିବ ନାହିଁ ? ସ୍ୱୀକୃତି ଦିଆଯାଇ ପାରିବ ନାହିଁ ? ଏ ପ୍ରବୃତ୍ତିକୁ ମର୍ମର ମୂର୍ତ୍ତି ଗଠନ ସହ ତୁଳନା କରାଯାଇପାରେ । ମର୍ମର ମୂର୍ତ୍ତିଟିଏ ଗଠନ କରି ବ୍ୟକ୍ତିକୁ ସମ୍ମାନ ଓ ଶ୍ରଦ୍ଧା ଜଣାଇବା ପରି, ଯୁଗଟିଏ ଏପରିକି କୃତ୍ରିମ ଭାବରେ ଗଠନ କରିବା କଣ ନିତାନ୍ତ ଆବଶ୍ୟକ ?

୧ ୯ ୨ ୦ ପରେ ଧାରାବାହିକ ଭାବେ ନ ହେଲେ ମଧ୍ୟ ଆହୁରି ବହୁବର୍ଷ ଧରି ସତ୍ୟବାଦୀ ସାହିତ୍ୟ ସାଧକ ଗୋଷ୍ଠୀ ସାହିତ୍ୟ ସାଧନା କରି ଚାଲିଥିଲେ, ସାହିତ୍ୟର ବହୁ କ୍ଷେତ୍ରରେ ନୂତନ ନୂତନ ଦୃଷ୍ଟିକୋଣର ସନ୍ଧାନ ଦେଇଥିଲେ, ନୂତନ ଦିଗ୍‌ଦର୍ଶନର ସୂଚନା କରିଥିଲେ, ବହୁ ସମସାମୟିକ - ଯଦିଓ ହୁଏତ ଅଧିକାଂଶଙ୍କୁ ନୁହେଁ - ସାହିତ୍ୟିକମାନଙ୍କୁ ବିଭିନ୍ନ ସମୟରେ ଅନୁପ୍ରେରିତ କରିଥିଲେ, ପ୍ରଭାବିତ ବି କରିଥିଲେ । ('ଓଡ଼ିଆ ସାହିତ୍ୟର କ୍ରମପରିଣାମ'କୁ ବାଦ ଦେଇ କ'ଣ ପଣ୍ଡିତ ନୀଳକଣ୍ଠଙ୍କ ପ୍ରତିଭାର କଳନା ଯଥାର୍ଥ ହେବ ? ନା ସମ୍ଭବ ହେବ ?) ସାମଗ୍ରିକ ଭାବରେ ସେମାନେ ସ୍ୱକୀୟ ସାହିତ୍ୟିକ ମହିମାରେ ମହିମାନ୍ୱିତ ଓ ଦୀପ୍ତିବନ୍ତ । ପୁଣି ଯୁଗସ୍ରଷ୍ଟା ନ ହୋଇ କଣ ଜଣେ ବଡ଼ ସାହିତ୍ୟିକ ହୋଇପାରିବେ ନାହିଁ ? ତା କଣ ସମ୍ଭବ ନୁହେଁ ? ଯୁଗସ୍ରଷ୍ଟା ବୋଲି ଅଭିହିତ ନ ହେଲେ ସାହିତ୍ୟସ୍ରଷ୍ଟାର କୃତିତ୍ୱ ଓ ଅବଦାନ କଣ ମଳିନ ପଡ଼ିଯିବ ? କାଳିଦାସ, ଭବଭୂତି ଓ ସେକସ୍‌ପିଅର ସାହିତ୍ୟିକ ଯୁଗଟିଏ ସୃଷ୍ଟି କରିପାରିଥିଲେ କି ନାହିଁ ମତେ ଜଣା ନାହିଁ । କିନ୍ତୁ ତା ତ ସେମାନଙ୍କ ପ୍ରତିଭାର ଆକଳନରେ ସମ୍ପୂର୍ଣ୍ଣ ଭାବରେ ଅବାନ୍ତର ମାତ୍ର । ସେହିପରି ସତ୍ୟବାଦୀର ସାହିତ୍ୟିକମାନଙ୍କ ସାହିତ୍ୟସାଧନା, କୃତିତ୍ୱ ଓ ଅବଦାନର ବିଚାରରେ ଆଜି ଏ ପ୍ରଶ୍ନ ସମ୍ପୂର୍ଣ୍ଣ ଭାବରେ ଅପ୍ରାସଙ୍ଗିକ ଓ ଅବାନ୍ତର ବୋଲି ବିବେଚିତ ହେଉ ।

ପୁଣି ଅନ୍ୟଦିଗରୁ ଦେଖିଲେ ଜଣେ ଯୁଗସ୍ରଷ୍ଟା ଯୁଗସୃଷ୍ଟି କରିବା ସଙ୍ଗେ ସଙ୍ଗେ ଦଳେ ଅନୁଗାମୀ ଓ ଏପରି କି ରୋମନ୍ଥନକାରୀ ମାତ୍ର ସୃଷ୍ଟିକରି ସାହିତ୍ୟ କ୍ଷେତ୍ରରେ କିଛି କାଳପାଇଁ ଗୋଟିଏ ଶୂନ୍ୟତା ହିଁ ସୃଷ୍ଟିକରେ । କାରଣ ତାର ଅନୁଗାମୀମାନେ ତାର ଅନୁଗମନ

କରିବା ଭିତରେ କେବଳ ଚର୍ବିତଚର୍ବଣ ହିଁ କରୁଥାନ୍ତି, କରୁଥାନ୍ତି ସେଇ ପୁରୁଣା ଧାରାର ରୋମନ୍ଥନ । ନୂଆ ଚାଲେଞ୍ଜ୍, ନୂଆ ଆହ୍ୱାନ ସେମାନଙ୍କୁ ନୂତନ ସୃଷ୍ଟିର ଦିଗ୍‌ଦର୍ଶନ ଦିଏ ନାହିଁ, ନୂତନ ସମ୍ଭାବନାରେ ଦୀକ୍ଷିତ କରେନାହିଁ । ଆନନ୍ଦର ଓ ଆହ୍ଲାଦର ବିଷୟ ହେଉଛି, ସତ୍ୟବାଦୀର ସାହିତ୍ୟସାଧକମାନେ ସେପରି ଶୂନ୍ୟତାଟିଏ ସୃଷ୍ଟି ନ କରି କେବଳ ନୂଆ ଆହ୍ୱାନ, ନୂଆ ଚାଲେଞ୍ଜ୍ ଓ ନୂଆ ସମ୍ଭାବନାର ସୂଚନା ଦେଇ ଯାଇଛନ୍ତି ।

ମୋଟଉପରେ ମୋ ବିଚାରରେ ଓଡ଼ିଆ ସାହିତ୍ୟର ଇତିହାସ ରଚନା କ୍ଷେତ୍ରରେ ବାର( ୧ ୨ )ବର୍ଷିଆ ସତ୍ୟବାଦୀ ଯୁଗର ପରିକଳ୍ପନା ଗୋଟିଏ ଭ୍ରମଧାରଣା ସୃଷ୍ଟି କରିବ ଓ ଆଦୌ ସ୍ପୃହଣୀୟ ହେବ ନାହିଁ । କେବଳ ସେତିକି ନୁହେଁ ତା'ଦ୍ୱାରା ସତ୍ୟବାଦୀର ସାହିତ୍ୟ ସାଧକମାନଙ୍କପ୍ରତି ଅବିଚାର ମଧ୍ୟ କରାଯିବ । କାରଣ ଏ ଶତକର ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରଥମ ଦଶକରୁ ଆରମ୍ଭ କରି କିଞ୍ଚିତ ଅଧିକ ଅର୍ଦ୍ଧଶତାବ୍ଦୀ କାଳ ଧରି ବିଭିନ୍ନ ଯୁଗ, ଉପ-ଯୁଗର ସମ୍ପୂର୍ଣ୍ଣ କୃତ୍ରିମ ଓ ଅବୈଜ୍ଞାନିକ ସୀମାରେଖାକୁ ଭେଦ କରି କେତେବେଳେ ବା ଭାବର ବନ୍ୟାରେ ଦୁଇକୂଳ ପରିପ୍ଲାବିତ କରି ସକ୍ରିୟ ଭାବରେ, କେତେବେଳେ ବା ପରିସ୍ଥିତିର ଗିରିସଙ୍କଟ ମଧ୍ୟରେ ବା ବିସ୍ତୀର୍ଣ୍ଣ ସିକତା-ଶଯ୍ୟାରେ କ୍ଷୀଣକାୟା ସ୍ରୋତସ୍ୱିନୀପରି ସ୍ତିମିତ ଭାବରେ, ବିଭିନ୍ନ ପ୍ରକାଶ ଭଙ୍ଗୀ ଓ ସାହିତ୍ୟିକ କାର୍ଯ୍ୟକଳାପର ବିଚିତ୍ର ବର୍ଣ୍ଣବିଭାରେ ବିଭାସିତ ହୋଇ କେତେବେଳେ ବା ନିର୍ଝରିଣୀର କୁଳୁକୁଳୁ ତାନରେ, କେତେବେଳେ ବା ଜଳପ୍ରପାତର ଗୁରୁଗମ୍ଭୀର ମନ୍ଦ୍ରନିନାଦରେ ଲୋକଚିତ୍ତକୁ ମୁଗ୍ଧ କରି, ଅନୁପ୍ରେରିତ ଓ ପ୍ରଚୋଦିତ କରି, ଉଦ୍ଭାସିତ ଓ ଉଦ୍‌ବୋଧିତ କରି, ପୁଣି ବିକ୍ଷୁବ୍‌ଧ ଓ ଆଲୋଡ଼ିତ କରି, ଏପରିକି ତୀବ୍ର ପ୍ରତିକ୍ରିୟା, ପ୍ରତିବାଦର ଘୂର୍ଣ୍ଣାୟମାନ ଭୟଙ୍କର ଆବର୍ତ୍ତ ମଧ୍ୟ ସୃଷ୍ଟିକରି ସ୍ୱକୀୟ ମହିମାରେ ସତ୍ୟବାଦୀ ଚିନ୍ତାସ୍ରୋତ ପ୍ରବହମାନ । ଆଜି ତାକୁ ମାତ୍ର ଏକ ବାରବର୍ଷିଆ ଯୁଗର ସଂକୀର୍ଣ୍ଣ ଓ କୃତ୍ରିମ ବନ୍ଧନୀ ମଧ୍ୟରେ ବାନ୍ଧିରଖି – ଏକ କ୍ଷୁଦ୍ର ପଲ୍ୱଳ ମଧ୍ୟରେ ଆବଦ୍ଧ କରି - ତାର ମହିମା କ୍ଷୁଣ୍ଣ କରିବାର ଏ (ଅପ)ପ୍ରୟାସ କାହିଁକି ?

[ଏହା ପ୍ରଥମେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗଦ୍ୱାରା ଆୟୋଜିତ ଏକ ପାଠଚକ୍ରରେ ଉପସ୍ଥାପିତ ହୋଇ ୧୯୮୭ରେ କୃଷ୍ଣଚରଣ ସାହୁ ଓ ନିତ୍ୟାନନ୍ଦ ଶତପଥୀଙ୍କଦ୍ୱାରା ସମ୍ପାଦିତ 'ସତ୍ୟବାଦୀ ସାହିତ୍ୟ ଯୁଗ' ନାମକ ପୁସ୍ତକରେ 'ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଯୁଗ ପରିକଳ୍ପନାର ଯାଥାର୍ଥ୍ୟ' ଶିରୋନାମା ତଳେ ପ୍ରକାଶ ପାଇଥିଲା ।]



# ।। ଶତାବ୍ଦୀର ସୂର୍ଯ୍ୟ : ଏକ ଦୃଷ୍ଟିପାତ ।।

## ପ୍ରାକ୍-ସୂଚନା

ସୁରେନ୍ଦ୍ର ମହାନ୍ତିଙ୍କ 'ଶତାବ୍ଦୀର ସୂର୍ଯ୍ୟ'ର ଲିଖନ କାଳ ଜାନୁଆରୀ ୧୯୬୮ରୁ ମାର୍ଚ୍ଚ ୧୯୭୦ । ଏହା ପ୍ରଥମେ ୧୯୭୦ରେ ପ୍ରକାଶିତ ହୋଇଥିଲା । ପ୍ରଥମ ସଂସ୍କରଣର ଭୂମିକା ଲେଖାଯାଇ ଥିଲା ୧୯୭୦ର ଅଗଷ୍ଟ ୯ ତାରିଖରେ । ଏହାର ଦ୍ୱିତୀୟ ସଂସ୍କରଣ ୧୯୭୭ରେ ପ୍ରକାଶିତ । ଦ୍ୱିତୀୟ ସଂସ୍କରଣର ଭୂମିକା ଲେଖାଯାଇଛି ୧୯୭୭ ଅଗଷ୍ଟ ୧୬ ତାରିଖରେ । ମାତ୍ର ସାତବର୍ଷ ମଧ୍ୟରେ 'ଶତାବ୍ଦୀର ସୂର୍ଯ୍ୟ' ପରି ସିରିଅସ୍ ଓ ବିରାଟ ପୁସ୍ତକର ଦ୍ୱିତୀୟ ସଂସ୍କରଣ ହେବାଦ୍ୱାରା ତା'ର ଜନପ୍ରିୟତା ତଥା ସାଫଲ୍ୟ ସୂଚିତ ହେଉଅଛି ।

'ଶତାବ୍ଦୀର ସୂର୍ଯ୍ୟ'ର ପ୍ରଥମ ସଂସ୍କରଣରେ ବିଷୟବସ୍ତୁକୁ ଦୁଇଟି ଭାଗରେ ବିଭକ୍ତ କରାଯାଇଥିଲା । ପ୍ରଥମ ଭାଗରେ ୯ଟି ପରିଚ୍ଛେଦ ଓ ଦ୍ୱିତୀୟ ଭାଗରେ ୧୯ଟି ପରିଚ୍ଛେଦ, ଏହିପରି ମୋଟରେ ୨୮ଟି ପରିଚ୍ଛେଦ ଥିଲା । କିନ୍ତୁ ୪ର୍ଥ ପରିଚ୍ଛେଦଟି ଭୁଲକ୍ରମେ ବାଦ ପଡିଯାଇଥିବାରୁ (ଅର୍ଥାତ୍ ୩ୟ ପରିଚ୍ଛେଦ ପରେ ୪ର୍ଥ ପରିଚ୍ଛେଦ ନାହିଁ, ୫ମ ପରିଚ୍ଛେଦ ଥିବାରୁ) ପ୍ରଥମ ସଂସ୍କରଣର ସୂଚୀପତ୍ରରେ ବା ଶିରୋନାମାରେ ପ୍ରଥମ ଭାଗରେ ଭୁଲରେ ୧୦ମ ପରିଚ୍ଛେଦ ପର୍ଯ୍ୟନ୍ତ ଥିଲା । ସେହିପରି ୩ୟ ପରିଚ୍ଛେଦରେ ଭୁଲ୍‌ରେ ୨ୟ ପ୍ରସଙ୍ଗ ପରେ ଆଉ ଗୋଟିଏ ପ୍ରସଙ୍ଗ ପୁଣି ଥରେ ୨ୟ ପ୍ରସଙ୍ଗ ବୋଲି ବିବେଚିତ ହୋଇଥିଲା । ଦ୍ୱିତୀୟ ସଂସ୍କରଣରେ ଏ ସବୁକୁ ସଜାଡ଼ି ଦେବାର ପ୍ରଚେଷ୍ଟା କରାଯାଇଛି । ସେଥିରେ ଅବଶ୍ୟ ଏ ସାହିତ୍ୟକୃତିଟି ପୂର୍ବପରି ଦୁଇ ଭାଗରେ ବିଭକ୍ତ ହୋଇନାହିଁ । ତେଣୁ ପୂର୍ବୋକ୍ତ ୪ର୍ଥ ପରିଚ୍ଛେଦଠାରୁ ଶିରୋନାମାରେ ପରିଚ୍ଛେଦଗୁଡ଼ିକର ସଂଖ୍ୟା ପରିବର୍ତ୍ତନ ଘଟିଛି ଯଦିଓ ପରିଚ୍ଛେଦଗୁଡ଼ିକର ମୋଟ ସଂଖ୍ୟା ସମାନ ରହିଛି । ଫଳରେ ପ୍ରଥମ ସଂସ୍କରଣର ୫ମ, ୬ଷ୍ଠ ଓ ୭ମ ଆଦି ପରିଚ୍ଛେଦ ଦ୍ୱିତୀୟ ସଂସ୍କରଣରେ ଯଥାକ୍ରମେ ୪ର୍ଥ, ୫ମ ଓ

୬ଷ୍ଠ ଆଦି ପରିଚ୍ଛେଦରେ ପରିଣତ ହୋଇଅଛି । ସେହିପରି ପ୍ରଥମ ସଂସ୍କରଣ ଦ୍ୱିତୀୟ ଭାଗର ୧ମ, ୨ୟ ଓ ୩ୟ ଆଦି ପରିଚ୍ଛେଦ ମଧ୍ୟ ଦ୍ୱିତୀୟ ସଂସ୍କରଣରେ ଯଥାକ୍ରମେ ୧୦ମ, ୧୧ଶ ଓ ୧୨ଶ ଆଦି ପରିଚ୍ଛେଦରେ ପରିଣତ ହୋଇଛି । ପୁଣି ପ୍ରଥମ ସଂସ୍କରଣର ପୂର୍ବୋକ୍ତ ପ୍ରଥମ ଭାଗର ୩ୟ ପରିଚ୍ଛେଦରେ ମଧ୍ୟ ହୋଇଥିବା ଭ୍ରମକୁ ଦ୍ୱିତୀୟ ସଂସ୍କରଣରେ ସଜାଡିଦିଆଯାଇ ପରବର୍ତ୍ତୀ ୨ୟ ପ୍ରସଙ୍ଗଟିକୁ ୩ୟ ପ୍ରସଙ୍ଗ ଓ ୩ୟ ପ୍ରସଙ୍ଗକୁ ୪ର୍ଥ ପ୍ରସଙ୍ଗରେ ପରିଣତ କରାଯାଇଛି । ତା ବ୍ୟତୀତ ଦ୍ୱିତୀୟ ସଂସ୍କରଣରେ ସ୍ଥାନେ ସ୍ଥାନେ ତଥ୍ୟଗତ ତ୍ରୁଟି ସଜାଡ଼ିବାର ଚେଷ୍ଟା କରାଯାଇଥିବା ଆଖିରେ ପଡ଼େ । ଏଇ ପ୍ରବନ୍ଧରେ ସର୍ବତ୍ର ଦ୍ୱିତୀୟ ସଂସ୍କରଣର ପରିଚ୍ଛେଦ ଓ ପ୍ରସଙ୍ଗକୁ ସୂଚିତ କରାଯିବ । କିନ୍ତୁ ପାଠକମାନଙ୍କର ସୁବିଧା ଦୃଷ୍ଟେ ପ୍ରାୟ ପ୍ରତ୍ୟେକ ସ୍ଥଳରେ ଉଭୟ ପ୍ରଥମ ଓ ଦ୍ୱିତୀୟ ସଂସ୍କରଣର ପୃଷ୍ଠା ସଂଖ୍ୟାର ସୂଚନା ସେଇ କ୍ରମରେ ପ୍ରଦାନ କରାଯିବ ।

## ପ୍ରଥମ ଭାଗ
## (ସାହିତ୍ୟ-କୃତି 'ଶତାବ୍ଦୀର ସୂର୍ଯ୍ୟ')

(କ)

'ଶତାବ୍ଦୀର ସୂର୍ଯ୍ୟ' ତଥାକଥିତ ସର୍ଜନାତ୍ମକ ସାହିତ୍ୟ ଅନ୍ତର୍ଗତ ତିନୋଟି ସ୍ୱତନ୍ତ୍ର ଧାରାର- ଜୀବନଚରିତ, ଉପନ୍ୟାସ ଓ ନାଟକର - ଏକ ତ୍ରିବେଣୀସଙ୍ଗମ । ବହୁ ଓଡିଆ - ଆଉ ଏମାନଙ୍କ ମଧ୍ୟରେ ଅଛନ୍ତି ସ୍ୱଳ୍ପ-ଶିକ୍ଷିତ, ଉଚ୍ଚଶିକ୍ଷିତ ଓ ବିଶେଷ ଭାବରେ ବୁଦ୍ଧିଜୀବୀମାନେ- ଏହି ତ୍ରିବେଣୀସଙ୍ଗମରେ ଅବଗାହନ କରିଛନ୍ତି; କରି ହୋଇଛନ୍ତି ଜାତିପ୍ରୀତିରେ ଉଦ୍‌ବୁଦ୍ଧ; ହୋଇଛନ୍ତି ଉଦାର ମାନବିକତାର ସ୍ପର୍ଶରେ ସିକ୍ତ; ଆସ୍ୱାଦନ କରିପାରିଛନ୍ତି ପୌରୁଷ, ସ୍ୱାଭିମାନ ଓ ଆତ୍ମ-ମର୍ଯ୍ୟାଦାର ସ୍ୱାଦ; ଆଉ ପାଇଛନ୍ତି ପ୍ରତିକୂଳ ପରିସ୍ଥିତିକୁ ସାମ୍ନା କରିବାର, ଅନ୍ୟାୟ ଅବିଚାରର ପ୍ରତିବାଦ ଓ ପ୍ରତିରୋଧ କରିବାର ପ୍ରେରଣା ତଥା ସମସ୍ତ ପରାଜୟ ମଧ୍ୟରେ ଅପରାଜିତ ରହି ସଗର୍ବରେ ଉନ୍ନତ ମସ୍ତକରେ ଦଣ୍ଡାୟମାନ ରହିବାର ଚୋଦନା ଓ ଭଗ୍ନସ୍ତୂପ ମଧ୍ୟରେ ବି ଅନୁଭବ କରିପାରିବାର ନବଜୀବନର ସ୍ପନ୍ଦନ । ଏ ସବୁ ତ ସେଇ ତ୍ରିବେଣୀ ସଙ୍ଗମରେ ଅବଗାହନର ପୁଣ୍ୟଫଳ ମାତ୍ର ।

ଏହା ମୂଳତଃ ଉତ୍କଳଗୌରବ ମଧୁସୂଦନଙ୍କ ଜୀବନଚରିତ (ବା ତାହାର ଅଂଶବିଶେଷ ହୋଇଥିଲେ ହେଁ) ଏହାର ପରିବେଷଣ-ଶୈଳୀ ଉପନ୍ୟାସସୁଲଭ ଆଉ ଏହି ଉପନ୍ୟାସସୁଲଭ ପରିବେଷଣ ଭିତରେ ବି ରହିଛି ନାଟକୀୟତାର ସ୍ପର୍ଶ/ନାଟକର ବ୍ୟଞ୍ଜନା । ଅନ୍ୟ କଥାରେ ଏଇ ଜୀବନଚରିତଟି ଉପନ୍ୟାସଧର୍ମୀ ଓ ଉପନ୍ୟାସଧର୍ମୀ ଜୀବନଚରିତଟି ବି କିଛି ପରିମାଣରେ ନାଟକର ନିକଟବର୍ତ୍ତୀ ।

(ଖ)

ଉପନ୍ୟାସ ସହ ଜୀବନଚରିତ ବା ଜୀବନୀର ଓତପ୍ରୋତ ବା ନିବିଡ଼ ସମ୍ପର୍କ ନାହିଁ । ପୁଣି ଜୀବନଚରିତରେ ସର୍ଜନଶୀଳତା ବା କ୍ରିୟାତ୍ମକତାର ପରିସର (ଓ ବୋଧହୁଏ ପରିମାଣ) ତୁଳନାତ୍ମକ ଭାବରେ ଅନେକ କମ୍ । ତେଣୁ ଉପନ୍ୟାସକୁ ଜୀବନଚରିତରେ ରୂପାନ୍ତରିତ କରିଦେଲେ - ଯଦି ତା ସମ୍ଭବ ହୋଇପାରେ – ତାର ସାହିତ୍ୟିକ ମୂଲ୍ୟ ହ୍ରାସ ପାଇପାରେ । ଏହା ପୁଣି ସବୁ ଉପନ୍ୟାସ କ୍ଷେତ୍ରରେ ସମ୍ଭବ ତ ନୁହେଁ ଓ ଏହାର ଉଦାହରଣ ବିରଳ ବା ନାହିଁ କହିଲେ ଚଳେ । ଅନ୍ୟ ପକ୍ଷରେ ଜୀବନଚରିତକୁ ଉପନ୍ୟାସରେ ପରିଣତ କରିଦେଲେ ତାର ସାହିତ୍ୟିକ ମୂଲ୍ୟ ତଥା ଲୋକପ୍ରିୟତା ବୃଦ୍ଧି ପାଇବ ସିନା, ହ୍ରାସ ହେବ ନାହିଁ । ତେଣୁ ଏ କ୍ଷେତ୍ରରେ ଜୀବନଚରିତଟିକୁ ଉପନ୍ୟାସରେ ରୂପାନ୍ତରିତ କରିବାର ପ୍ରଚେଷ୍ଟା ଭିତରଦେଇ ଲେଖକ ସୁରେନ୍ଦ୍ର ମହାନ୍ତି ତାର ସାହିତ୍ୟିକ ମୂଲ୍ୟ ତଥା ଲୋକପ୍ରିୟତା ବୃଦ୍ଧି କରିପାରିଛନ୍ତି । କିନ୍ତୁ ଲେଖକଙ୍କର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ଏହା କିନ୍ତୁ ସମ୍ପୂର୍ଣ୍ଣ ଭାବରେ ସଫଳ ଉପନ୍ୟାସରେ ରୂପାନ୍ତରିତ ହୋଇପାରିନାହିଁ । ଅନ୍ୟ କଥାରେ ଜୀବନଚରିତଟିକୁ ଲେଖକ ଗୋଟିଏ ସଫଳ ଉପନ୍ୟାସରେ ପରିଣତ କରିବାରେ ବ୍ୟର୍ଥ ହୋଇଛନ୍ତି । ସେ ପର୍ଯ୍ୟନ୍ତ ମଧୁସୂଦନଙ୍କର ତଥ୍ୟଭିତ୍ତିକ ଏକ ପୂର୍ଣ୍ଣାଙ୍ଗ ଜୀବନଚରିତ ଲିଖିତ ହୋଇପାରିନଥିବା କାରଣରୁ କିନ୍ତୁ ତାର ବିଶେଷ ଆବଶ୍ୟକତା ଥିବାରୁ ତଥା ସେ ଉଦ୍ଦେଶ୍ୟରେ ମଧୁସୂଦନଙ୍କ ସମ୍ପର୍କରେ ବହୁ ଅଜ୍ଞାତ ତଥ୍ୟର ସମାହାର କରିବାର ଆନ୍ତରିକ ଆଗ୍ରହ ହେତୁ ଲେଖକ ହୁଏତ କିଛି ପରିମାଣରେ ଏକ ମାନସିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଥିଲେ, ଗୋଟିଏ ଜୀବନଚରିତ ଲେଖିବେ ନା ରଚନା କରିବେ ଗୋଟିଏ ଚରିତୋପନ୍ୟାସ ? ମନେହୁଏ ଏପରି ମାନସିକ ଦ୍ୱନ୍ଦ୍ୱ ସମ୍ପର୍କରେ ଲେଖକ ନିଜେ ସଚେତନ ମଧ୍ୟ ନ ଥିଲେ । ବୋଧହୁଏ ସେ କାରଣରୁ ସେ ଏ ଦ୍ୱନ୍ଦ୍ୱର କୌଣସି ଏକ ନିର୍ଦ୍ଦିଷ୍ଟ ଓ ସ୍ପଷ୍ଟ ସମାଧାନ ମଧ୍ୟ ଦେଇପାରିଲେ ନାହିଁ । ଫଳରେ 'ଶତାବ୍ଦୀର ସୂର୍ଯ୍ୟ' ରଚିତ ହେଲା ବର୍ତ୍ତମାନ ରୂପରେ । ଏହି ପୁସ୍ତକର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ

ଲେଖକଙ୍କର ଏଇ ମାନସିକ ଦ୍ୱନ୍ଦ୍ୱର ପ୍ରତିଫଳନ ସହଜରେ ଲକ୍ଷ୍ୟ କରାଯାଇପାରେ । ଫଳରେ ଏହି ସାହିତ୍ୟ କୃତିଟିରେ ଉପନ୍ୟାସର ବହୁ ଧର୍ମ ବା ଲକ୍ଷଣ ସହ ଜୀବନଚରିତର ବହୁ ଧର୍ମ ବା ଲକ୍ଷଣ ମଧ୍ୟ ଅନାୟାସରେ ଆବିଷ୍କାର କରାଯାଇପାରେ ।

'ଶତାବ୍ଦୀର ସୂର୍ଯ୍ୟ' ଉଦ୍ଧୃତି ଓ ପାଦଟୀକା ବହୁଳ । ଏହା ପ୍ରାମାଣିକ ଜୀବନ ଚରିତର ଧର୍ମ, ଉପନ୍ୟାସର ନୁହେଁ । ବରଂ ଏଇ ଉଦ୍ଧୃତି-ଓ-ପାଦଟୀକାବହୁଳ ଶୈଳୀକୁ ଉପନ୍ୟାସ ରଚନା ଶୈଳୀର ପରିପନ୍ଥୀ ବୋଲି କୁହାଯାଇପାରେ । କାରଣ ଜୀବନଚରିତର ଲେଖକ ପ୍ରମାଣର ଭିତ୍ତିଭୂମି ଉପରେ ହିଁ ବକ୍ତବ୍ୟକୁ ଉପସ୍ଥାପନ କରନ୍ତି । କିନ୍ତୁ ଔପନ୍ୟାସିକ ତାର ବକ୍ତବ୍ୟକୁ ପ୍ରମାଣ ଭିତ୍ତିକ କରିବାର କୌଣସି ଆବଶ୍ୟକତା ନଥାଏ ଓ ସେ ମଧ୍ୟ ତାହା କରେ ନାହିଁ । ଔପନ୍ୟାସିକ ଉପନ୍ୟାସରେ ଯାହା ଲେଖେ ତାହାକୁ ବିନା ଦ୍ୱିଧାରେ, ବିନା ତଥ୍ୟ ପ୍ରମାଣରେ ବିଶ୍ୱାସ କରାଯାଏ ବା ଗ୍ରହଣ କରାଯାଏ, ଅବଶ୍ୟ ତା ଯଦି ଏକାନ୍ତ ଅସମ୍ଭବ, ଅବିଶ୍ୱାସ୍ୟ ବା ଅବାସ୍ତବ ନହୁଏ । ତେଣୁ ଜୀବନଚରିତକୁ ଉପନ୍ୟାସର ରୂପ ଦେବା ବେଳେ ସେଇ ଉପନ୍ୟାସର ଶୈଳୀକୁ ଅନୁସରଣ କରିବା ଉଚିତ । (ବିଖ୍ୟାତ ଚରିତୋପନ୍ୟାସକାର Irving Stone ମଧ୍ୟ ତାଙ୍କ ଚରିତୋପନ୍ୟାସରେ ବିଶେଷ ଉଦ୍ଧୃତି ଓ ପାଦଟୀକାକୁ ପରିହାର କରିଛନ୍ତି ।) ଏ ଦୃଷ୍ଟିରୁ 'ଶତାବ୍ଦୀର ସୂର୍ଯ୍ୟ' ଜୀବନଚରିତର ଅଧିକ ନିକଟବର୍ତ୍ତୀ । ପୁଣି ଉପନ୍ୟାସର ଘଟଣାବଳୀକୁ ଲେଖକ ସବୁ ସମୟରେ ଧାରାବାହିକ ଭାବରେ ସଜାଇ ରଖନ୍ତି ନାହିଁ କି ପରିବେଷଣ କରନ୍ତି ନାହିଁ । ବହୁ ସମୟରେ ଉପନ୍ୟାସରେ କାଳାନୁକ୍ରମକୁ ଭଙ୍ଗ କରି ଘଟଣାବଳୀକୁ ତାର ଗୁରୁତ୍ୱ ଅନୁଯାୟୀ ତଥା ପାଠକର ଚିତ୍ତବୃତ୍ତି ଉପରେ ତାହା ଯେଉଁ ରୂପରେ ଯେଉଁ ଆଲୋଡ଼ନ ସୃଷ୍ଟି କରିବା ବା ଯେଉଁ ରସ ସଞ୍ଚାର କରିବା ବା ଯେଉଁ ସନ୍ଦେଶ ପ୍ରଦାନ କରିବା ଲେଖକର ଉଦ୍ଦେଶ୍ୟ (ଯାହା ଫଳରେ ଉପନ୍ୟାସ ରଚନାର ମୂଳ ଉଦ୍ଦେଶ୍ୟ ସହଜରେ ସାଧିତ ହୋଇପାରିବ ଓ ଉପନ୍ୟାସର ମୁଖ୍ୟ ବକ୍ତବ୍ୟ ସ୍ପଷ୍ଟ ହୋଇଯିବ) ସେଇ ଦୃଷ୍ଟିକୋଣରୁ ସଜାଇ ରଖାଯାଏ ଓ ତା ଭିତର ଦେଇ ଉପନ୍ୟାସ ସାର୍ଥକ ହୁଏ । କାଳାନୁକ୍ରମ ଭଙ୍ଗ କରି ଘଟଣାବଳୀର ଏ ଯେଉଁ ସଜ୍ଜୀକରଣ କରାଯାଏ ତାହାକୁ ଇଂରାଜୀରେ ପ୍ଲଟ (Plot) କୁହାଯାଏ । ଏହା ଫଳରେ ଅନେକ ସମୟରେ ପର ଘଟଣା ପୂର୍ବେ ବର୍ଣ୍ଣିତ ହୁଏ ଓ ପୂର୍ବ ଘଟଣା ପରେ ସ୍ଥାନ ପାଏ । ନାଟକରେ ଅତୀତର ସିଂହାବଲୋକନ ବା ଫ୍ଲାସ୍‌ବ୍ୟାକ (Flashback) ପରି ଉପନ୍ୟାସରେ ମଧ୍ୟ ଅତୀତର ସିଂହାବଲୋକନପାଇଁ ବିଶେଷ କୌଶଳ ବା ପଦ୍ଧତିସବୁ ଅନୁସୃତ ହୁଏ । 'ଶତାବ୍ଦୀର ସୂର୍ଯ୍ୟ'ରେ ମଧ୍ୟ ବେଳେ ବେଳେ ଏହାର ଉଦାହରଣ ମିଳିବ, ଯଥା : ସପ୍ତମ ପରିଚ୍ଛେଦରେ (୧ମ ସଂସ୍କରଣ, ୧ମ ଭାଗ, ୮ମ

ପରିଚ୍ଛେଦ) କାଳାନୁକ୍ରମରେ ୧୮୭୫ ପର୍ଯ୍ୟନ୍ତ ମଧୁସୂଦନଙ୍କ ଜୀବନଚରିତ ଦିଆଯାଇଥିଲେ ହେଁ ଅଷ୍ଟମ ପରିଚ୍ଛେଦରେ (୧ମ ସଂସ୍କରଣ, ୧ମ ଭାଗ, ୯ମ ପରିଚ୍ଛେଦ) ଗୌରୀଶଙ୍କରଙ୍କର ଓଡ଼ିଆ ଭାଷା-ସୁରକ୍ଷା ଉଦ୍ୟମ ସମ୍ପର୍କରେ ଲେଖିବାକୁ ଯାଇ ଲେଖକ ତତ୍‌ପୂର୍ବବର୍ତ୍ତୀ ଘଟଣାର ଉଲ୍ଲେଖ କରିଅଛନ୍ତି । ଏହା କିନ୍ତୁ ନିପାତନ । 'ଶତାବ୍ଦୀର ସୂର୍ଯ୍ୟ'ରେ ଘଟଣାବଳୀ ପ୍ରାୟ କାଳାନୁକ୍ରମରେ ସଜ୍ଜିତ । ଏହାଦ୍ୱାରା 'ଶତାବ୍ଦୀର ସୂର୍ଯ୍ୟ' ଉପନ୍ୟାସର ନୁହେଁ, ଜୀବନ ଚରିତର ଅଧିକ ନିକଟବର୍ତ୍ତୀ ହୋଇଛି ।

ଉପନ୍ୟାସ ଆହୁରି ମଧ ଦିଏ ନାହିଁ, ପ୍ରତ୍ୟକ୍ଷ ଭାବରେ ଲେଖକର ବ୍ୟକ୍ତିଗତ ଅନୁଭୂତି ଓ ଅଭିଜ୍ଞତା ବର୍ଣ୍ଣନାର କୌଣସି ସୁଯୋଗ । ଉପନ୍ୟାସରେ ସେସବୁ ପ୍ରାୟ ସ୍ଥାନ ପାଏ ନାହିଁ । (ଅବଶ୍ୟ ଉପନ୍ୟାସର ଶୈଳୀ ପ୍ରଥମ ପୁରୁଷ ବା ଉତ୍ତମ ପୁରୁଷ କୈନ୍ଦ୍ରିକ ହୋଇଥିଲେ ଔପନ୍ୟାସିକକୁ କିଛି ପରିମାଣରେ ଏପରି ସୁଯୋଗ ମିଳିଥାଏ । କିନ୍ତୁ ତାହାର ଉପଯୋଗ ପ୍ରାୟ କରାଯାଏ ନାହିଁ କି ତାହା ବି ଏଠାରେ ବିଚାର୍ଯ୍ୟ ନୁହେଁ । କାରଣ 'ଶତାବ୍ଦୀର ସୂର୍ଯ୍ୟ' ପ୍ରଥମ-ପୁରୁଷ-କୈନ୍ଦ୍ରିକ ନୁହେଁ, ତୃତୀୟ-ପୁରୁଷ-କୈନ୍ଦ୍ରିକ ଶୈଳୀରେ ଲିଖିତ) କିନ୍ତୁ 'ଶତାବ୍ଦୀର ସୂର୍ଯ୍ୟ'ରେ ଲେଖକଙ୍କ ବ୍ୟକ୍ତିଗତ ଅନୁଭୂତି ଓ ଅଭିଜ୍ଞତା ସ୍ଥାନ ପାଇଛି ଯଥା : ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ସମ୍ପର୍କରେ ଲେଖିବାପାଇଁ ଯାଇ ଲେଖକ କହିଛନ୍ତି, "ଏହି ଲେଖକର ସାମ୍ବାଦିକ ଜୀବନରେ ସେହିପରି ଏକାଧିକ ଘଟଣା ଘଟିଅଛି ।" (୧ମ ସଂସ୍କରଣ ପୃ. ୨୮୯/ ୨ୟ ସଂସ୍କରଣ ପୃ୨୨୪) । ଫଳରେ 'ଶତାବ୍ଦୀର ସୂର୍ଯ୍ୟ' ଉପନ୍ୟାସଠାରୁ ବେଶ୍ କିଛି ଦୂରେଇ ଯାଇଛି ଓ ହୁଏତ ଜୀବନଚରିତର ଅଧିକ ନିକଟବର୍ତ୍ତୀ ହୋଇଛି । ଅବଶ୍ୟ ଜୀବନଚରିତରେ ମଧ ଏ ପ୍ରକାର ବ୍ୟକ୍ତିଗତ ଅନୁଭୂତି ଓ ଅଭିଜ୍ଞତାର ବର୍ଣ୍ଣନା ସ୍ପୃହଣୀୟ ନୁହେଁ ଓ କିଛି ପରିମାଣରେ ଅବାନ୍ତର ବୋଲି ବିବେଚିତ ହୋଇପାରେ । କିନ୍ତୁ ଉପନ୍ୟାସରେ ତାହା ସମ୍ପୂର୍ଣ୍ଣ ଭାବରେ ଅନାବଶ୍ୟକ ଓ ଅବାନ୍ତର ।

ପୁନଶ୍ଚ ଲେଖକ ତାଙ୍କ ନିଜ ସମସାମୟିକ ପରିପାର୍ଶ୍ୱ ଓ ସମାଜ ବ୍ୟବସ୍ଥାର ଚିତ୍ର ଆଙ୍କିବା ସହ ସେ ସମ୍ପର୍କରେ ତାଙ୍କ ମନ୍ତବ୍ୟ ବି ଏଇ ସାହିତ୍ୟକୃତିରେ ଦେଇଛନ୍ତି, ଯଥା ବାଲେଶ୍ୱରରେ ମଧୁସୂଦନଙ୍କ କିରାଣୀ ଜୀବନ ପ୍ରସଙ୍ଗରେ କୁହାଯାଇଛି, "ସେଦିନୁ ଭାରତରେ ଅନେକ କିଛି ପରିବର୍ତ୍ତିତ, ସଂଶୋଧିତ ଓ ବିବର୍ତ୍ତିତ ହୋଇଗଲା । କିନ୍ତୁ ସେ ସବୁ ମଧ୍ୟରେ ଭାରତୀୟ ଅମଲାତନ୍ତ୍ର ଏକା ଅପରିବର୍ତ୍ତିତ, ଅପରିବର୍ତ୍ତନୀୟ ଓ ସନାତନ ହୋଇ ରହିଗଲା । ଏହାର ମୃତ୍ୟୁ ନଥିବା ହେତୁ ଏହାକୁ ବୋଧହୁଏ 'ଅମଲାତନ୍ତ୍ର' କୁହାଯାଇଛି" (ପୃ.୮୩/୬୬) । ସେହିପରି ୧୮୬୬ରେ 'ଉତ୍କଳ ଦୀପିକା' ପୃଷ୍ଠାରେ

ମଧୁସୂଦନଙ୍କ ଚରିତ୍ରସଂହାର କରାଯାଇଥିବା ପ୍ରସଙ୍ଗରେ ଲେଖକ କହନ୍ତି, "...ବସ୍ତୁତଃ ଓଡ଼ିଆ ସାମ୍ବାଦିକତା ସେ ଅଭିଶାପରୁ ଅଦ୍ୟାବଧି ତଥାପି ମୁକ୍ତ ହେଲା ନାହିଁ" (ପୃ.୧୧୬/୯୨)। ସେଇ ପ୍ରସଙ୍ଗର ସମ୍ପ୍ରସାରଣରେ ମଧୁସୂଦନଙ୍କ ନାମ ପରିବର୍ତ୍ତନ ପ୍ରସଙ୍ଗର ଅବତାରଣା କରି ସେ ପୁଣି କହନ୍ତି, "ମଧୁସୂଦନଙ୍କ ମୃତ୍ୟୁର ଦୀର୍ଘ ତିରିଶ ବର୍ଷ ପରେ ତାଙ୍କ ତ୍ରିଂଶତମ ମୃତ୍ୟୁଦିବସ ଉପଲକ୍ଷେ, ୧୯୬୪ ସାଲ ଫେବୃଆରୀ ତା୪ରିଖ ଦିନ, ଶ୍ରୀରାମଚନ୍ଦ୍ର ଭବନରେ ଆୟୋଜିତ ଏକ ଜନସଭାରେ ଓଡ଼ିଶାର ଜଣେ ତତ୍କାଳୀନ ବିଶିଷ୍ଟ କଂଗ୍ରେସ ନେତା, କେଉଁ ଉଦ୍ଦେଶ୍ୟରେ କେଜାଣି' ଏହି ଭିତ୍ତିହୀନ ପ୍ରସଙ୍ଗ ମଧ୍ୟ ଉତ୍ଥାପିତ ନ କରି ନୀରବ ରହି ପାରିନଥିଲେ ।" ତା ପରେ ସେଇ ପ୍ରସଙ୍ଗରେ ପଣ୍ଡିତ ନୀଳକଣ୍ଠଙ୍କ ଆତ୍ମଜୀବନୀର ଉଲ୍ଲେଖ କରି ଲେଖକ ପୁଣି କହିଥିଲେ, "...କିନ୍ତୁ ନୀଳକଂଠଙ୍କର ସେଥିରେ କୌଣସି ଉଦ୍ଦେଶ୍ୟ ନଥିଲା, ସେ ସମ୍ପର୍କରେ ଏଇ ଲେଖକ ଅନ୍ତତଃ ନିଃସନ୍ଦେହ ।" (ପୃ.୧୧୭/୯୩)। ଆହୁରି ମଧ୍ୟ ମାନସିଂପାଟଣା ଡକାୟତି ମକଦ୍ଦମା ସମ୍ପର୍କରେ କୁହାଯାଇଛି, "ବସ୍ତୁତଃ ଓଡ଼ିଶା ରାଜନୀତିରେ ଚରିତ୍ରସଂହାର ସେହିଦିନୁ ଏ ପର୍ଯ୍ୟନ୍ତ ଯେପରି ଏକମାତ୍ର ଲକ୍ଷଣୀୟ ଆଭିମୁଖ୍ୟ ହୋଇ ରହିଆସିଛି ।"(ପୃ.୬୭୮/୫୨୯)। ଏସବୁ ଏକେ, ଅପ୍ରାସଙ୍ଗିକ ଓ ଅନାବଶ୍ୟକ। ଦ୍ୱିତୀୟରେ, ଉପନ୍ୟାସ ରଚନାଶୈଳୀର ମଧ୍ୟ ଏହା ବ୍ୟତିକ୍ରମ। ଏସବୁ ପ୍ରାୟ ଉପନ୍ୟାସରେ ସ୍ଥାନ ପାଏ ନାହିଁ; କଦବା କ୍ୱଚିତ ପାଇଥିଲେ ମଧ୍ୟ ତାର ଉପସ୍ଥାପନା କୌଶଳ ଭିନ୍ନ ହୋଇଥାଏ। ଏସବୁ ବରଂ ଜୀବନଚରିତରେ ସ୍ଥାନ ପାଇବାର ଅପେକ୍ଷାକୃତ ଅଧିକ ସୁଯୋଗ ପାଏ। ଫଳରେ 'ଶତାବ୍ଦୀର ସୂର୍ଯ୍ୟ' ସହ ଜୀବନଚରିତର ଅପେକ୍ଷାକୃତ ଅଧିକ ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଇପାରେ। ମୋଟଉପରେ ହୁଏତ ଏ ସବୁ ମଧ୍ୟରେ ଲେଖକଙ୍କ ସାମ୍ବାଦିକ-ଜୀବନର ପ୍ରତିଫଳନ ଘଟିଅଛି। ରଚନାଶୈଳୀ ମଧ୍ୟରେ ସାମ୍ବାଦିକତାର ଏଇ ସ୍ପର୍ଶ ଜୀବନଚରିତରେ ବେଳେ ବେଳେ ଦେଖିବା ପାଇଁ ମିଳେ, ସମୟ ବିଶେଷରେ ତା ହୁଏତ ସେଠାରେ ସ୍ପୃହଣୀୟ। କିନ୍ତୁ ଉପନ୍ୟାସରେ ଏସବୁ ଅବାନ୍ତର ମାତ୍ର।

କେବଳ ଉଦ୍ଧୃତି ଓ ପାଦଟୀକା ମାଧ୍ୟମରେ ବକ୍ତବ୍ୟକୁ ପ୍ରମାଣିକ କରିବାର ପ୍ରଚେଷ୍ଟା ନୁହେଁ, ଯୁକ୍ତିତର୍କ ଭିତର ଦେଇ ବକ୍ତବ୍ୟକୁ ସିଦ୍ଧ କରିବାର ପ୍ରୟାସ ମଧ୍ୟରେ ବି 'ଶତାବ୍ଦୀର ସୂର୍ଯ୍ୟ'ରେ ଉପନ୍ୟାସର ନୁହେଁ, ଜୀବନଚରିତର ସ୍ପର୍ଶ ମିଳେ। ପୂର୍ବୋକ୍ତ 'ଉତ୍କଳ ଦୀପିକା' ପୃଷ୍ଠାରେ ମଧୁସୂଦନଙ୍କ ଚରିତ୍ରସଂହାର ପ୍ରସଙ୍ଗର ଶେଷାଂଶ (ପୃ.୧୧୬-୧୧୮/୯୨-୯୩) ଏହାର ଉଦାହରଣ। ଏହା ଉପନ୍ୟାସର ନୁହେଁ, ଜୀବନଚରିତର ଏକ ସାଧାରଣ ଧର୍ମ।

ଶେଷରେ, ଏବକାର ଅଧିକାଂଶ ସଫଳ ଉପନ୍ୟାସରେ ମନସ୍ତତ୍ତ୍ୱକୁ ଚରିତ୍ର ଚିତ୍ରଣର ଭିତ୍ତିପ୍ରସ୍ତର ରୂପେ ଗ୍ରହଣ କରାଯାଏ (ଯଦିଓ ଫ୍ରଏଡ୍‌ଙ୍କ ମନୋବିଶ୍ଳେଷଣ ସମ୍ପର୍କୀୟ ସିଦ୍ଧାନ୍ତକୁ ସମସ୍ତେ ଗ୍ରହଣ କରନ୍ତିନାହିଁ) । ମନସ୍ତତ୍ତ୍ୱର ଅବ୍ୟର୍ଥ ଆଘାତରେ ଚରିତ୍ରର ମନଗହନରେ ଥିବା ଦୁର୍ଗମ ଓ ଦୁର୍ଭେଦ୍ୟ ଦୁର୍ଗର ଦ୍ୱାର ଭାଙ୍ଗିପଡେ । ଆଶା ନୈରାଶ୍ୟ, ସୁଖଦୁଃଖ, ଈର୍ଷାଦ୍ୱେଷ, ଭୟକ୍ରୋଧ, ଦ୍ୱନ୍ଦ୍ୱବିକ୍ଷୋଭ ଆଦିର ଯେଉଁ ତରଙ୍ଗ ମନକୁ ଅବିରତ ତରଙ୍ଗାୟିତ କରୁଥାଏ ତାହାର ପ୍ରତିଫଳନ ଏବକାର ଉପନ୍ୟାସର ଚରିତ୍ର ଚିତ୍ରଣକୁ ନିର୍ଦ୍ଦିଷ୍ଟ ରୂପ ପ୍ରଦାନ କରେ, ପ୍ରଦାନ କରି ଋଦ୍ଧିମନ୍ତ କରେ । ମନଗହନର ସାତତାଳ ପାଣି ତଳେ ଥିବା ଚଉଦତାଳ ପଙ୍କ ତଳେ ନାଗ ସାପ ମୁଣ୍ଡରେ ଯେଉଁ ସୁନା ଫରୁଆ ଥାଏ, ସେଇ ସୁନା ଫରୁଆର ଅଭ୍ୟନ୍ତରକୁ ଆବିଷ୍କାର କରିବାପାଇଁ ଚେଷ୍ଟା କରାଯାଏ ଉପନ୍ୟାସର ଚରିତ୍ର ଚିତ୍ରଣ ମାଧ୍ୟମରେ । ଜୀବନଚରିତରେ ମନସ୍ତତ୍ତ୍ୱ ଉପରେ ଗୁରୁତ୍ୱ ଦେଇ ଚରିତ୍ର ଚିତ୍ରଣ କରିବାରେ କୌଣସି ବାଟ ଅବଶ୍ୟ ନାହିଁ, ତତ୍ତ୍ୱଦିଗରୁ । ଏପରି କେତେକ ଜୀବନଚରିତ ଅବଶ୍ୟ ରଚିତ ହୋଇଛି ଯଥା: Sigmund Freudଙ୍କ Leonardo, J.W. Krutchଙ୍କ Edgar Allan Poe: A Study in Genius, Leon Edelଙ୍କ ପାଞ୍ଚ ଖଣ୍ଡରେ ରଚିତ Henery James, James Erik Eriksonଙ୍କ Young Man Luther ଓ Gandhi's Truth on the Origin of Militant Nonvionlence ଆଦି ମନସ୍ତତ୍ତ୍ୱର ଭିତ୍ତିଭୂମି ଉପରେ ରଚିତ ହୋଇଥିଲେ ମଧ୍ୟ ସେଗୁଡ଼ିକୁ ପାରମ୍ପରିକ ଅର୍ଥରେ ଠିକ୍ ଜୀବନଚରିତ ଆଖ୍ୟାରେ ଆଖ୍ୟାୟିତ କରିବା ବି ଉଚିତ ହେବନାହିଁ । ପୁଣି ମନସ୍ତତ୍ତ୍ୱର ଭିତ୍ତିଭୂମି ଉପରେ ରଚିତ ଏପରି ଜୀବନଚରିତ( ?)ର ପରିବେଷଣ ଶୈଳୀ ମଧ ଭିନ୍ନ ହେବାକୁ ବାଧ୍ୟ । ତା ପ୍ରାୟ ବିବରଣୀମୂଳକ ବା ବ୍ୟଞ୍ଜନାତ୍ମକ ନହୋଇ ଆଲୋଚନାତ୍ମକ ବା ବିଶ୍ଳେଷଣାତ୍ମକ ହୁଏ । ତେଣୁ ଏସବୁକୁ ଜୀବନଚରିତ ନ କହି ବ୍ୟକ୍ତିର ମନୋବିଶ୍ଳେଷଣ ବୋଲି କହିବା ବୋଧହୁଏ ଅଧିକ ସଙ୍ଗତ ହେବ । ଆଉ ଏପରି ଜୀବନଚରିତର ସଂଖ୍ୟା ମଧ୍ୟ ଖୁବ୍ କମ୍ । ଅଧିକାଂଶ ଜୀବନଚରିତ ମାତ୍ର କିଛି ପରିମାଣରେ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ମାନସିକ ଦ୍ୱନ୍ଦ୍ୱ ବା ଅନ୍ତର୍ଦ୍ୱନ୍ଦ୍ୱ ଓ ମନସ୍ତତ୍ତ୍ୱ ଭିତ୍ତିକ ନୁହେଁ । ଅନ୍ତତଃ ଓଡିଆରେ ରଚିତ ଜୀବନଚରିତ ପ୍ରତି ଏ ଉକ୍ତି ବିଶେଷ ଭାବରେ ପ୍ରଯୋଜ୍ୟ । ଏଇ ଦୃଷ୍ଟିରୁ ଦେଖିଲେ 'ଶତାବ୍ଦୀର ସୂର୍ଯ୍ୟ'ରେ ମୁଖ୍ୟ ଚରିତ୍ର ମଧୁସୂଦନଙ୍କ ଚରିତ୍ରର ମନସ୍ତତ୍ତ୍ୱ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇ ନ ଥିବାରୁ ଏହା ଉପନ୍ୟାସର ନୁହେଁ, ଜୀବନଚରିତର ଅଧିକ ନିକଟବର୍ତ୍ତୀ । କେବଳ ସେତିକି ନୁହେଁ, 'ଶତାବ୍ଦୀର ସୂର୍ଯ୍ୟ'ର କେନ୍ଦ୍ର ବିନ୍ଦୁ ମଧୁସୂଦନ ଚରିତ୍ର ସେ ସମୟର ଜଣେ ସାଧାରଣ ଓଡିଆର ଚରିତ୍ର ନୁହେଁ,

ଏହା ଏକ ଅସାଧାରଣ ଚରିତ୍ର । ଜୀବନଚରିତ ପ୍ରାୟ ଅସାଧାରଣ ଚରିତ୍ରକୁ ହିଁ କେନ୍ଦ୍ରକରି ରଚିତ ହୁଏ, ଉପନ୍ୟାସ କିନ୍ତୁ ନିଶ୍ଚିତ ଭାବରେ ନୁହେଁ; ଏହି ଦୃଷ୍ଟିକୋଣରୁ ଦେଖିଲେ ଏହାର ଗତି ଜୀବନଚରିତର ଦିଗକୁ ।

ମୋଟଉପରେ 'ଶତାବ୍ଦୀର ସୂର୍ଯ୍ୟ'ରେ ମଧୁସୂଦନଙ୍କ ଜୀବନକୁ ଉପନ୍ୟାସ ଆକାରରେ ଲେଖିବାର ସଚେତନ ଉଦ୍ୟମ ସତ୍ତ୍ୱେ ସେଥିରେ ଜୀବନଚରିତର ବହୁ ଧର୍ମ ପରିଲକ୍ଷିତ ହୁଏ, ଯାହା ସାର୍ଥକ ଉପନ୍ୟାସଠାରୁ ଏହାର ଦୂରତ୍ୱ ସୂଚାଇଦିଏ । ହୁଏତ ଲେଖକ ଏକ ସମୟରେ ରଚନା କରୁଥିଲେ ସଚେତନ ଭାବରେ ମଧୁସୂଦନଙ୍କ ଜୀବନକୁ କେନ୍ଦ୍ର କରି ଏକ ଚରିତୋପନ୍ୟାସ ଓ ତା ସହ ନିଜର ଅଜ୍ଞାତ ସାରରେ ବି ମଧୁସୂଦନଙ୍କ ଏକ ପ୍ରମାଣିକ ତଥା ତଥ୍ୟଭିତ୍ତିକ ଜୀବନଚରିତ, ଏକ ବ୍ୟାପକ ବିସ୍ତାରିତ ପୃଷ୍ଠ ପଟରେ । 'ଶତାବ୍ଦୀର ସୂର୍ଯ୍ୟ' ହେଲା ତାର ଫଳଶ୍ରୁତି, ତେଣୁ ଏହାକୁ ଉପନ୍ୟାସର ଶୈଳୀରେ ଲିଖିତ ଏକ ତଥ୍ୟ ଭିତ୍ତିକ ପ୍ରାମାଣିକ ଜୀବନଚରିତ ରୂପେ ଅଭିହିତ କରାଯାଇପାରେ ଯଦିଓ ଏଥିରେ କଳ୍ପନାର ରଙ୍ଗ କିଛି କମ୍ ନାହିଁ ।

## (ଗ)

ପ୍ରାରମ୍ଭରେ କୁହାଯାଇଛି 'ଶତାବ୍ଦୀର ସୂର୍ଯ୍ୟ'ର ଉପନ୍ୟାସ ସୁଲଭ ପରିବେଷଣ ଶୈଳୀ ଭିତରେ ରହିଛି ନାଟକର ସ୍ପର୍ଶ ବା ମୁଦ୍ରାଙ୍କନ । ନାଟକ ରଚନାର ବହୁ ପରେ ଏକ ସାହିତ୍ୟିକ ବିଭାଗ ବା ଶ୍ରେଣୀ/ବର୍ଗ (genre) ଭାବରେ ଉପନ୍ୟାସର ଉଦ୍ଭବ ହୋଇଥିଲେ ମଧ୍ୟ ଓ ନାଟକଠାରୁ ତାର ସମସ୍ତ ପାର୍ଥକ୍ୟ ସତ୍ତ୍ୱେ ଉଭୟ ଉପନ୍ୟାସ ଓ ନାଟକ ପ୍ରକୃତ ପକ୍ଷେ ପରସ୍ପରର ଅତ୍ୟନ୍ତ ନିକଟବର୍ତ୍ତୀ ସାହିତ୍ୟିକ ଶ୍ରେଣୀ/ବର୍ଗ (genre/class) । ସେଥିପାଇଁ ଉପନ୍ୟାସକୁ କେହି କେହି ପକେଟ୍-ଥିଏଟର (pocket theatre) ଅଭିଧାରେ ଅଭିହିତ ବି କରିଛନ୍ତି । ତେଣୁ ଉପନ୍ୟାସକୁ ସହଜରେ ନାଟକୀୟ କରାଯାଇପାରେ; କରାଯାଏ ମଧ୍ୟ । କେବଳ ସେତିକି ନୁହେଁ, ଓଡିଆ ଉପନ୍ୟାସକୁ ନାଟକରେ ପରିଣତ କରିବାର ମଧ୍ୟ ବହୁ ଉଦାହରଣ ରହିଛି (ଦ୍ର: ନାୟକ, ଶରତ ଚନ୍ଦ୍ର, ୧୯୮୦, 'ସ୍ୱର ଓ ସ୍ୱରୂପ', 'ଓଡ଼ିଆ ଉପନ୍ୟାସର ନାଟ୍ୟ ରୂପାୟନ') ଯଦିଓ ନାଟକରେ ଉପନ୍ୟାସର ସମସ୍ତ ଧର୍ମ ସମ୍ପୂର୍ଣ୍ଣ ଭାବରେ ରକ୍ଷିତ ହୋଇପାରେନାହିଁ । ନାଟକକୁ ଉପନ୍ୟାସରେ ପରିଣତ କରିବା ମଧ୍ୟ ତତ୍ତ୍ୱଦିଗରୁ ସମ୍ପୂର୍ଣ୍ଣ ଭାବରେ ସମ୍ଭବ । ସେପରି ଉଦାହରଣ କେଉଁଠି କିମିତି ମଧ୍ୟ ଥାଇପାରେ, ଯଦିଓ ସୁଲଭ ନୁହେଁ । ପୁଣି ଉପନ୍ୟାସକୁ ସମ୍ପୂର୍ଣ୍ଣ ଭାବରେ ନାଟକରେ ରୂପାନ୍ତରିତ କରିବା ଓ ଉପନ୍ୟାସକୁ ନାଟକୀୟ କରିବା ଏକା କଥା ନୁହେଁ । ଉପନ୍ୟାସକୁ

ନାଟ୍ୟରୂପ ଦେବା ପୂର୍ବରୁ ପ୍ରଥମେ ଏକ ପୂର୍ବେ ରଚିତ ଉପନ୍ୟାସର ଅବସ୍ଥିତିକୁ ସ୍ୱୀକାର କରିବା ପାଇଁ ହୁଏ ଓ ତାହାକୁ ଅବଲମ୍ବନ କରି ନାଟକ ଲେଖାଯାଏ । କିନ୍ତୁ ଉପନ୍ୟାସକୁ ନାଟକୀୟ କରିବା ପାଇଁ କୌଣସି ପୂର୍ବେ ରଚିତ ଉପନ୍ୟାସର ଆବଶ୍ୟକତା ପଡ଼େ ନାହିଁ କି ଲେଖକ କୌଣସି ଉପନ୍ୟାସ ବା ନାଟକକୁ ଅବଲମ୍ବନ କରି ଅଗ୍ରସର ହୁଏ ନାହିଁ । ସେ ଏକ ଉପନ୍ୟାସ ହିଁ ଲେଖିବାପାଇଁ ଆରମ୍ଭ କରେ ଓ ସେଇ ଉପନ୍ୟାସକୁ ବି ଲେଖୁଥାଏ । କିନ୍ତୁ ଲେଖୁ ଲେଖୁ ଏହି ଉପନ୍ୟାସର ପରିବେଷଣ ଶୈଳୀ ଆଂଶିକ ଭାବରେ ନାଟକୀୟ ହୁଏ ବା ସେଥିରେ ନାଟକର ସ୍ପର୍ଶ ଲାଗିଯାଏ, ହୁଏତ ବା ଲେଖକର ଅଜ୍ଞାତସାରରେ । 'ଶତାବ୍ଦୀର ସୂର୍ଯ୍ୟ'ରେ ତାହାହିଁ ଘଟିଅଛି । ଅବଶ୍ୟ ଜୀବନଚରିତ ମଧ୍ୟ ନାଟକୀୟ ଶୈଳୀରେ ରଚିତ ହୋଇପାରେ । Louis Fischerଙ୍କ The Life of Mahatma Gandhi ଏହାର ସାର୍ଥକ ଉଦାହରଣ । ଏହା କିନ୍ତୁ କଳ୍ପନାର ରଙ୍ଗରେ ରଞ୍ଜିତ ନୁହେଁ । ଜୀବନଚରିତକୁ କଳ୍ପନାର ରଙ୍ଗରେ ରଞ୍ଜିତ କରାଯାଏ ନାହିଁ; ଉପନ୍ୟାସକୁ କରାଯାଏ ଯଦିଓ ଉପନ୍ୟାସରେ ବାସ୍ତବତାକୁ ହିଁ ବିଶେଷ ଗୁରୁତ୍ୱ ଦିଆଯାଏ । 'ଶତାବ୍ଦୀର ସୂର୍ଯ୍ୟ'କୁ ନାଟକୀୟ କରିବା ଭିତରେ କଳ୍ପନାର ବେଶ୍ କିଛି ରଙ୍ଗ ଲାଗିଛି । ତେଣୁ 'ଶତାବ୍ଦୀର ସୂର୍ଯ୍ୟ' କେବଳ ଜୀବନଚରିତ ଭାବରେ ନାଟକୀୟ ହୋଇ ନାହିଁ; ଏଠାରେ ଜୀବନଚରିତଟି ଉପନ୍ୟାସ ଭାବରେ ହିଁ ନାଟକୀୟ ହୋଇପାରିଛି । ଅନ୍ୟ କଥାରେ ଜୀବନଚରିତଟି ଉପନ୍ୟାସ ଭାବରେ ପରିବେଷିତ ହେବା ଭିତର ଦେଇ ନାଟକୀୟ ହୋଇଛି ଓ ସେଥିରେ ନାଟକର ସ୍ପର୍ଶ ଲାଗିଛି ।

ଉପନ୍ୟାସ ସବୁବେଳେ ବିଭିନ୍ନ ପରିଚ୍ଛେଦରେ ବିଭକ୍ତ ହୁଏ ନାହିଁ । ତାର ସେପରି କିଛି ଆବଶ୍ୟକତା ବି ନାହିଁ । ମାତ୍ର ବେଳେ ବେଳେ ଉପନ୍ୟାସକୁ ବିଭିନ୍ନ ପରିଚ୍ଛେଦରେ ବିଭକ୍ତ କରି ସେଥିରେ ନାଟକର ସ୍ପର୍ଶ ଦିଆଯାଇଥାଏ । 'ଶତାବ୍ଦୀର ସୂର୍ଯ୍ୟ' କିନ୍ତୁ ଏ ଦିଗରେ ଅଧିକ ଅଗ୍ରସର ହୋଇଛି । ଏହାର ପ୍ରତ୍ୟେକ ପରିଚ୍ଛେଦକୁ ମୋଟାମୋଟି ଏକ ପାରମ୍ପରିକ ନାଟକର ଅଙ୍କ ସହ ତୁଳନା କରାଯାଇପାରେ । ପୁଣି ପାରମ୍ପରିକ ନାଟକରେ ପ୍ରତ୍ୟେକ ଅଙ୍କ ଯେପରି ଏକାଧିକ ଦୃଶ୍ୟରେ ବିଭକ୍ତ ହୋଇଥାଏ ସେହିପରି 'ଶତାବ୍ଦୀର ସୂର୍ଯ୍ୟ'ରେ ପ୍ରାୟ ପ୍ରତ୍ୟେକ ପରିଚ୍ଛେଦ ଏକାଧିକ ପ୍ରସଙ୍ଗରେ ବିଭକ୍ତ ହୋଇଅଛି । ଏହାର ବ୍ୟତିକ୍ରମ କ୍ୱଚିତ୍ ପରିଦୃଷ୍ଟ ହୁଏ । ବଙ୍କିମଚନ୍ଦ୍ରଙ୍କ 'ରାଜସିଂହ' ଉପନ୍ୟାସ ମଧ୍ୟ ଅନୁରୂପ ଶୈଳୀରେ ରଚିତ । କେବଳ ସେତିକି ନୁହେଁ ନାଟକର ପ୍ରତ୍ୟେକ ଦୃଶ୍ୟ ଯେପରି ରଙ୍ଗମଞ୍ଚର ଗୋଟିଏ ନିର୍ଦ୍ଦିଷ୍ଟ ପୃଷ୍ଠଭୂମି ବା ସ୍ଥାନରେ ଅଭିନୀତ ହୁଏ ସେହିପରି ଏହି ସାହିତ୍ୟ କୃତିର ଅଧିକାଂଶ ପ୍ରସଙ୍ଗ ଗୋଟିଏ ଗୋଟିଏ ସ୍ଥାନ ବା

ଭୌଗୋଳିକ ପୃଷ୍ଠଭୂମି ଉପରେ ଆଧାରିତ ଓ ଅନେକ ସମୟରେ ତାର ବର୍ଣ୍ଣନାରେ ହିଁ ଆରମ୍ଭ ହୋଇଛି । ସେଇ ନିର୍ଦ୍ଦିଷ୍ଟ ପୃଷ୍ଠଭୂମିରେ ଏଥିରେ ବିଭିନ୍ନ ଚରିତ୍ରର ଆବିର୍ଭାବ ହୁଏ ଓ ଘଟଣା ଘଟେ । ଲେଖକ ଯେପରି-ହୁଏତ ନିଜର ଅଜ୍ଞାତସାରରେ-ମଞ୍ଚ ସଚେତନ ହୋଇ ଏସବୁ ଲେଖିଛନ୍ତି ବୋଲି ମନେହୁଏ । ଏହି ନାଟକୀୟ ପରିକଳ୍ପନାରେ ନାୟକ ବା Hero ବା ମୁଖ୍ୟ ଚରିତ୍ରର ଭୂମିକା ଗ୍ରହଣ କରିଛନ୍ତି ମଧୁସୂଦନ ।

ରଙ୍ଗମଞ୍ଚରେ ନାଟକର ସାଫଲ୍ୟ କିଛିଟା ବାହ୍ୟଦ୍ୱନ୍ଦ୍ୱ ଉପରେ ନିର୍ଭର କରେ । ତେଣୁ ଅଧିକାଂଶ ନାଟକରେ ବାହ୍ୟଦ୍ୱନ୍ଦ୍ୱ ଉପରେ କିଛି ନା କିଛି ଗୁରୁତ୍ୱ ଦିଆଯାଏ । 'ଶତାବ୍ଦୀର ସୂର୍ଯ୍ୟ'ରେ ମଧ ଏହି ବାହ୍ୟଦ୍ୱନ୍ଦ୍ୱ ଉପରେ ଗୁରୁତ୍ୱ ଦିଆଯାଇଛି ଓ ଏହା ବାହ୍ୟଦ୍ୱନ୍ଦ୍ୱ-ପ୍ରଧାନ । ଅବଶ୍ୟ ଏଥିରେ ଗୋଟିଏ ମୁଖ୍ୟଦ୍ୱନ୍ଦ୍ୱ ନାହିଁ ଯାହା ସାଧାରଣତଃ ନାଟକ କ୍ଷେତ୍ରରେ ଘଟିଥାଏ । ନାଟକରେ ପ୍ରାୟ ଏହି ମୁଖ୍ୟଦ୍ୱନ୍ଦ୍ୱର ପ୍ରାରମ୍ଭ ବା ମଧ୍ୟରୁ ନାଟକର ଆରମ୍ଭ ହୋଇ ମୁଖ୍ୟଦ୍ୱନ୍ଦ୍ୱର ପରିସମାପ୍ତିରେ ହିଁ ନାଟକର ପରିସମାପ୍ତି ଘଟିଥାଏ । ଏଥିରେ କିନ୍ତୁ କ୍ରମାନ୍ୱୟେ ଘଟିଥିବା ବହୁ ଗୌଣ ବାହ୍ୟଦ୍ୱନ୍ଦ୍ୱର ସମାହାର (Conglomeration of external conflicts) ଘଟିଅଛି । ଆଉ ଏଇ ପ୍ରତ୍ୟେକ ଗୌଣ କିନ୍ତୁ ବାହ୍ୟଦ୍ୱନ୍ଦ୍ୱରେ ମଧୁସୂଦନ ହିରୋ ଭାବରେ ଗୋଟିଏ ପକ୍ଷରେ ପ୍ରତିନିଧିତ୍ୱ କରିଛନ୍ତି । କିନ୍ତୁ ବିଭିନ୍ନ ବାହ୍ୟଦ୍ୱନ୍ଦ୍ୱରେ ମଧୁସୂଦନଙ୍କ ପ୍ରତିପକ୍ଷ ରୂପେ ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ବା ଗୋଷ୍ଠୀ ବିଶେଷର ଆବିର୍ଭାବ ଘଟିଛି । ଏହିପରି ବହୁ ବାହ୍ୟଦ୍ୱନ୍ଦ୍ୱ ମାଧ୍ୟମରେ ମଧୁସୂଦନଙ୍କ ଜୀବନକୁ ରୂପ ଦେବା ଭିତର ଦେଇ ତାଙ୍କ ଜୀବନର ସଂଘର୍ଷମୟ ଦିଗଟି ହିଁ 'ଶତାବ୍ଦୀର ସୂର୍ଯ୍ୟ'ରେ ବିଶେଷ ଭାବରେ ଧରାଯାଇଛି । ଆଉ ପ୍ରତ୍ୟେକ ଅସାଧାରଣ ବ୍ୟକ୍ତିଙ୍କ ପରି ପ୍ରକୃତରେ ବୋଧହୁଏ ମଧୁସୂଦନଙ୍କ ଜୀବନର ପ୍ରଧାନ ଦିଗ ଥିଲା ସଂଗ୍ରାମ ଓ ସଂଘର୍ଷର ଦିଗ । ପ୍ରତିରୋଧ ଓ ପ୍ରତିକୂଳ ପରିସ୍ଥିତି ନିକଟରେ ମୁଣ୍ଡ ନୁଆଁଇବା ମଧୁସୂଦନଙ୍କ ଜାତକରେ ନଥିଲା । ତେଣୁ ଏଇ ରୀତି ଅବଲମ୍ବନ କରି ଲେଖକ ମଧୁସୂଦନଙ୍କ ଜୀବନର ପ୍ରଧାନ ଦିଗଟି ଯଥାର୍ଥରେ ଉନ୍‌ମୋଚନ କରି ପାରିଛନ୍ତି । ପୁଣି ଏଇ ସଂଘର୍ଷ ଓ ଦ୍ୱନ୍ଦ୍ୱର ଚିତ୍ର ଆଙ୍କିବାରେ ସେ ବିଶେଷ ଭାବରେ ସଫଳ ହୋଇଛନ୍ତି ଓ ଦ୍ୱନ୍ଦ୍ୱ ସଂଘର୍ଷ ଭିତରଦେଇ ହିଁ ମଧୁସୂଦନଙ୍କ ଚିତ୍ର ଅଧିକ ଜୀବନ୍ତ ହୋଇ ଉଠିଛି ।

ଏଠାରେ ସାମାନ୍ୟ ଅବାନ୍ତର ହେଲେ ମଧ ସୂଚାଇ ଦେବା ଆବଶ୍ୟକ ଯେ, ନାଟକ ବାହ୍ୟଦ୍ୱନ୍ଦ୍ୱ ପ୍ରଧାନ ହେଲେ ଚଳିବ । ନାଟକର ସାହିତ୍ୟିକ ମୂଲ୍ୟ କିଛିଟା ହ୍ରାସ ପାଇଲେ ମଧ ତଥାପି ଏହା ଏକ ସଫଳ ନାଟକ ହୋଇପାରିବ ଓ ଏହାର ମଞ୍ଚମୂଲ୍ୟ ଅକ୍ଷୁଣ୍ଣ ରହିବ । କିନ୍ତୁ ଉପନ୍ୟାସରେ ଚରିତ୍ରଗୁଡ଼ିକର, ବିଶେଷ ଭାବରେ ମୁଖ୍ୟ-ଚରିତ୍ରର (ବା

protagonistର), ଅନ୍ତର୍ଦ୍ୱନ୍ଦ୍ୱ ଉପରେ ହିଁ ଗୁରୁତ୍ୱ ଆରୋପ କରାଯାଏ । ଉପନ୍ୟାସ ବାହ୍ୟଦ୍ୱନ୍ଦ୍ୱ-ପ୍ରଧାନ ହେଲେ ତାହା ବାସ୍ତବତା ଠା'ରୁ ଦୂରେଇଯାଇ ସଫଳ ନ ହେବାର ସମ୍ଭାବନା ବହୁ ପରିମାଣରେ ବୃଦ୍ଧି ପାଏ । ତା ଫଳରେ ଉପନ୍ୟାସର ଚରିତ୍ର ଚିତ୍ରଣରେ କେବଳ ବାସ୍ତବତା ନୁହେଁ, ବୈଚିତ୍ର୍ୟ ମଧ୍ୟ ରହେ ନାହିଁ । 'ଶତାବ୍ଦୀର ସୂର୍ଯ୍ୟ' କ୍ଷେତ୍ରରେ ଏହା କିଛି ପରିମାଣରେ ଘଟିଛି । ଫଳରେ ଏଇ ଦୃଷ୍ଟିକୋଣରୁ ଏହା ଉପନ୍ୟାସଠାରୁ ଯେପରି କିଛିଟା ଦୂରେଇ ଯାଇ ନାଟକର ଅଧିକ ନିକଟବର୍ତ୍ତୀ ହୋଇପାରିଛି ।

ପ୍ରାରମ୍ଭରେ ସୂଚାଇ ଦିଆଯାଇଛି ଯେ, ଚରିତ୍ରଚିତ୍ରଣ ପ୍ରସଙ୍ଗରେ ମନର ସାତ ତାଳ ପାଣିର ତଳେ ଥିବା ଚଉଦ ତାଳ ପଙ୍କ ତଳେ ନାଗସାପ ମୁଣ୍ଡରେ ଯେଉଁ ସୁନା ଫରୁଆ ଥାଏ ତାର ଅଭ୍ୟନ୍ତରକୁ ଆବିଷ୍କାର କରିବାପାଇଁ ଲେଖକ ଏଥିରେ ସମର୍ଥ ହୋଇପାରିନାହାଁନ୍ତି । ସ୍ୱାଭାବିକ ଭାବରେ ତେଣୁ ପାଠକମାନେ ମଧ୍ୟ ତାର ସନ୍ଧାନ ପାଇ ପାରିନାହାଁନ୍ତି । ଚରିତ୍ରଟିକୁ ଜାଣିବାର ବା ମାପିବାର ମାତ୍ର ଦୁଇଟି ଭିତ୍ତିଭୂମି ଏଠାରେ ରହିଛି : ଚରିତ୍ରର କଥା ବା ସଂଳାପ ଓ କାର୍ଯ୍ୟ । କିନ୍ତୁ ଚରିତ୍ରର ମନର ପରିଚୟ ଲେଖକ ଦେଇନାହାନ୍ତି କି ଚରିତ୍ର ନିଜେ ଚେତନା ପ୍ରବାହ ଉପନ୍ୟାସରେ ଗୃହୀତ ଶୈଳୀ – Interior monologue – ମାଧ୍ୟମରେ ତା ଦେଇନାହିଁ ।

'ଶତାବ୍ଦୀର ସୂର୍ଯ୍ୟ'ର ଅନ୍ୟ ଏକ ବିଶେଷତ୍ୱ ରହିଛି ଏହାର ସଂଳାପ ବହୁଳତାରେ । ସାଧାରଣତଃ ଉପନ୍ୟାସ ହୁଏ ବର୍ଣ୍ଣନା ପ୍ରଧାନ । ଉପନ୍ୟାସର ବର୍ଣ୍ଣନା ପରିବର୍ତ୍ତେ ନାଟକ ଆହାର୍ଯ୍ୟ, ଆଙ୍ଗିକ, ବାଚିକ (ଓ ସାତ୍ତ୍ୱିକ) ଅଭିନୟର ଉପଯୋଗ କରେ । ଆଉ ବାଚିକ ଅଭିନୟ କେବଳ ଅଭିନେତା ଉପରେ ନିର୍ଭରଶୀଳ ନୁହେଁ, ନାଟକର ସଂଳାପ ଉପରେ ମଧ୍ୟ ସେତିକି ବା ଏପରି କି ଅଧିକ ନିର୍ଭରଶୀଳ । ତେଣୁ 'ଶତାବ୍ଦୀର ସୂର୍ଯ୍ୟ'ରେ କେବଳ ବର୍ଣ୍ଣନା ଉପରେ ଗୁରୁତ୍ୱ ଦିଆନଯାଇ ସଂଳାପ ଉପରେ ମଧ୍ୟ ଗୁରୁତ୍ୱ ଦିଆ ଯାଇଥିବା କାରଣରୁ ଏଥିରେ ନାଟକର ସ୍ୱଷ୍ଟ ଓ ଶାଣିତ ସ୍ୱର୍ଶ ମଧ୍ୟ ଦିଆଯାଇପାରିଛି । ଅବଶ୍ୟ 'ଶତାବ୍ଦୀର ସୂର୍ଯ୍ୟ'ରେ ସୁନ୍ଦର ଓ ସଫଳ ବର୍ଣ୍ଣନାର ଅଭାବ ମଧ୍ୟ ନାହିଁ । କିନ୍ତୁ ସୁଯୋଗ ପାଇଲା ମାତ୍ରେ ଲେଖକ ବର୍ଣ୍ଣନା ଓ ପରୋକ୍ଷୋକ୍ତି (reported speech) ପରିବର୍ତ୍ତେ ପ୍ରତ୍ୟକ୍ଷୋକ୍ତି (direct speech) ବା ସଂଳାପର ସଂଯୋଜନା ହିଁ କରିଛନ୍ତି । କେବଳ ସେତିକି ନୁହେଁ, ଏହି ସଂଳାପର ଭାଷାରେ ମଧ୍ୟ ଅନେକ ସମୟରେ ନାଟକ ସୁଲଭ କୃତ୍ରିମତାର ମୁଦ୍ରାଙ୍କନ ସହଜରେ ଆବିଷ୍କାର କରାଯାଇପାରେ । ଏଠାରେ ସୂଚାଇ ଦେବା ଆବଶ୍ୟକ ଯେ, ଉପନ୍ୟାସରେ ଅଧିକାଂଶ କ୍ଷେତ୍ରରେ ପ୍ରତ୍ୟକ୍ଷୋକ୍ତିର ନୁହେଁ, ପରୋକ୍ଷୋକ୍ତିର ବହୁଳ ବ୍ୟବହାର କରାଯାଏ । ସେଥିରେ କିଛି ପରିମାଣରେ କୃତ୍ରିମତା

ଥାଇପାରେ ଓ ତାହା ଅସ୍ୱାଭାବିକ ବୋଲି ମନେହୋଇନପାରେ । କିନ୍ତୁ ନାଟକରେ ପ୍ରାୟ କେବଳ ପ୍ରତ୍ୟକ୍ଷୋକ୍ତିର ବ୍ୟବହାର ହେତୁ ନାଟକର ଭାଷା (ଅର୍ଥାତ୍ ସଂଳାପ) ସ୍ୱାଭାବିକ ହେବା ସ୍ପୃହଣୀୟ, କାରଣ ନାଟକ ଅବସ୍ଥାର ଅନୁକୃତି ("ଅବସ୍ଥାନୁକୃତିର୍ନାଟ୍ୟମ୍...", ଧନଞ୍ଜୟ, ଦଶରୂପକ, ୧/୭) ବା imitation (" ... the drama imitates by action and speech." -Hudson) ମାତ୍ର । କିନ୍ତୁ ବିଭିନ୍ନ କାରଣରୁ ନାଟକରେ ସଂଳାପର ଭାଷା କୃତ୍ରିମ ହୁଏ ବା ତାକୁ କୃତ୍ରିମ କରାଯାଏ । ସାଧାରଣ କଥାବାର୍ତ୍ତାର ଭାଷା ଅପେକ୍ଷା ତାହାକୁ ଅଧିକ ଶକ୍ତିଶାଳୀ ଓ ଭାବ-ପ୍ରକାଶକ୍ଷମ କରିବାର ଉଦ୍ୟମ ହେତୁ ସଂଳାପର ଭାଷା କୃତ୍ରିମ ହୁଏ । ପୁଣି ଅଳ୍ପ ବାକ୍ୟ ଓ ଶବ୍ଦ ମଧ୍ୟରେ ବହୁ ଭାବ ପ୍ରକାଶ କରିବାର ଆବଶ୍ୟକତା ମଧ୍ୟ ସଂଳାପକୁ କୃତ୍ରିମ କରିଥାଏ । ତା ବ୍ୟତୀତ ଏକ ସମୟରେ ବିଭିନ୍ନ ଗୋଷ୍ଠୀର, ବିଭିନ୍ନ ବୟସର ବହୁ ଦର୍ଶକ ଏ ସଂଳାପ ଶୁଣିବାର ଆବଶ୍ୟକତା ଓ ସମ୍ଭାବନା ହେତୁ ସଂଳାପରେ ଶାଳୀନତା ଓ ରୁଚିବୋଧର ପ୍ରତିଫଳନ ଫୁଟି ସଂଳାପ କୃତ୍ରିମ ହୁଏ । ଆହୁରି ମଧ୍ୟ ସାଧାରଣ କଥାବାର୍ତ୍ତାରେ ବହୁ ଅର୍ଦ୍ଧବାକ୍ୟ (half-sentence) ଥାଏ; ଗୋଟିଏ ବାକ୍ୟର ମଝିରୁ ହଠାତ୍ ସେଇ ବକ୍ତା ଆଉ ଏକ ବାକ୍ୟ କହି ପକାନ୍ତି । ବ୍ୟାକରଣ ଦୃଷ୍ଟିରୁ ଶବ୍ଦ ଗଠନ ଓ ବାକ୍ୟ ଗଠନର ନିୟମକୁ ପଛରେ ପକାଇ ସାଧାରଣ କଥାବାର୍ତ୍ତାରେ ବକ୍ତା ଅଧିକାଂଶ ସମୟରେ ବହୁ ତଥାକଥିତ ଅଶୁଦ୍ଧ ପଦ ଓ ବାକ୍ୟ ପ୍ରୟୋଗ କରି ବସନ୍ତି । ଯେ କୌଣସି କାରଣରୁ ସାହିତ୍ୟରେ (ତେଣୁ ନାଟକରେ) ଏ ସବୁକୁ ପରିହାର କରିବାର ପ୍ରଚେଷ୍ଟା କରାଯାଇଥାଏ । ତା ନହେଲେ ସାହିତ୍ୟ-ସ୍ରଷ୍ଟାଙ୍କର ଭାଷା ଉପରେ ଦଖଲ ନାହିଁ ବୋଲି ମନେ କରାଯାଏ । ତେଣୁ ନାଟ୍ୟକାର ସଂଳାପକୁ ତଥାକଥିତ 'ଶୁଦ୍ଧ' ତଥା କୃତ୍ରିମ କରିବା ପାଇଁ ବାଧ ହୁଏ । ତା ବ୍ୟତୀତ ପ୍ରଥମେ ପୌରାଣିକ ତଥା ଐତିହାସିକ ପୃଷ୍ଠଭୂମିରେ ଅଧିକାଂଶ ନାଟକ ରଚିତ ହେଉଥିଲା ଓ ସେଥିରେ ଅତିଲୌକିକତାର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହୁଥିଲା । ତେଣୁ ଏହି ପୌରାଣିକ, ଐତିହାସିକ ଓ ଅତିଲୌକିକ ବାତାବରଣ ସୃଷ୍ଟିରେ ସହାୟତା କରିବାପାଇଁ, ଅବାସ୍ତବତାକୁ ପ୍ରଶ୍ରୟ ଦେବାପାଇଁ ତଥା ଚରିତ୍ରକୁ ଅତିମାନବୀୟ କରିବାପାଇଁ ହୁଏତ ସଂଳାପକୁ କୃତ୍ରିମ କରାଯାଉଥିଲା । ଅନ୍ୟଭାଷାଭାଷୀ ଚରିତ୍ର ମୁହଁରେ ମଧ୍ୟ ବେଳେ ବେଳେ କୃତ୍ରିମ ଭାଷା ଦିଆଯାଏ । ସେହି ପରମ୍ପରାର ଅବସାନ ଏବେ ମଧ୍ୟ ହୋଇନାହିଁ । ଶେଷରେ ନାଟ୍ୟକାର ତାଙ୍କ ପାଣ୍ଡିତ୍ୟ ତଥା କବିତ୍ୱ ଶକ୍ତିର ପରିଚୟ ଦେବାପାଇଁ ମଧ୍ୟ ହୁଏତ ନାଟକର ସଂଳାପକୁ କୃତ୍ରିମ କରିପକାଉଥିଲେ । ମୋଟ ଉପରେ ନାଟକରେ ସଂଳାପର ଭାଷା ପ୍ରତ୍ୟକ୍ଷୋକ୍ତି

ବୋଲି ବିବେଚିତ ହେଲେ ମଧ୍ୟ କୃତ୍ରିମ ହୋଇପାରେ ଓ 'ଶତାବ୍ଦୀର ସୂର୍ଯ୍ୟ'ର ସଂଳାପରେ ଏହି କୃତ୍ରିମତାର ମୁଦ୍ରାଙ୍କନ ଏହାକୁ ନାଟକର ସ୍ପର୍ଶ ଦେଇଛି । ମଧୁସୂଦନଙ୍କୁ ଅତିମାନବୀୟ ନ ହେଲେ ମଧ୍ୟ ଏକ ଅସାଧାରଣ ଚରିତ୍ର ଭାବରେ ଚିତ୍ରଣ କରିବାର ପ୍ରଚେଷ୍ଟା ହୁଏତ ଏହାର ସଂଳାପ କୃତ୍ରିମ ହେବାପାଇଁ କିଛି ପରିମାଣରେ ଦାୟୀ । ପୁଣି ସଂଳାପକୁ ଅତି ଶକ୍ତିଶାଳୀ ତଥା ବଳିଷ୍ଠ କରି ତାହାକୁ ଆଶୁସ୍ମୃତିଯୋଗ୍ୟ ଓ ଉଦ୍ଧୃତିଯୋଗ୍ୟ କରିବାର ଉଦ୍ଦେଶ୍ୟ - ହୁଏତ ଲେଖକଙ୍କ ଅଜ୍ଞାତସାରରେ ମଧ୍ୟେ - ଏହା ମୂଳରେ ଥାଇପାରେ, କାରଣ ଏହାର ସଂଳାପକୁ ବଡ ପାଟିରେ ବା ଉଚ୍ଚ ସ୍ୱରରେ ଉଚ୍ଚାରଣ କଲେ ସେଥିରୁ ଭିନ୍ନ ସ୍ୱାଦ ମିଳିଥାଏ । ଏହା ପୁଣି ସୁରେନ୍ଦ୍ର ମହାନ୍ତିଙ୍କ ଅନ୍ୟ ଏକ ବିଶେଷତ୍ୱ । ତାଙ୍କର ବହୁ ଗଳ୍ପ ଓ ଉପନ୍ୟାସରେ ସଂଳାପର ବହୁଳତା ତଥା ବଳିଷ୍ଠତା ଓ କୃତ୍ରିମତା ପରିଲକ୍ଷିତ ହୋଇଥାଏ । ପୁଣି ବେଳେବେଳେ 'ଶତାବ୍ଦୀର ସୂର୍ଯ୍ୟ'ରେ ଏଇ ସଂଳାପସବୁ ବେଶ୍ ବାସ୍ତବ ଓ ଚରିତ୍ର ଉପଯୋଗୀ ତଥା ଜୀବନ୍ତ ମଧ୍ୟ ହୋଇପାରିଛି । ଉଦାହରଣରେ, "ଆଲୋ କୁମବୋଉ ଦଉଡି ଆ- ଗୋବିନ୍ଦ ଫେରି ଆସିଲାଣି ଦେଖିଲୁଣି ! ଏ ବଡ ମା, ତୁ ଅନ୍ଧୁଣୀ କିଲୋ ? ସିଏ ଗୋବିନ୍ଦ ପରା !"(ପୃ.୧୫୬/୧୨୨) ।

ଏଠାରେ ଟିକିଏ ଅବାନ୍ତର ହେଲେ ମଧ କହିଦେବା ଉଚିତ ଯେ, ସୁରେନ୍ଦ୍ର ମହାନ୍ତିଙ୍କ ବହୁ ଗଳ୍ପ ଓ ଉପନ୍ୟାସରେ ଏହିପରି ନାଟକୀୟତାର ଛାପ ମିଳିଥାଏ । ବୋଧହୁଏ ଜଗତ ଓ ଜୀବନ ପ୍ରତି ତାଙ୍କର ଦୃଷ୍ଟିକୋଣ କିଛିଟା ନାଟକୀୟ (ଆଉ Shakespeare ଙ୍କ "All the worlds a stage ..." ଉକ୍ତି ତାଙ୍କ ହୃଦୟର ଅତି ନିକଟରେ ।)

## (ଘ)

ପରିଣାମରେ 'ଶତାବ୍ଦୀର ସୂର୍ଯ୍ୟ' ଯାହା ହୋଇଥାଉ ନା କାହିଁକି, ଲେଖକ ତାହାକୁ ଉପନ୍ୟାସ ବା ଚରିତୋପନ୍ୟାସ ଭାବରେ ହିଁ ପରିକଳ୍ପନା କରିଥିଲେ । ଉପନ୍ୟାସ ମଣିଷ ଜୀବନର କଳ୍ପନା ଭିତ୍ତିକ କିନ୍ତୁ ବାସ୍ତବ, ବ୍ୟାପକ, ବୈଚିତ୍ର୍ୟମୟ ଓ ବ୍ୟଞ୍ଜନାତ୍ମକ ବର୍ଣ୍ଣନା । ଉପନ୍ୟାସରେ ବାସ୍ତବତା ଉପରେ ଗୁରୁତ୍ୱ ଥିଲେ ମଧ ତା କଳ୍ପନା ଭିତ୍ତିକ ହୋଇପାରେ ଓ ଅନ୍ତତଃ ଏଇ ବାସ୍ତବତା କଳ୍ପନାର ରଙ୍ଗରେ ରଂଜିତ ହୋଇଥାଏ । 'ଶତାବ୍ଦୀର ସୂର୍ଯ୍ୟ'ରେ ଏସବୁ ବେଶ୍ କିଛି ପରିମାଣରେ ଅଛି । ଏହା ଏକ ଚରିତ୍ର-କୈନ୍ଦ୍ରିକ ସାହିତ୍ୟକୃତି । ପୁଣି ଏହି ସାହିତ୍ୟ କୃତିର କେନ୍ଦ୍ରବିନ୍ଦୁ ମୁଖ୍ୟ ଚରିତ୍ରଟି ଇତିହାସର ଚରିତ୍ର । ସେ ସମୟର ଇତିହାସ ଓ ସେ ଚରିତ୍ର ସମ୍ପର୍କରେ ବହୁ କଥା ଜଣା ଅଛି; ବହୁ

ତଥ୍ୟ ମିଳିଛି; ଲେଖକ ମଧ୍ୟ ପ୍ରଥମ ଥରପାଇଁ ବହୁ ତଥ୍ୟ ଆଲୋକକୁ ଆଣିଛନ୍ତି । (ସେ ଇତିହାସ ବି ବିଶେଷ ପୁରୁଣା ନୁହେଁ । 'ଶତାବ୍ଦୀର ସୂର୍ଯ୍ୟ'ର ପ୍ରଥମ ପ୍ରକାଶ ବେଳେ ସେ ଇତିହାସକୁ ଦେଖିଥିବା, ଅଙ୍ଗେ ନିଭେଇଥିବା କେତେକ ବ୍ୟକ୍ତି ହୁଏତ ଜୀବିତ ଥିଲେ ।) ତେଣୁ ସେ ଚରିତ୍ରଚିତ୍ରଣରେ ବାସ୍ତବତା ରହିବା କଥା; ରହିଛି । କିନ୍ତୁ କଳ୍ପନାର ପରିମାଣ ତଥା ଲେଖକର କ୍ରିୟାତ୍ମକତା ବା ସର୍ଜନଶୀଳତା ସେଇ ଅନୁପାତରେ କମିଯିବା ସ୍ୱାଭାବିକ । କାରଣ ଇତିହାସରୁ ଯେ କୌଣସି ଚରିତ୍ରଟିଏ ତୋଳି ଆଣି ତାକୁ କେନ୍ଦ୍ରକରି ସାହିତ୍ୟ କୃତି ରଚନାକଲେ ସେଥିରେ ସବୁବେଳେ ମଣିଷ ଜୀବନର ବ୍ୟାପକ ବୈଚିତ୍ର୍ୟମୟ ଓ ବ୍ୟଞ୍ଜନାତ୍ମକ ଚିତ୍ର ରହି ନପାରେ ବିଶେଷ ଭାବରେ ଯଦି ସେ ଚରିତ୍ର ସମ୍ପର୍କରେ ବହୁ ତଥ୍ୟ ମିଳୁଥାଏ । ଅନ୍ତତଃ ଐତିହାସିକ ସତ୍ୟର ଅପଳାପ ନକରି ଇତିହାସର ଚରିତ୍ରଶାଳାରୁ ଚରିତ୍ରଟିଏ ବାଛିବା ବେଳେ ଲେଖକ – ସଚେତନ ଭାବରେ ନହେଲେ ମଧ୍ୟ – ଅତ୍ୟନ୍ତ ସଫଳ ହୋଇଛନ୍ତି; ତାଙ୍କ ଉଦ୍ଦେଶ୍ୟ ଉପଯୋଗୀ ଚରିତ୍ରଟିଏ ବାଛି ପାରିଛନ୍ତି । ସେଥିପାଇଁ ଏଥିରେ 'ଜୀବନଚରିତ'ର ମୁଦ୍ରାଙ୍କନ ଥିବା ସତ୍ତ୍ୱେ, ବିଖ୍ୟାତ ଚରିତୋପନ୍ୟାସକାର Irving Sotne ଙ୍କ "The biographical novel is based on the conviction that the best of all plots lies in human charcter; and that human character is endlessly colourful and revealing. It starts with the assumption that those stories which have actually happened can be at least as interesting and true as those which have been imagined." ଉକ୍ତି 'ଶତାବ୍ଦୀର ସୂର୍ଯ୍ୟ' ପ୍ରତି ସଂପୂର୍ଣ୍ଣ ଭାବରେ ପ୍ରଯୋଜ୍ୟ । ତେବେ ଏହାର ମୁଖ୍ୟ ଚରିତ୍ର ଏକ ସାଧାରଣ ମଣିଷ ନୁହେଁ- ଏକ ଅସାଧାରଣ ମଣିଷ । ଏହାକୁ ହିଁ ଯଦି ଉପନ୍ୟାସର ଏକ ଦୁର୍ବଳତା ବୋଲି ଗ୍ରହଣ କରାଯାଏ ତେବେ ଏ ଦୁର୍ବଳତା 'ଶତାବ୍ଦୀର ସୂର୍ଯ୍ୟ' ପ୍ରତି ମଧ୍ୟ ସମ୍ପୂର୍ଣ୍ଣ ଭାବରେ ପ୍ରଯୋଜ୍ୟ । କିନ୍ତୁ ବହୁ ସାର୍ଥକ ଉପନ୍ୟାସ ତ ରଚିତ ହୋଇଛି ଆପାତତଃ ସାଧାରଣ ସ୍ତରର ବୋଲି ପ୍ରତୀୟମାନ ହେଉଥିଲେ ମଧ୍ୟ ବହୁ ଅସାଧାରଣ ମଣିଷଙ୍କୁ କେନ୍ଦ୍ର କରି । ତେଣୁ ଏହା 'ଶତାବ୍ଦୀର ସୂର୍ଯ୍ୟ'ର ଏକ ଦୁର୍ବଳତା ନୁହେଁ ।

ପୁଣି 'ଶତାବ୍ଦୀର ସୂର୍ଯ୍ୟ'ର ବାସ୍ତବତା, ବାହ୍ୟ ବାସ୍ତବତା ମାତ୍ର । କାରଣ ଏହାର ଚରିତ୍ରମାନଙ୍କ ମନଗହନରେ ଲୁକ୍କାୟିତ ରହିଥିବା ଆନନ୍ଦଉଚ୍ଛ୍ୱାସ, ଦୁଃଖଶୋକ, କରୁଣାଅନୁକମ୍ପା, ହିଂସାଦ୍ୱେଷ, ଦୟାକ୍ଷମାର, ଦ୍ୱନ୍ଦ୍ୱବିକ୍ଷୋଭର ପ୍ରତିଫଳନକୁ ଏଥିରେ ଯଥାଯଥ ଭାବରେ ରୂପ ଦିଆଯାଇ ପାରିନାହିଁ, ଯାହାର ସୂଚନା ବି ପୂର୍ବେ ଦିଆଯାଇଛି । ସେଇଥିପାଇଁ ଏହାର ଅଧିକାଂଶ ଚରିତ୍ର ସରଳ; ସେଇଥିପାଇଁ ଏଥିରେ ମଧୁସୂଦନ ଏକ

ରକ୍ତମାଂସର ମଣିଷ ନ ହୋଇ ଏକ ମର୍ମର ମୂର୍ତ୍ତିରେ ପରିଣତ ହୋଇ ଯାଇଛନ୍ତି ବୋଲି ସମାଲୋଚନା କରାଯାଇଛି । ଅବଶ୍ୟ ମର୍ମର ମୂର୍ତ୍ତି ମଧ୍ୟ ଜୀବନ୍ତ ହୁଏ ଭାସ୍କରର କଳା ନୈପୁଣ୍ୟରୁ । ସେହିପରି ମଧୁସୂଦନ ଚରିତ୍ରର ଭିତ୍ତିଭୂମି ବାହ୍ୟ ବାସ୍ତବତା ହୋଇଥିଲେ ମଧ୍ୟ ଏହା ଜୀବନ୍ତ ହୋଇଛି, କାରଣ ବାହ୍ୟ ବାସ୍ତବତାର ଚିତ୍ର ଆଙ୍କିବାରେ ଲେଖକ ଏତେ ସଫଳ ହୋଇଛନ୍ତି ଯେ ତାହା ଅନ୍ତର୍ବାସ୍ତବତା ବା ମାନସିକ ବାସ୍ତବତାର ଅଭାବକୁ ଘୋଡାଇ ପକାଇଛି । ବାହାରର ବାସ୍ତବତା, ଭିତରର ବାସ୍ତବତା ସହ ଓତପ୍ରୋତ ଭାବେ ଜଡିତ: ଉଭୟ ମଧ୍ୟରେ ନିବିଡ ସଂପର୍କ ବିଦ୍ୟମାନ । ତେଣୁ ବାହାରର ବାସ୍ତବତାର ଚିତ୍ର ନିଖୁଣ ଓ ସଫଳ ହେବାଦ୍ୱାରା ଓ ତା ଭିତର ଦେଇ ଭିତର ବାସ୍ତବତାର ସୂଚନା ପରୋକ୍ଷ ଭାବରେ ମିଳିଥାଏ । 'ଶତାବ୍ଦୀର ସୂର୍ଯ୍ୟ' କ୍ଷେତ୍ରରେ ତା କିଛି ପରିମାଣରେ ହୋଇଛି । ପୁଣି ବାହାର ବାସ୍ତବତାର ଚିତ୍ର ନିଖୁଣ ଓ ସଫଳ ହେଲେ ତା ମଧ୍ୟ ଭିତର ବାସ୍ତବତାର ଅଭାବକୁ ଘୋଡାଇ ପକାଏ । 'ଶତାବ୍ଦୀର ସୂର୍ଯ୍ୟ'ରେ ଏହାହିଁ ବିଶେଷ ଭାବରେ ଘଟିଅଛି । ମୋଟଉପରେ 'ଶତାବ୍ଦୀର ସୂର୍ଯ୍ୟ'ରେ ବାହ୍ୟ ବାସ୍ତବତା ସମ୍ପର୍କିତ ବ୍ୟାପ୍ତି ଅଛି, କିନ୍ତୁ ଅନ୍ତର୍ବାସ୍ତବତା ସମ୍ପର୍କିତ ଗଭୀରତାର ଅଭାବ ରହିଛି । ଉପନ୍ୟାସ ଭାବରେ 'ଶତାବ୍ଦୀର ସୂର୍ଯ୍ୟ'ର ଏହା ଏକ ବଡ ଦୁର୍ବଳତା ।

ପୁଣି ମଣିଷଜୀବନର ବାସ୍ତବ ଚିତ୍ର ଆଙ୍କିବା ବେଳେ 'ଶତାବ୍ଦୀର ସୂର୍ଯ୍ୟ' ତାହାକୁ କଳ୍ପନାର ରଙ୍ଗ ଦେଇ ଆଙ୍କିଛି । ଏହା ଫଳରେ ଇତିହାସ ଛାଡି ଯାଇଥିବା ବହୁ ଶୂନ୍ୟ ସ୍ଥାନକୁ ପୂରଣ କରାଯାଇ ଚିତ୍ରଟିକୁ ପୂର୍ଣ୍ଣାଙ୍ଗ କରାଯାଇ ପାରିଛି । ଏଥିରେ ପରିସ୍ଥିତିର ସୃଷ୍ଟି, ଚରିତ୍ର ସୃଷ୍ଟି; ସଂଳାପ ସଂଯୋଜନା- ଏସବୁ ଭିତରେ ଲାଗିଛି କଳ୍ପନାର ସ୍ପର୍ଶ; ଏସବୁପାଇଁ କଳ୍ପନା ଯୋଗାଇଛି ଉପାଦାନ । ତେଣୁ ଏ ସାହିତ୍ୟ କୃତିରେ ବାସ୍ତବତା ସହ କଳ୍ପନାର ନିବିଡ ସମ୍ପର୍କ ରହିଛି; ରହିଛି ଓତପ୍ରୋତ ସମ୍ପର୍କ । କଳ୍ପନାର ଏଇ ସ୍ପର୍ଶ ମାଧ୍ୟମରେ  ହିଁ ଲେଖକ ଜୀବନ ଚରିତକୁ ଉପନ୍ୟାସ ଭାବରେ ପରିକଳ୍ପନା କରିଛନ୍ତି ।

'ଶତାବ୍ଦୀର ସୂର୍ଯ୍ୟ' ଇତିହାସ ପୃଷ୍ଠାରୁ, ଜନଶ୍ରୁତିରୁ ଓ କଳ୍ପନାରୁ – ଏ ତିନି ପ୍ରକାର ଉତ୍ସରୁ – ଆହରିତ ତଥ୍ୟ ତଥା ସେଇ ତଥ୍ୟର ବିଭିନ୍ନ ପ୍ରକାର ମିଶ୍ରଣରୁ ସୃଷ୍ଟ ବହୁ ପୁରୁଷ ଓ ନାରୀର ଗୌଣ ଚରିତ୍ରକୁ ଆଉ ମଧୁସୂଦନ ଚରିତ୍ରକୁ ମାଧମ କରି ଆଙ୍କିଛି ମଣିଷ ଜୀବନର ବ୍ୟାପକ ଓ ବୈଚିତ୍ର୍ୟମୟ ଚିତ୍ର । ଏ ଚରିତ୍ରଗୁଡ଼ିକ ମଣିଷ ଜୀବନର ବିଭିନ୍ନ ଦିଗ ତଥା ବିଭାବର ସୂଚନା ଦେଇଛନ୍ତି । ଗୌଣ ଚରିତ୍ରଗୁଡ଼ିକ ପୁଣି ମୁଖ୍ୟ ଚରିତ୍ର ମଧୁସୂଦନଙ୍କ ଜୀବନର ବିଭିନ୍ନ ଦିଗ ସଫଳତାର ସହ ଉନ୍ମୋଚନ କରିବାରେ ବିଶେଷ ତଥା ସକ୍ରିୟ ଭୂମିକା ଗ୍ରହଣ କରିଛନ୍ତି । ଶେଷରେ ବିଭିନ୍ନ ବିଚିତ୍ର ପରିବେଶ ଓ ପରିସ୍ଥିତିରେ

ଏହି ଚରିତ୍ରଗୁଡ଼ିକର କ୍ରିୟାପ୍ରତିକ୍ରିୟା, ବିଭିନ୍ନ ଘଟଣାରେ ସେମାନଙ୍କର ଅଂଶଗ୍ରହଣ ତଥା ସେ କାଳର ଛୋଟବଡ଼ ବିଭିନ୍ନ ସମସ୍ୟା ପ୍ରତି ଦୃଷ୍ଟି ଆକର୍ଷଣ କରିବା ଓ ସେଗୁଡିକର ସମାଧାନରେ ବିଭିନ୍ନ ଭୂମିକା ନେବା ଭିତର ଦେଇ ମଣିଷ ଜୀବନର ବ୍ୟାପକ ଓ ବୈଚିତ୍ର୍ୟମୟ ଚିତ୍ର ଅଙ୍କାଯାଇଛି 'ଶତାବ୍ଦୀର ସୂର୍ଯ୍ୟ'ରେ । ତାହା 'ଶତାବ୍ଦୀର ସୂର୍ଯ୍ୟ'ର ସାହିତ୍ୟିକ ସଫଳତାପାଇଁ ବେଶ୍ କିଛି ପରିମାଣରେ ଦାୟୀ । ତେବେ ଏଠାରେ ପୁଣି ଥରେ ସୂଚେଇ ଦେବା ଉଚିତ୍ ଯେ ଏ ବୈଚିତ୍ର୍ୟ ହେଉଛି ବାହାର-ବୈଚିତ୍ର୍ୟ । ମନ ଭିତରର ବୈଚିତ୍ର୍ୟକୁ ଲେଖକ ସମ୍ପୂର୍ଣ୍ଣ ଭାବରେ ଆବିଷ୍କାର କରି ପାରିନାହାଁନ୍ତି କି ତାର ସାମାନ୍ୟତମ ପ୍ରଚେଷ୍ଟା ବି କରିନାହାଁନ୍ତି । ଏଥିରେ ଚରିତ୍ରକୁ ଆବିଷ୍କାର କରିବା, ମାପିବା ବା କଳନା କରିବାପାଇଁ ମାତ୍ର ଦୁଇଟି ଉପାଦାନ (ଚରିତ୍ରର କଥା ବା ସଂଳାପ ଓ ଚରିତ୍ରର କାମ) ଉପରେ ଗୁରୁତ୍ୱ ଦିଆଯାଇଛି; ନିଖାରି ନିଖାରି ଚରିତ୍ରର ମନକୁ ଦେଖାଇଦିଆଯାଇପାରିନାହିଁ ।

ଶେଷରେ ମଣିଷ ଜୀବନର ଏଇ ଚିତ୍ରରେ ଥିବା ବ୍ୟଞ୍ଜନାର କଥା । ଅନ୍ୟ କଥାରେ 'ଶତାବ୍ଦୀର ସୂର୍ଯ୍ୟ'ର ବାର୍ତ୍ତା କଅଣ ? 'ଶତାବ୍ଦୀର ସୂର୍ଯ୍ୟ' ମଣିଷ ଜୀବନର ଗାଥା, ମହାକାବ୍ୟ । ଉପନ୍ୟାସ ତାର ଅଭ୍ୟୁଦୟ କାଳରୁ ମଣିଷ ଜୀବନକୁ ପ୍ରାଧାନ୍ୟ ଦେଇ ଆସିଥିଲା ଓ ତାହାକୁ ହିଁ କେନ୍ଦ୍ର କରି ରଚିତ ହୋଇ ଆସୁଥିଲା । ତାହାର ପ୍ରତିବାଦରେ ଏବେ ହୁଏତ ମଣିଷ ଓ ମଣିଷ ଜୀବନକୁ ବାଦ୍ ଦେଇ – ସମ୍ପୂର୍ଣ୍ଣ ଭାବରେ ବାଦ୍ ଦେଇ ନପାରିଲେ ଅନ୍ତତଃ ଯେତେଦୂର ସମ୍ଭବ ଉପେକ୍ଷା କରି – ଉପନ୍ୟାସ ରଚନାର ପରୀକ୍ଷା ନିରୀକ୍ଷା ହୋଇଛି ଓ ହେଉଛି । 'ଶତାବ୍ଦୀର ସୂର୍ଯ୍ୟ'ର କେନ୍ଦ୍ରବିନ୍ଦୁ କିନ୍ତୁ ମଣିଷର ଜୀବନ

ତେଣୁ ଏଥିରେ ସାମ୍ପ୍ରତିକ ନୂତନ ଧାରାର ପରୀକ୍ଷାନୀରିକ୍ଷା ନୁହେଁ, ତାର ପ୍ରତିବାଦରେ ପାରମ୍ପରିକ ଧାରାର ଅନୁବର୍ତ୍ତନ ହିଁ ପରିଲକ୍ଷିତ ହୁଏ । ପୁଣି ବହୁ ଆଧୁନିକ ଉପନ୍ୟାସ ମଣିଷ ଜୀବନକୁ କେନ୍ଦ୍ର କରି ରଚିତ ହୋଇଥିଲେ ମଧ୍ୟ ମଣିଷ ଜୀବନର ଉଦ୍ଭଟତା, ଅନ୍ତଃସାର ଶୂନ୍ୟତା, ମୂଲ୍ୟହୀନତା, ଅର୍ଥହୀନତା ତୁଚ୍ଛତା ଓ କ୍ଲୀବତାର ବାର୍ତ୍ତା ବହନ କରେ । 'ଶତାବ୍ଦୀର ସୂର୍ଯ୍ୟ' କିନ୍ତୁ ମଣିଷ ଜୀବନର ସଫଳତା, ଶ୍ରେଷ୍ଠତ୍ୱ, ପରିପୂର୍ଣ୍ଣତା, ଗୁରୁତ୍ୱ, ଆବଶ୍ୟକତା, ପୌରୁଷ ଓ ସୌନ୍ଦର୍ଯ୍ୟକୁ ନେଇ ରଚିତ । ଏହା ମଣିଷ ଜୀବନର ଜୟଗାନ ମାତ୍ର । ମଣିଷ ଏଠାରେ ସମ୍ପୂର୍ଣ୍ଣ ଭାବରେ ପରିସ୍ଥିତିର ଦାସ କିମ୍ବା ଅଦୃଶ୍ୟ ହସ୍ତର କ୍ରୀଡ଼ା ପୁତ୍ତଳିକା ହୋଇ ନାହିଁ; ଲକ୍ଷ୍ୟହୀନ ଭାବରେ ତୃଣ ସଦୃଶ ଉଡ଼ିଯାଇ ନାହିଁ ପରିସ୍ଥିତି ଓ ଘଟଣାର ଘୂର୍ଣ୍ଣୀବାତ୍ୟାରେ, ଯାହା ଅନ୍ୟ କେତେକ ଉପନ୍ୟାସର ବକ୍ତବ୍ୟ । ସେ ପରିସ୍ଥିତି, ପରିପାର୍ଶ୍ୱ ଓ ଘଟଣାକୁ ନିୟନ୍ତ୍ରଣ କରିଛି; ନିଜର ଭାଗ୍ୟକୁ ନିଜେ ଗଢ଼ିଛି ।

ମଣିଷ ତାର ସମସ୍ତ ପ୍ରତିକୂଳ ପରିସ୍ଥିତିକୁ ପ୍ରତିରୋଧ କରିବାର, ପ୍ରତିହତ କରିଦେବାର, ସମସ୍ତ ବାଧାବିଘ୍ନକୁ ମୁକାବିଲା କରିବାର, ସାମ୍ନା କରିବାର, ବାଧାବିଘ୍ନର ପାହାଡ଼କୁ ଭାଙ୍ଗି ଚୂରି ଅଗ୍ରସର ହେବାର ବାର୍ତ୍ତା ବହନ କରିଛି 'ଶତାବ୍ଦୀର ସୂର୍ଯ୍ୟ' । ସମସ୍ତ ପରାଜୟ ମଧ୍ୟରେ ଅପରାଜିତ ରହିବା, ପରାଜୟକୁ ହେୟ କରି ବା ତୁଚ୍ଛ ଜ୍ଞାନ କରି ତାର ଊର୍ଦ୍ଧ୍ୱରେ ଉତ୍ତୁଙ୍ଗ ବନସ୍ପତି ସଦୃଶ ମସ୍ତକୋତ୍ତଳନ କରି ଦଣ୍ଡାୟମାନ ରହିବା ହେଉଛି 'ଶତାବ୍ଦୀର ସୂର୍ଯ୍ୟ'ର ବକ୍ତବ୍ୟ । 'ଶତାବ୍ଦୀର ସୂର୍ଯ୍ୟ'ର କାହାଣୀ ହେଉଛି ସ୍ୱାଭିମାନର, ଆତ୍ମମର୍ଯ୍ୟାଦାର କାହାଣୀ । ରବୀନ୍ଦ୍ରନାଥଙ୍କ ସେଇ ପ୍ରସିଦ୍ଧ କବିତାର ସେଇ ପ୍ରସିଦ୍ଧ ପଂକ୍ତିକୁ ସାମାନ୍ୟ ପରିବର୍ତ୍ତନ କରି କୁହାଯାଇପାରେ,

"ଚିତ୍ତ ଯାର ଭୟ ଶୂନ୍ୟ ଉଚ୍ଚ ଯାର ଶିର"

ଏ ତାହାରି କାହାଣୀ । ସେ ହେଉଛନ୍ତି ଉତ୍କଳ ଗୌରବ ମଧୁସୂଦନ । ରବୀନ୍ଦ୍ରନାଥ ଅନ୍ୟତ୍ର ଲେଖିଛନ୍ତି,

"ପତନ ଅଭ୍ୟୁଦୟ-ବନ୍ଧୁର ପନ୍ଥା ଯୁଗ ଯୁଗ ଧାବିତ ଯାତ୍ରୀ,
ହେ ଚିର ସାରଥି ! ତବ ରଥଚକ୍ରେ ମୁଖରିତ ପଥ ଦିବାରାତ୍ରୀ ।"

'ଶତାବ୍ଦୀର ସୂର୍ଯ୍ୟ' ସେଇ ମହାନ ସାରଥି ବାହିତ ରଥଚକ୍ର ମୁଖରିତ ପଥର ଗାଥା, ଆଉ ସେହି ମହାନ ସାରଥିଙ୍କ ଗାଥା । ତେବେ, ଆପାତତଃ କାହାରି କାହାରି ମନେ ହୋଇପାରେ ଯେ ଏହିଠାରେ ହିଁ ରହିଛି ଉପନ୍ୟାସ ଭାବରେ 'ଶତାବ୍ଦୀର ସୂର୍ଯ୍ୟ'ର ଅନ୍ୟ ଏକ ଦୁର୍ବଳତା । କାରଣ 'ଶତାବ୍ଦୀର ସୂର୍ଯ୍ୟ' ସାଧାରଣ ମଣିଷର ଗାଥା (କଥା/କାହାଣୀ) ନୁହେଁ । ଏହା ଏକ ଅସାଧାରଣ ମଣିଷର ଏକ ମହାନ ସାରଥିର ଗାଥା ମାତ୍ର । କିନ୍ତୁ ବହୁ କାଳ୍ପନିକ ଅସାଧାରଣ ମଣିଷକୁ/ବ୍ୟକ୍ତିକୁ/ବ୍ୟକ୍ତିତ୍ୱକୁ କେନ୍ଦ୍ର କରି ତ ସୃଷ୍ଟି ହୋଇଛି ବହୁ ଉଚ୍ଚମାନର ସାହିତ୍ୟକୃତି, ଉପନ୍ୟାସ, ଗଳ୍ପ ଓ ନାଟକ । ଆଉ ତାହାହିଁ ବି ତ 'ଶତାବ୍ଦୀର ସୂର୍ଯ୍ୟ'ର ବିଶେଷତ୍ୱ, ତାହାହିଁ ବି ରହିଛି ତାର ସାଫଲ୍ୟର ମୂଳରେ ।

'ଶତାବ୍ଦୀର ସୂର୍ଯ୍ୟ'ର ପ୍ରତିଫଳିତ ମଧୁସୂଦନଙ୍କ ଏହି ପ୍ରତିକୂଳ ପରିସ୍ଥିତିର ପ୍ରତିରୋଧ-ପ୍ରବଣତା, ଅପରାଜେୟତା, ସଂଗ୍ରାମୀ ବ୍ୟକ୍ତିତ୍ୱ ଓ ସ୍ୱାଭିମାନ ସହ ସ୍ୱାଭାବିକ ଭାବେ ମିଶିଛି ତାଙ୍କର ମାନବିକତା, ଉଦାରତା ଓ ତ୍ୟାଗ । ତେଣୁ 'ଶତାବ୍ଦୀର ସୂର୍ଯ୍ୟ' ମଧ୍ୟ ତ୍ୟାଗ, ଉଦାରତା ଓ ମାନବିକତାର ବାର୍ତ୍ତା ବହନ କରେ । ପୁଣି ଏଇ ସବୁ ଗୁଣର ସମବାୟରେ ଗଠିତ ମଧୁସୂଦନଙ୍କ ଚରିତ୍ରର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ତାଙ୍କ ଉତ୍କଳ ଜାତି-ପ୍ରୀତି । ତା ମଧ୍ୟ ଅତି ସ୍ପଷ୍ଟ ଭାବରେ ଧରାଯାଇଛି 'ଶତାବ୍ଦୀର ସୂର୍ଯ୍ୟ'ରେ ଓ ସେଥିରେ ତାଙ୍କୁ ଓଡ଼ିଆ ଜାତିର ଅନ୍ୟତମ ଶଙ୍ଖ ବା ଚିହ୍ନର ମାନ୍ୟତା ହିଁ ଦିଆଯାଇଛି;

ସେ ହିଁ ଯେପରି ପରିଣତ ହୋଇଯାଇଛନ୍ତି ସମଗ୍ର ଓଡ଼ିଆ ଜାତିର ପ୍ରତିନିଧିରେ। ପରିଣାମରେ ମଧୁସୂଦନଙ୍କ ସ୍ୱାଭିମାନ, ଅହଂକାର ଅପରାଜେୟତା ଓ ଉଦାର ମାନବିକତା ସତେ ଯେପରି ସମଗ୍ର ଓଡ଼ିଆ ଜାତିର ସ୍ୱାଭିମାନ, ଅହଙ୍କାର, ଅପରାଜେୟତା ଓ ଉଦାରତାରେ ପରିଣତ ହୋଇଯାଇଛି। ଫଳରେ 'ଶତାବ୍ଦୀର ସୂର୍ଯ୍ୟ' ହୋଇଛି ଏକ ଜାତିର ଗାଥା, ଜାତିର ମହାକାବ୍ୟ । ସାହିତ୍ୟ କୃତି ଭାବରେ 'ଶତାବ୍ଦୀର ସୂର୍ଯ୍ୟ'ର ସାଫଲ୍ୟ ଓ ଲୋକପ୍ରିୟତାର ଏହା ଅନ୍ୟ ଏକ ଦିଗ । 'ଶତାବ୍ଦୀର ସୂର୍ଯ୍ୟ' ମଧୁସୂଦନଙ୍କ ଶାଣିତ ବ୍ୟକ୍ତିତ୍ୱରେ ଦୀପ୍ତ, ଉଦାର ମାନବିକତାରେ ସିକ୍ତ ଓ ଜାତିପ୍ରୀତିରେ ଉଜ୍ଜୀବିତ। ସେଥିରେ ପୁଣି ବହୁ ସ୍ଥାନରେ ଏ ସାହିତ୍ୟକୃତିର ଭାଷାର ଔଜ୍ଜ୍ୱଲ୍ୟ ଏହାର ବାର୍ତ୍ତାକୁ, ଏହାର ସନ୍ଦେଶକୁ କରିଦେଇଛି ଶାଣିତ ତଥା ମଧୁସୂଦନଙ୍କ ବ୍ୟକ୍ତିତ୍ୱକୁ କରିପାରିଛି ଅଧିକ ଶକ୍ତିଶାଳୀ, ଅଧିକ ପ୍ରଭାବଶାଳୀ ଓ ଅଧିକ ଦୀପ୍ତିମନ୍ତ।

ମୋଟଉପରେ 'ଶତାବ୍ଦୀର ସୂର୍ଯ୍ୟ'ରେ ସଫଳ ଉପନ୍ୟାସର ଅଧିକାଂଶ ମୌଳିକ ଉପାଦାନ ଉଣା ଅଧିକେ ରହିଥିଲେ ହେଁ ଉପନ୍ୟାସ ଭାବରେ ଏହାର କିଛି ଦୁର୍ବଳତା ମଧ୍ୟ ରହିଛି । ଫଳରେ 'ଶତାବ୍ଦୀର ସୂର୍ଯ୍ୟ' ଉପନ୍ୟାସର ବେଶ୍ ନିକଟବର୍ତ୍ତୀ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଉପନ୍ୟାସରେ ରୂପାନ୍ତରିତ ହୋଇ ପାରିନାହିଁ, କଳ୍ପନାର ରଙ୍ଗରେ ରଞ୍ଜିତ ଏକ ଉପନ୍ୟାସୋପମ ଜୀବନଚରିତ ହୋଇଛି ମାତ୍ର ।

## (ଡ)

'ଶତାବ୍ଦୀର ସୂର୍ଯ୍ୟ' ଏକ ଚରିତ୍ର-କୈନ୍ଦ୍ରିକ ସାହିତ୍ୟ କୃତି। ଏହାର ମୁଖ୍ୟ ଚରିତ୍ରକୁ କେନ୍ଦ୍ର କରି ଅନ୍ୟାନ୍ୟ ଗୌଣ ଚରିତ୍ର, ଘଟଣାବଳୀ ଓ ସମସ୍ୟାର ପରିକଳ୍ପନା କରାଯାଇଛି। ମୁଖ୍ୟ ଚରିତ୍ରଟିକୁ ପୁଷ୍ଟ କରିବା ହିଁ ହୋଇପଡିଛି ସେ ସବୁର ମୁଖ୍ୟ ଭୂମିକା। ମଧୁସୂଦନଙ୍କର ଚରିତ୍ରର ବିଭିନ୍ନ ଦିଗ ଉନ୍ମୋଚନ କରିବାରେ ଏଇ ଗୌଣ ଚରିତ୍ର ସବୁ ସକ୍ରିୟ ଭୂମିକା ଗ୍ରହଣ କରି ମଧୁସୂଦନଙ୍କ ଚରିତ୍ରକୁ ପୁଷ୍ଟ କରିଛନ୍ତି। ତା ବ୍ୟତୀତ, ଏଇ ଚରିତ୍ରମାନଙ୍କ ମଧ୍ୟରୁ କେତେକ ପରିବେଶ ସୃଷ୍ଟିରେ ମଧ୍ୟ ହୋଇଛନ୍ତି ସହାୟକ (ଯଥା : ଲଘୁ ପରିବେଶ ସୃଷ୍ଟିରେ ମହନ୍ତ ମହାରାଜ ଓ ଦୀନନାଥ ବନ୍ଦ୍ୟୋପାଧ୍ୟାୟଙ୍କ ଭୂମିକା)। କେବଳ ସେତିକି ନୁହେଁ, ଏମାନଙ୍କ ମଧ୍ୟରୁ ଅଧିକାଂଶ ସେ ସମୟର ପୃଷ୍ଠଭୂମି ରଚନାରେ ମଧ୍ୟ ବିଶେଷ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି। ତତ୍‌କାଳୀନ ଓଡ଼ିଶାର ରାଜନୀତିକ ତଥା ବୌଦ୍ଧିକ କ୍ଷେତ୍ରରେ ନେତୃତ୍ୱ ନେଇଥିବା ଅଧିକାଂଶଙ୍କୁ ଏଇ ସାହିତ୍ୟ କୃତିର ଗୌଣ ଚରିତ୍ର ଭାବରେ ଦେଖିବା ପାଇଁ ମିଳେ। ଏଇ ଚରିତ୍ରମାନଙ୍କର ସମାହାର ନ ହୋଇଥିଲେ ହୁଏତ ୧୯ଶ

ଶତକର ଏକ ଜୀବନ୍ତ ରୂପ 'ଶତାବ୍ଦୀର ସୂର୍ଯ୍ୟ'ରେ ଧରା ଦେଇନଥାନ୍ତା । ଊନବିଂଶ ଶତକର ଓଡ଼ିଶାରେ କ୍ରିୟାଶୀଳ ବିଭିନ୍ନ ଶକ୍ତି ଓ ପ୍ରତି-ଶକ୍ତିଗୁଡ଼ିକର ପ୍ରତିନିଧିତ୍ୱ କରିଛନ୍ତି ଏମାନେ ।

ଏଇ ଚରିତ୍ରମାନଙ୍କୁ ଇତିହାସର ପୃଷ୍ଠାରୁ ବା ଜନଶ୍ରୁତିରୁ ବା କଳ୍ପନାରୁ ବା ଏଇ ତିନି ଉତ୍ସର ବିଭିନ୍ନ ପ୍ରକାର ସମ୍ମିଶ୍ରଣରୁ ଚୟନ କରାଯାଇଛି ବୋଲି ପୂର୍ବେ ସୂଚିତ ହୋଇଛି । ମୁଖ୍ୟ ଚରିତ୍ର ସହ ଏଇ ଚରିତ୍ରମାନଙ୍କର ଗୋଟିଏ ବଡ଼ ଦୁର୍ବଳତା ହେଉଛି ଯେ ସେମାନଙ୍କ ମନ ଉପରେ ବିଶେଷ ଆଲୋକପାତ କରାଯାଇ ନାହିଁ । ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ କଥା ହେଉଛି, ଏସବୁ ଚରିତ୍ର ମଧ୍ୟରୁ ମୁଖ୍ୟ ଚରିତ୍ରର ତଥା ଅନ୍ୟ ଚରିତ୍ରଗୁଡ଼ିକର ଯୌନ-ଚେତନା ବା ଯୌନ-କାମନା ଥିବାର କୌଣସି ସୂଚନା ମଧ୍ୟ ଦିଆଯାଇ ନାହିଁ ବୋଲି କହିଲେ ଚଳେ । ଲେଖକ ଯେପରି ଫକୀରମୋହନଙ୍କ ପରି ଅତି ସନ୍ତର୍ପଣରେ ତାହାକୁ ଏଡ଼ାଇ ଯାଇଛନ୍ତି ବୋଲି ମନେହୁଏ । ଅବଶ୍ୟ ସେପରି ବିଶେଷ ସୁଯୋଗ ହୁଏତ ଏ ପ୍ରକାର ସାହିତ୍ୟକୃତିରେ ନଥିଲା । ତେବେ ସୁଯୋଗ ଆଦୌ ନଥିଲା ବୋଲି ନୁହେଁ । ଯୌନ-କାମନା ଏଥିରେ ମୁଖ୍ୟ ଚରିତ୍ର ବା ଅନ୍ୟ କୌଣସି ଚରିତ୍ରକୁ କୌଣସି ଭାବରେ କର୍ମ-ପ୍ରେରଣାରେ ଅନୁପ୍ରେରିତ କରିନାହିଁ; କରିନାହିଁ ପ୍ରଚୋଦିତ । ମନେହୁଏ, ଲେଖକଙ୍କ ଦୃଷ୍ଟିରେ ମଣିଷ ଜୀବନରେ ତାହାର ଭୂମିକା ଯେପରି ଅତି ହେୟ, ଅତି ଗୌଣ, ଅତି ତୁଚ୍ଛ । ଏହା ହୁଏତ ଫ୍ରଂୟେଡୀୟ ମନୋବିଶ୍ଳେଷଣ ତତ୍ତ୍ୱ ବିରୁଦ୍ଧରେ ଏକ ପ୍ରତିବାଦ, ହୁଏତ ବା ଲେଖକଙ୍କ ଅଜ୍ଞାତସାରରେ । ତେଣୁ ଆଧୁନିକ ସମାଲୋଚନାର କଷଟିରେ କେହି କେହି ଏହାକୁ ଉପନ୍ୟାସ ବୋଲି କହିବାପାଇଁ କୁଣ୍ଠିତ ହୋଇପାରନ୍ତି । ଉଚ୍ଚାକାଂକ୍ଷା ବା ନେତୃତ୍ୱର ଆକାଂକ୍ଷା (Strive for superiority) ଏହାର ମୁଖ୍ୟ ଚରିତ୍ରର (ଓ ବୋଧହୁଏ ଅନ୍ୟାନ୍ୟ ବହୁ ଚରିତ୍ରମାନଙ୍କର) କର୍ମ-ପ୍ରେରଣାର ଉତ୍ସ (driving force) । ଆଉ ତାହା ହିଁ ବହୁ ସାର୍ଥକ ଉପନ୍ୟାସରେ ଦେଖିବାପାଇଁ ମିଳେ । ସେ କାରଣରୁ ଏହାକୁ ଉପନ୍ୟାସ ବର୍ଗର ଅନ୍ତର୍ଭୁକ୍ତ କରିବାରେ କୌଣସି ବାଧା ଅବଶ୍ୟ ନାହିଁ । ପୁଣି ମନୋବିଶ୍ଳେଷକ ଆଡ୍‌ଲାରଙ୍କୁ (Alfred Adlerଙ୍କୁ) ଅନୁସରଣ କରି କେହି କେହି ତେଣୁ ଏହାର ମୁଖ୍ୟ-ଚରିତ୍ରର ନେପଥ୍ୟରେ ବା ଅନ୍ତରାଳରେ ହୀନମନ୍ୟତାକୁ (inferiority feelingକୁ) ମଧ୍ୟ ଆବିଷ୍କାର କରିପାରନ୍ତି । ପୁଣି ନେପୋଲିୟନଙ୍କ ପରି ଖର୍ବକାୟ ଐତିହାସିକ ମଧୁସୂଦନଙ୍କ ଚରିତ୍ରର ଏପରି ବିଶ୍ଳେଷଣ ମଧ୍ୟ ହୁଏତ ସମ୍ପୂର୍ଣ୍ଣ ଭାବରେ ସମ୍ଭବ । ତେବେ 'ଶତାବ୍ଦୀର ସୂର୍ଯ୍ୟ'ରେ ଚରିତ୍ର ଚିତ୍ରଣର ଭିତ୍ତିଭୂମି ଭାବରେ

ଆଡ୍‌ଲାରଙ୍କ ତତ୍ତ୍ୱକୁ ଆବିଷ୍କାର କରାଯାଇ ପାରିଲେ ମଧ୍ୟ ଏଠାରେ ଲେଖକଙ୍କ ଏ ସମ୍ପର୍କୀୟ ସଚେତନତାର ସ୍ପର୍ଶ ଆଦୌ ନାହିଁ ।

(ଚ)

ଏହା ଶେଷ ବିଶ୍ଳେଷଣରେ ଯାହା ହେଉ ନା କାହିଁକି, ଏଥିରେ କେତେକ ପରିବେଷଣ ବା ଶୈଳୀଗତ ତ୍ରୁଟି ମଧ ପରିଲକ୍ଷିତ ହୁଏ । ମନେହୁଏ ଲେଖକ ଏହାକୁ ଏକ ଦିଗରେ ଯେପରି ଭାବାବେଗରେ ଆବିଷ୍ଟ ହୋଇ ଲେଖିଛନ୍ତି, ସେହିପରି ଅନ୍ୟ ଦିଗରେ ଏଥିରେ ପରିବେଷିତ ବିବରଣୀକୁ ପ୍ରମାଣିତ କରିବାର ପ୍ରଚେଷ୍ଟା ମଧ କରିଛନ୍ତି । ଆଉ ଥରେ ଲେଖା ହେବାପରେ ସେ ଏହାକୁ ବାରମ୍ବାର ସଂଶୋଧନ ବା ପରିମାର୍ଜନର ଚେଷ୍ଟା ମଧ ହୁଏତ କରିନାହାଁନ୍ତି । ଏଇ ତ୍ରୁଟି ଗୁଡିକର କେତୋଟି ଉଦାହରଣ ଦେଲେ ଉପରୋକ୍ତ ମନ୍ତବ୍ୟ ସ୍ପଷ୍ଟ ହୋଇଯିବ ।

ଲେଖକ ଏହାର ପୃଷ୍ଠପଟ ଆଙ୍କିବାବେଳେ ବିଭିନ୍ନ ଘଟଣା, ସମସ୍ୟା ଓ ଗୌଣ ଚରିତ୍ରର ଅବତାରଣାରେ ଯେତିକି ଆନୁପାତିକ ଭାରସାମ୍ୟ ରଖିବା କଥା ତା ରଖିପାରିନାହାନ୍ତି । ବିଖ୍ୟାତ ଚରିତୋପନ୍ୟାସକାର Irving Stoneଙ୍କ, "... no disproportions about material where I happen to know more..." ଆଦର୍ଶକୁ 'ଶତାବ୍ଦୀର ସୂର୍ଯ୍ୟ'ରେ ଏକାଧିକ ସ୍ଥଳରେ ଲଂଘନ କରାଯାଇଛି ।

ଏହା ବ୍ୟତୀତ 'ଶତାବ୍ଦୀର ସୂର୍ଯ୍ୟ'ରେ କେତେକ ଘଟଣାବଳୀ ଓ ତଥ୍ୟ ଅସ୍ଥାନରେ ସଂଯୋଜିତ ବା ବର୍ଣ୍ଣିତ ହୋଇଛି ଯଥା: ୧୯୧୯ରେ ଗୌରୀଶଙ୍କରଙ୍କ ମୃତ୍ୟୁ ପରେ ପରେ ଉତ୍କଳ ସମ୍ମିଳନୀର ୧୩ଶ ଅଧିବେଶନରେ ମଧୁସୂଦନଙ୍କ ଶୋକ ପ୍ରସ୍ତାବ ସମ୍ପର୍କିତ ଭାଷଣ (ପୃ.୧୮୬-୮୭/୧୪୫) ଓ ୧୯୦୮ରେ କଟକରେ ଆଇନ ବିଦ୍ୟାଳୟ ପ୍ରତିଷ୍ଠା ପ୍ରସ୍ତାବ ସମ୍ପର୍କରେ ମଧୁସୂଦନଙ୍କୁ ଆଶୁତୋଷ ମୁଖର୍ଜୀ ଲେଖିଥିବା ପତ୍ର (ପୃ.୩୦୦-୦୧/୨୩୨-୩୩) । ମନେହୁଏ, ଲେଖକ 'ଶତାବ୍ଦୀର ସୂର୍ଯ୍ୟ' ଲେଖିବା ସମୟରେ ଏହାର ପରବର୍ତ୍ତୀ ଭାଗ ('କୁଳବୃଦ୍ଧ')ର ପରିକଳ୍ପନା କରିଥିଲେ ହେଁ, ଏହା ଲେଖାଯାଇ ପାରିବ କି ନାହିଁ ଓ ଲେଖାଗଲେ କେବେ ଲେଖାଯିବ ସେ ସମ୍ପର୍କୀୟ ସନ୍ଦେହ ବାରମ୍ବାର ତାଙ୍କ ମନରେ ଉଙ୍କି ମାରୁଥିଲା । ତେଣୁ ପରଖଣ୍ଡରେ ଯେଉଁ ଘଟଣା ବା ତଥ୍ୟର ଉଲ୍ଲେଖ ସୁନ୍ଦର ହୋଇଥାଆନ୍ତା ତାହା 'ଶତାବ୍ଦୀର ସୂର୍ଯ୍ୟ'ରେ ଅନାବଶ୍ୟକ ଥିଲେ ମଧ୍ୟ ସ୍ଥାନ ପାଇଲା ।

ମଧୁସୂଦନଙ୍କ ସମ୍ପର୍କରେ ବିଚାରପତି ସାର୍. ଟି.ଏସ୍ ମାକ୍‌ଫରସନ୍‌ଙ୍କ ଏକ ଉକ୍ତିକୁ ଦୁଇ ସ୍ଥାନରେ ଦୁଇଥର ଉଦ୍ଧାର କରିବାର (ପୃ.୧୧୪ ଓ ୬୭୮/୯୦-୯୧ ଓ ୫୨୯) ମଧ୍ୟ କୌଣସି ଆବଶ୍ୟକତା ନଥିଲା ।

ଓଡିଶାରେ ଓଡିଆମାନଙ୍କ ଦୂରବସ୍ଥା ସମ୍ପର୍କରେ ମଧୁସୂଦନଙ୍କ ମୁହଁରେ "ରଂଜା ରଂଜାଇଲି କାକୁଡି ପାଇଁକି ବଳେ ମାଡିଗଲା ପୋଇ ।" ଢଗ/ପ୍ରବାଦର ନିମ୍ନ ବ୍ୟାଖ୍ୟା ଦିଆଯାଇଛି, "ରଂଜା ସଜାଡିଲେ ସିନା ହେବ ! ବାହାର ଲୋକଙ୍କ ସାଙ୍ଗରେ ଝଗଡା କଲେ କି ଲାଭ ମିଳିବ ? ସେଇ ରଂଜା ସଜାଡିବା କଥାଟା କାହାରି ମୁଣ୍ଡରେ ପଶୁ ନାହିଁ ଯେ ! ତୁମେ ସମସ୍ତେ ତ ଭାବିଲ ଡେପୁଟି ହେବ: ରଂଜା କଥା ଭାବିବା ପାଇଁ ବେଳ କାହାକୁ ଅଛି ?" (ପୃ.୩୭୯/୨୯୨-୯୩) । ଏଠାରେ ପ୍ରବାଦଟିର ଠିକ୍ ବ୍ୟାଖ୍ୟା ମଧୁସୂଦନଙ୍କ ମୁହଁରେ ଦିଆଯାଇ ନାହିଁ । ରଂଜା ରଂଜାଇବା ବା ସଜାଡିବା ନୁହେଁ, ପୋଇର ବଳେ ମାଡିଯିବା ହିଁ ପ୍ରବାଦଟିର ପ୍ରକୃତ ବକ୍ତବ୍ୟ । ତେଣୁ ପୋଇର ସେହି ବଳେ ମାଡିଯିବା କାମର ପ୍ରତିରୋଧ କିପରି କରାଯାଇପାରିବ ତାର ସୂଚନା ହିଁ ମଧୁସୂଦନଙ୍କ ଉକ୍ତିରେ ଦିଆଯିବା ଆବଶ୍ୟକ ଥିଲା । ଅନ୍ୟ କଥାରେ ଢଗଟି ଅସ୍ଥାନରେ ଦିଆଯାଇଛି । ଏହାର ବ୍ୟବହାର ମଧୁସୂଦନଙ୍କ ଉକ୍ତିକୁ ଶାଣିତ କରିପାରିନାହିଁ । ଭାଷାରେ ମଧ୍ୟ ଲେଖକଙ୍କ କେତେକ ପ୍ରିୟ ଶବ୍ଦର ବାରମ୍ବାର ବ୍ୟବହାର ପରିଲକ୍ଷିତ ହୁଏ ।

ତେବେ ଏଇ ତ୍ରୁଟି ଗୁଡିକ ସେପରି ଗୁରୁତ୍ୱ ପୂର୍ଣ୍ଣ ନୁହେଁ ଓ ଏଥିପାଇଁ ସାହିତ୍ୟ-କୃତିଟିର କଳାଗତ ମୂଲ୍ୟ ବିଶେଷ ହ୍ରାସ ପାଇନାହିଁ ବୋଲି କହିଲେ ଚଳେ ।

## ଦ୍ୱିତୀୟ ଭାଗ

### ('ଶତାବ୍ଦୀର ସୂର୍ଯ୍ୟ' ଓ ଉନବିଂଶ ଶତାବ୍ଦୀ)

### (କ)

ଇତିହାସ ତଥ୍ୟ ଓ ତର୍କ ମାଧ୍ୟମରେ ଅତୀତର ଛବି ଆଙ୍କେ । ତାହା ଇତିହାସର କାମ । ସାହିତ୍ୟ ମଧ୍ୟ ବେଳେ ବେଳେ, ପ୍ରସଙ୍ଗାନୁରୋଧରେ ଅତୀତର ଛବି ଆଙ୍କେ । ତେବେ ସାହିତ୍ୟ ଆଙ୍କୁଥିବା ଅତୀତର ଛବି ସଂପୂର୍ଣ୍ଣ ଭାବରେ ସ୍ୱାଧୀନ ଓ ସ୍ୱଂୟସଂପୂର୍ଣ୍ଣ ହୋଇପାରେ ନାହିଁ ଓ ହେବା ମଧ୍ୟ ଉଚିତ ନୁହେଁ । ଇତିହାସ ଆଙ୍କୁଥିବା ଅତୀତର ଛବିକୁ ମୂଳତଃ ଆଶ୍ରୟ କରି ଇତିହାସର ଛବି ଉପରେ ନିର୍ଭର କରି ସାହିତ୍ୟରେ ଅତୀତର ଛବି ଅଙ୍କିତ ହୁଏ । ଆଉ ତା ମଧ୍ୟ ସ୍ପୃହଣୀୟ । ଅବଶ୍ୟ ଇତିହାସ ଆଙ୍କିଥିବା ଛବିକୁ

ଜୀବନ୍ତ କରିବାର, ତାକୁ ଜୀବନ୍ୟାସ ଦେବାର ଦାୟିତ୍ୱ ଓ ଅଧିକାର ସାହିତ୍ୟର ରହିଛି । ପୁଣି ସେ ପ୍ରସଙ୍ଗରେ ଇତିହାସକୁ ନୂତନ ଦୃଷ୍ଟିକୋଣରୁ ଦେଖି ତାକୁ ନୂତନ ରୂପେ ବ୍ୟାଖ୍ୟା (re-interpretation of history) ସାହିତ୍ୟ ବି କରିପାରେ । ସେହିପରି ଅତୀତର ଛବି ଆଙ୍କିବା ବେଳେ ଇତିହାସ ଯେଉଁଠାରେ ଶୂନ୍ୟସ୍ଥାନ ଛାଡ଼ିଯାଇଛି, ସେଠାରେ କଳ୍ପନା ବଳରେ ଶୂନ୍ୟସ୍ଥାନ ପୂରଣ କରିବାର ଅଧିକାର ମଧ୍ୟ ସାହିତ୍ୟର ରହିଛି । ଅବଶ୍ୟ ପୂର୍ବାପର ସଙ୍ଗତିକୁ ବିଚାରକୁ ନେଇ ଓ ପ୍ରକୃତ ଘଟଣା ସହ କାଳ୍ପନିକ ଘଟଣାକୁ ଖାପ ଖୁଆଇ ହିଁ ଏ ଶୂନ୍ୟସ୍ଥାନଗୁଡ଼ିକୁ ପୂରଣ କରିବା ଉଚିତ । ନଚେତ୍ ଶୂନ୍ୟସ୍ଥାନ ପ୍ରକୃତରେ ପୂରଣ ହୁଏନାହିଁ; ଚିତ୍ରଟି ଖାପଛଡ଼ା ଧରେ । ପୁଣି କଳ୍ପନା ବଳରେ ଶୂନ୍ୟସ୍ଥାନକୁ ପୁରଣ ନ କଲେ ବା କରିବାପାଇଁ ଅସମର୍ଥ ହେଲେ ଚିତ୍ରଟି – ଏପରି କି ଶୂନ୍ୟସ୍ଥାନଟି ପୃଷ୍ଠପଟର ଅନ୍ତର୍ଗତ ହୋଇଥିଲେ ମଧ୍ୟ – ଖଣ୍ଡିତ ରହିବାକୁ ବାଧ୍ୟ ହୁଏ । ଇତିହାସରେ ଚିତ୍ର ଖଣ୍ଡିତ ରହିପାରେ; ତଥ୍ୟ ନ ମିଳିଲେ ଇତିହାସରେ ଚିତ୍ର ଖଣ୍ଡିତ ହିଁ ରହେ । କିନ୍ତୁ ସାହିତ୍ୟରେ କୌଣସି ଚିତ୍ର ଖଣ୍ଡିତ ରହେନାହିଁ କି ରହିବା ଉଚିତ ମଧ୍ୟ ନୁହେଁ ।

କିନ୍ତୁ ଇତିହାସ ପ୍ରଦତ୍ତ ଅତୀତର ଚିତ୍ରକୁ ସାହିତ୍ୟ ପ୍ରଦତ୍ତ ଅତୀତର ଚିତ୍ର ବିରୋଧ କରିବା କେତେଦୂର ଉଚିତ ? ଇତିହାସକୁ ପରିବର୍ତ୍ତନ କରିବାର ଅଧିକାର ସାହିତ୍ୟର ଅଛି କି ? ପୁଣି ତା ଯଦି ଆଧୁନିକ ଯୁଗର ଇତିହାସ ହୁଏ । ଐତିହାସିକ ସତ୍ୟର ଅପଳାପ କରିବା କେତେଦୂର ସଙ୍ଗତ ଓ ସ୍ପୃହଣୀୟ ? (ପୁଣି ତା ଯଦି ପ୍ରାମାଣିକ ତଥ୍ୟଭିତ୍ତିକ ଐତିହାସିକ ସତ୍ୟ ହୋଇଥାଏ ।) ଅବଶ୍ୟ କଳାଗତ ଉତ୍କର୍ଷ ସାଧନ କରିବା ପ୍ରସଙ୍ଗରେ ଓ ନିତାନ୍ତ ଆବଶ୍ୟକ ସ୍ଥଳେ ଇତିହାସ ପ୍ରଦତ୍ତ ଚିତ୍ରକୁ ପରିବର୍ତ୍ତିତ କରିଦେଲେ ବା ଐତିହାସିକ ସତ୍ୟର ଅପଳାପ କଲେ ତା', ଦୋଷାବହ ହୋଇଥିଲେ ହେଁ, କ୍ଷମଣୀୟ ବୋଲି କେତେକ ମତ ଦିଅନ୍ତି । କିନ୍ତୁ କଳାଗତ ଉତ୍କର୍ଷ ସାଧନ ରୂପକ କାରଣ ବ୍ୟତିରେକେ ଇତିହାସକୁ ପରିବର୍ତ୍ତନ କରିଦେବାର କୌଣସି ଅଧିକାର ସାହିତ୍ୟର ନାହିଁ- ଏହି ତତ୍ତ୍ୱର ଭିତ୍ତିଭୂମି ଉପରେ ହିଁ ଏ ପ୍ରବନ୍ଧ ପରିକଳ୍ପିତ ।

## (ଖ)

'ଶତାବ୍ଦୀର ସୂର୍ଯ୍ୟ' ଏକ ଚରିତୋପାନ୍ୟାସ ଭାବରେ ପରିକଳ୍ପିତ ଓ "ଊନବିଂଶ ଶତାବ୍ଦୀରେ ଓଡ଼ିଶାର ନବ-ଜାଗରଣ ଓ ସେଥିରେ ମଧୁସୂଦନଙ୍କ ଭୂମିକା ଏହାର ବିଷୟବସ୍ତୁ ।" ତେଣୁ "ଇଂ ୧୮୦୩ରେ ଇଂରେଜମାନଙ୍କଦ୍ୱାରା ଓଡିଶା ଅଧିକାର ଓ ଓଡିଆ ଜାତୀୟତାର ଚରମ ବିପର୍ଯ୍ୟୟଠାରୁ ଇଂ ୧୯୦୩ରେ ଉତ୍କଳ-ସମ୍ମିଳନୀ ମଣ୍ଡପରୁ

ଓଡିଆ ଜାତୀୟତାର ନବଜନ୍ମ ଘୋଷଣା ପର୍ଯ୍ୟନ୍ତ, ଦୀର୍ଘ ଏକ ଶତାବ୍ଦୀ କାଳର ଇତିହାସ, ମଧୁସୁଦନ (ଜନ୍ମ ଇଂ୧୮୪୮)ଙ୍କ ଜୀବନୀ ସୂତ୍ରରେ ଏଥିରେ ଗ୍ରଥିତ ହୋଇଅଛି।" ବୋଲି ଲେଖକ ପ୍ରଥମ ସଂସ୍କରଣର ଭୂମିକାରେ ଦାବି କରିଥିଲେ ମଧ ପ୍ରକୃତ ପକ୍ଷେ ୧୮୪୮ରେ ମଧୁସୁଦନଙ୍କ ଜନ୍ମଠାରୁ ୧୯୦୩ ପର୍ଯ୍ୟନ୍ତ ସମୟର ଭିତ୍ତିଭୂମି ଉପରେ ଏହା ରଚିତ। କାରଣ ୧୮୦୩ରୁ ୧୮୪୮ ପର୍ଯ୍ୟନ୍ତ ସମୟର ଚିତ୍ରପାଇଁ ସେ ମାତ୍ର ଗୋଟିଏ ପରିଚ୍ଛେଦ (ମୋଟ ୭୦୭ ପୃଷ୍ଠାରୁ ୨୩ ପୃଷ୍ଠା/୫୫୨ ପୃଷ୍ଠାରୁ ୧୯ ପୃଷ୍ଠା ମାତ୍ର) ଦେଇଛନ୍ତି। ୧୮୪୮ରୁ ୧୯୦୩ ପର୍ଯ୍ୟନ୍ତ ସମୟପାଇଁ ଅବଶିଷ୍ଟ ୨୭ଟି ପରିଚ୍ଛେଦ ଦିଆଯାଇଛି।

ଲେଖକ ପୁଣି ଦାବି କରନ୍ତି, "'ଶତାବ୍ଦୀର ସୂର୍ଯ୍ୟ' ପ୍ରକାଶିତ ହେବାପରେ ଊନବିଂଶ ଶତାବ୍ଦୀର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଇତିହାସ ଉପରେ ପ୍ରଥମଥରପାଇଁ ଆଲୋକପାତ ହୋଇଥିଲା। ଇତିପୂର୍ବରୁ ସେ ସମ୍ପର୍କରେ କୌଣସି ନିର୍ଭରଯୋଗ୍ୟ ପ୍ରାମାଣିକ ଗ୍ରନ୍ଥ ନଥିଲା।" (ଦ୍ୱିତୀୟ ସଂସ୍କରଣର ଭୂମିକା)। ଏ ଉକ୍ତି କିନ୍ତୁ ସମ୍ପୂର୍ଣ୍ଣ ଭାବରେ ସତ୍ୟ ନୁହେଁ। ଇଂରାଜୀରେ ଲିଖିତ ଭବାନୀ ଚରଣ ରାୟଙ୍କ Foundation of British Orissa, (୧୯୬୦), ପ୍ରଭାତ ମୁଖାର୍ଜୀଙ୍କ Utkal University History of Orissa, Vol. VI (୧୯୬୪), ହରେକୃଷ୍ଣ ମହତାବଙ୍କ ସମ୍ପାଦନାରେ ପ୍ରସ୍ତୁତ History of Freedom Movement in Orissaର ପ୍ରଥମ ଦୁଇଟି ଭାଗ, ଶ୍ରୀ ସୁଶୀଳ ଚନ୍ଦ୍ର ଦେ'ଙ୍କ Guide to Orissan Recordsର କେତୋଟି ଭାଗ ଓ ଓଡ଼ିଆରେ ଲିଖିତ ଡ଼କ୍ଟର ନଟବର ସାମନ୍ତରାୟଙ୍କ ଏକାଧିକ ପୁସ୍ତକ ବିଶେଷ ଭାବରେ ୧୯୬୪ରେ ପ୍ରକାଶିତ ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' (୧୮୦୩-୧୯୨୦) ଆଦିରେ ଊନବିଂଶ ଶତକରେ ଓଡ଼ିଶାର ରାଜନୀତିକ ଆର୍ଥନୀତିକ, ସାମାଜିକ ଓ ସାଂସ୍କୃତିକ ଜୀବନ ଧରି ରଖିବାର ପ୍ରାଥମିକ ଉଦ୍ୟମସବୁ ହୋଇଥିଲା। 'ଶତାବ୍ଦୀର ସୂର୍ଯ୍ୟ' ସେହିପରି ଅନ୍ୟ ଏକ ଉଦ୍ୟମ। ଏଥିରେ ଅବଶ୍ୟ ଇତି ପୂର୍ବେ ଅଜ୍ଞାତ ଅନେକ ନୂତନ ତଥ୍ୟର ସମାହାର କରାଯାଇଛି। ତାହା ପୁଣି ପୂର୍ବୋକ୍ତ ପୁସ୍ତକଗୁଡ଼ିକ ଭିତ୍ତିରେ ଅଙ୍କା ଯାଇଥିବା ଊନବିଂଶ ଶତକର ଖଣ୍ଡିତ ଚିତ୍ରକୁ ପୂର୍ଣ୍ଣାଙ୍ଗ କରିବାରେ ପ୍ରଶଂସନୀୟ ଭୂମିକା ଗ୍ରହଣ କରିପାରିଛି। ଶେଷରେ ଦେଶପ୍ରାଣ ମଧୁସୂଦନଙ୍କ ଜୀବନୀ ସମ୍ପର୍କିତ ବହୁ ଅଜ୍ଞାତ ତଥ୍ୟର ଅନୁସନ୍ଧାନ ଓ ଆବିଷ୍କାର କରି ଲେଖକ ତାହାକୁ ଏ ପୁସ୍ତକରେ ପ୍ରଥମଥରପାଇଁ ଆଲୋକକୁ ଆଣିଛନ୍ତି। ଏହା ଫଳରେ ମଧୁସୂଦନଙ୍କ ବିରାଟ ଓ ବହୁମୁଖୀ କର୍ମମୟ ଜୀନବର କଳନା କରିବା ଅନେକ ପରିମାଣରେ ସହଜସାଧ ହୋଇ ପଡ଼ିଛି। "ସେଥିପାଇଁ

କେତେକ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶ୍ରେଣୀର ଛାତ୍ରମାନେ ଏହାକୁ ସେମାନଙ୍କ ଗବେଷଣା କାର୍ଯ୍ୟରେ ଆକର-ପୁସ୍ତକ ରୁପେ ଗ୍ରହଣ କରିଅଛନ୍ତି” ବୋଲି ଦ୍ୱିତୀୟ ସଂସ୍କରଣର ଭୂମିକାରେ ଲେଖକ ଯାହା ଦାବି କରିଛନ୍ତି, ତାହା ସମ୍ପୂର୍ଣ୍ଣ ଭାବରେ ସତ୍ୟ । କେବଳ ଛାତ୍ରମାନେ ନୁହଁନ୍ତି ପ୍ରବୀଣ ଅଧ୍ୟାପକମାନେ ମଧ୍ୟ ଏହାକୁ ଆକର ଗ୍ରନ୍ଥ ରୂପେ ଗ୍ରହଣ କରିଛନ୍ତି ।

ତେବେ ମୂଳରୁ କହିରଖିବା ଉଚିତ ଯେ କେବଳ ଊନବିଂଶ ଶତାବ୍ଦୀ ଓ/ବା ମଧୁସୂଦନଙ୍କ ଜୀବନ ସମ୍ପର୍କିତ ବହୁ ଅଜ୍ଞାତ ତଥ୍ୟର ଆବିଷ୍କାର ଓ ‘ଶତାବ୍ଦୀର ସୂର୍ଯ୍ୟ’ରେ ତା’ର ସଂଯୋଜନ ହେତୁ ନୁହେଁ, ସେସବୁ ତଥ୍ୟର ସାହାଯ୍ୟରେ କଳ୍ପନାର ରଙ୍ଗ ଦେଇ ଊନବିଂଶ ଶତକର ବିସ୍ତୃତ ପୃଷ୍ଠପଟ ଉପରେ ମଧୁସୂଦନଙ୍କର ଯେଉଁ ଉଜ୍ଜ୍ୱଳ ଆଲେଖ୍ୟ ସେ ଆଙ୍କିଛନ୍ତି ତା’ର ପ୍ରାଣୋଚ୍ଛଳ ଅଭିବ୍ୟକ୍ତି, ଦୀପ୍ତ ବର୍ଣ୍ଣଛଟା, ସ୍ୱାଭାବିକତା ଓ ଯାଦୁକରୀ ଆକର୍ଷଣରେ ରହିଛି ‘ଶତାବ୍ଦୀର ସୂର୍ଯ୍ୟ’ର ମହତ୍ତ୍ୱ ଓ ସାଫଲ୍ୟ । ତାଙ୍କ ଲେଖନୀ ମୂନରେ ପୃଷ୍ଠପଟ ରୂପରେ ପରିକଳ୍ପିତ ଊନବିଂଶ ଶତାବ୍ଦୀ କେବଳ ରୂପ ପରିଗ୍ରହ କରି ଜୀବନ୍ତ ରୂପେ ପାଠକର ଚକ୍ଷୁ ସମକ୍ଷରେ ଉଦ୍ଭାସିତ ହୋଇ ଉଠିନାହିଁ, ମଧୁସୂଦନ ମଧ୍ୟ ପୁଣି ରକ୍ତମାଂସର ଶରୀର ଧାରଣ କରି ସେଇ ରଙ୍ଗମଞ୍ଚ ଉପରେ ସତେ ଯେପରି ଆବିର୍ଭୂତ ହୋଇଛନ୍ତି । ସେଠାରେ ହିଁ ରହିଛି ‘ଶତାବ୍ଦୀର ସୂର୍ଯ୍ୟ’ର ସାର୍ଥକତା । ମୋଟଉପରେ ‘ଶତାବ୍ଦୀର ସୂର୍ଯ୍ୟ’ କେବଳ ଇତିହାସ ହୋଇ ରହିନାହିଁ, ପରିଣତ ହୋଇପାରିଛି ଏକ ସଫଳ ସାହିତ୍ୟ କୃତିରେ ।

(ଗ)

‘ଶତାବ୍ଦୀର ସୂର୍ଯ୍ୟ’ର ଲେଖକ ଦାବି କରିଛନ୍ତି, “... ଏହାର ପରିବେଷଣ ଶୈଳୀ ଉପନ୍ୟାସ-ସୁଲଭ ଥିଲେ ହେଁ ଇତିହାସ ପରି ଏହା କଠୋର ଭାବରେ ତଥ୍ୟନିଷ୍ଠ ।” ସାହିତ୍ୟର(ପ୍ରଥମ ସଂସ୍କରଣର ଭୂମିକା) । କେବଳ ସେତିକି ନୁହେଁ, ସେ ପରେ ପୁଣି କହନ୍ତି, “ଏହା ପ୍ରକାଶ ପାଇବା ପରେ ଓଡ଼ିଶାର ପାଠକ ସାଧାରଣ ଏହାକୁ ସଶ୍ରଦ୍ଧ ଅଭିନନ୍ଦନ ଜଣାଇ ଥିଲେ ହେଁ, କେହି କେହି ଦୋଷଦର୍ଶୀ ଏଥିରେ କେତେକ ତଥ୍ୟଗତ ତ୍ରୁଟି ରହି ଯାଇଥିବା ଆକ୍ଷେପ କରି ଅପପ୍ରଚାର ଚଳାଇ ଥିଲେ । ସେମାନଙ୍କ ଆକ୍ଷେପ, ଅପପ୍ରଚାରରେ ମୁଁ କ୍ଷୁବ୍ଧ ନ ହୋଇ, ବରଂ ସେମାନଙ୍କୁ କୃତଜ୍ଞତା ଜଣାଇ, ଯେଉଁ ସବୁ ତଥ୍ୟଗତ ତ୍ରୁଟି ସେମାନଙ୍କ ଦୃଷ୍ଟିକୁ ଆସିଛି, ତାହା ମୋତେ ଲେଖି ଜଣାଇବାପାଇଁ ରେଜିଷ୍ଟର୍ଡ଼ ପତ୍ର ଯୋଗେ ଅନୁରୋଧ କରିଥିଲି । ମାତ୍ର ମୋର ଦୁର୍ଭାଗ୍ୟ, ଯେଉଁ କେତେଜଣ ତଥାକଥିତ ତ୍ରୁଟି ଘେନି ଅପପ୍ରଚାର ଚଳାଇ ଥିଲେ, ସେମାନେ କେହି

ତଥ୍ୟଗତ ତ୍ରୁଟି ଦର୍ଶାଇବା ତ ଦୂରର କଥା, ମୋ' ପତ୍ରର ପ୍ରାପ୍ତି ସ୍ୱୀକାର ପର୍ଯ୍ୟନ୍ତ କରି ନଥିଲେ ।" (ଦ୍ୱିତୀୟ ସଂସ୍କରଣର ଭୂମିକା) । ଏଥିରୁ ମନେହୁଏ ଯେ ଏ ପୁସ୍ତକ ସମ୍ପୂର୍ଣ୍ଣ ଭାବରେ ତଥ୍ୟଗତ ତ୍ରୁଟିଶୂନ୍ୟ । ଅନ୍ତତଃ ଲେଖକ ସେ ସମ୍ପର୍କରେ ବିଶେଷ ଭାବରେ ସଚେତନ ବୋଲି ଧାରଣା ହୁଏ । ପାଠକ ଭାବେ ଯେ ସମ୍ପୂର୍ଣ୍ଣ ଭାବରେ ପ୍ରାମାଣିକ ଇତିହାସର ଭିତ୍ତିପ୍ରସ୍ତର ଉପରେ ହିଁ ଏ 'ଉପନ୍ୟାସ'ର ଅଟ୍ଟାଳିକା ଗଠିତ ।

କିନ୍ତୁ ଏଥିରେ କେତେକ ତଥ୍ୟଗତ ତ୍ରୁଟି ରହିଛି ଓ ଊନବିଂଶ ଶତକର ଚିତ୍ର ଅଂଶତଃ ଭୁଲ୍ ହୋଇଯାଇଛି । ଏହା ଅପ୍ରିୟ ହେଲେ ମଧ୍ୟ ସତ୍ୟ । ପୁଣି କଳାଗତ ଉତ୍କର୍ଷ ସାଧନ ଲକ୍ଷ୍ୟରେ ଏସବୁ ତ୍ରୁଟିକୁ ପ୍ରଶ୍ରୟ ଦିଆଯାଇନାହିଁ । କାରଣ ଏସବୁ ତ୍ରୁଟିକୁ ସଂଶୋଧନ କରିଦେଲେ ସାହିତ୍ୟକୃତିଟିର କଳାଗତ ମୂଲ୍ୟହାନି ହେବାର ସମ୍ଭାବନା ଆଦୌ ନାହିଁ । ବରଂ ଏସବୁ ଭିତରେ ଲେଖକଙ୍କର ତଥ୍ୟନିଷ୍ଠାର ଅଭାବ ଅଥବା କଳ୍ପନାର ପ୍ରବଣତା ପ୍ରତିଫଳିତ ହୋଇଛି । ଜଣେ ସର୍ଜନଶୀଳ ସାହିତ୍ୟିକ ପକ୍ଷରେ କଳ୍ପନାର ପ୍ରବଣତା ସ୍ପୃହଣୀୟ । ସଚେତନ ଭାବରେ 'ଚରିତୋପନ୍ୟାସ'ଟିଏ ଲେଖିଲା ବେଳେ ଇତିହାସ ଛାଡ଼ି ଯାଇଥିବା ଶୂନ୍ୟ ସ୍ଥାନକୁ କଳ୍ପନା ବଳରେ ପୂରଣ କରାଯାଇପାରେ । କିନ୍ତୁ କଳ୍ପନାର ଘୋଡ଼ାକୁ ଲଗାମଛଡ଼ା କରିବା ଉଚିତ ହୋଇନାହିଁ । ତଳେ ତାହାର କେତୋଟି ଉଦାହରଣ ଦିଆଯାଉଛି ।

ଯୁକ୍ତି କରାଯାଇ ପାରେ ଯେ, ଏକ ସାହିତ୍ୟକୃତି ବା କଳାକୃତିରେ ଏସବୁ ଏତେ ଧର୍ତ୍ତବ୍ୟ ନୁହେଁ । କିନ୍ତୁ ଏ କ୍ଷେତ୍ରରେ ଇତିହାସ ତୁଳନାରେ ସାହିତ୍ୟକୃତିର ଦାୟିତ୍ୱ ଅନେକ ଅଧିକ । କାରଣ ଏହା ଅଧିକ ଲୋକପ୍ରିୟ ଓ ତୁଳନାତ୍ମକ ଭାବରେ ଅଧିକ ଲୋକଙ୍କ ନିକଟରେ ପହଞ୍ଚିବ; ପୁଣି ପରିବେଷଣ ଶୈଳୀର ସରସତା ହେତୁ ଏହା ସେମାନଙ୍କ ମନ ଉପରେ ଅଧିକ ପ୍ରଭାବ ପକାଇବ । 'ଶତାବ୍ଦୀର ସୂର୍ଯ୍ୟ' ଉପନ୍ୟାସ ପରି ସାହିତ୍ୟର ଏକ ଅତ୍ୟନ୍ତ ଲୋକପ୍ରିୟ ବିଭାଗର ଅନ୍ତର୍ଭୁକ୍ତ ହୋଇଥିବାରୁ ଓ ଏହାର ବିଶେଷ ସାଫଲ୍ୟ ହେତୁ (ଓ ଏ ମଧ୍ୟରେ ପ୍ରମାଣିତ ଜନପ୍ରିୟତା ହେତୁ) ଏହାର ପାଠକ ସଂଖ୍ୟା ବେଶ୍ ଅଧିକ । ସେଇ ସାଫଲ୍ୟ ହେତୁ ହିଁ ଏହାର ବର୍ଣ୍ଣନା ମନ ଉପରେ ବେଶ୍ ରେଖାପାତ କରେ । ତେଣୁ ଏଥିରେ ସତ୍ୟର ଅପଳାପ ଘଟିବା ଠିକ୍ ହୋଇନାହିଁ । ସେଥିରେ ପୁଣି ଏହା ଏକ ଆକର-ଗ୍ରନ୍ଥ ରୂପେ ସମ୍ମାନିତ ଓ ଲେଖକ ଏହାକୁ କଠୋର ଭାବେ ତଥ୍ୟ ଓ ସତ୍ୟନିଷ୍ଠ ବୋଲି, ତଥ୍ୟଗତ ତ୍ରୁଟିଶୂନ୍ୟ ବୋଲି ଦାବି ବି କରନ୍ତି । ତେଣୁ ପାଠକ ଏହାର ବର୍ଣ୍ଣନା ଓ ବିବରଣକୁ ନିର୍ବିବାଦରେ ନିର୍ଭୁଲ ବୋଲି ଗ୍ରହଣ କରେ । କିନ୍ତୁ ଏହା ବହୁ ସ୍ଥାନରେ ଊନବିଂଶ ଶତକର ଭୁଲ୍ ଚିତ୍ର ହିଁ ଦିଏ । ଯଥା:-

(୧) 'ଶତାବ୍ଦୀର ସୂର୍ଯ୍ୟ'ରେ (୩/୧) ଅଛି "... ଭାଇସରାୟ ଲର୍ଡ଼ ହାର୍ଡିଂଙ୍କଙ୍କ ଶାସନ କାଳରେ .... ଇଂ ୧୮୪୪ ସାଲରେ ....." ଇତ୍ୟାଦି (ପୃ.୪୫/୩୬)। ମାତ୍ର ଏଇ ହାର୍ଡ଼ିଂଜ୍ ଭାଇସରାୟ ଥିଲେ କି ? ଭାରତ ଶାସନ କ୍ଷେତ୍ରରେ ଭାଇସରାୟ ପଦବୀ ପ୍ରଚଳିତ ହେଲା ୧୮୫୭ର ସିପାହୀ ବିଦ୍ରୋହ ପରେ ।

(୨) ମଧୁସୂଦନଙ୍କ କଲିକତା ପ୍ରବାସ ପ୍ରସଙ୍ଗରେ (୫/୩) ଏଥିରେ କୁହାଯାଇଛି ଯେ "ଡ଼ାଭିଡ୍ ହେଆର୍‌ଙ୍କ ଉଦ୍ୟମ ଓ ରାମମୋହନ ରାୟଙ୍କ ସହଯୋଗିତାରେ" କଲିକତାର "ହିନ୍ଦୁ କଲେଜ" ୧୮୨୩ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ହୋଇଥିଲା (ପୃ.୯୭/୭୭)। କିନ୍ତୁ ହିନ୍ଦୁ କଲେଜ ସ୍ଥାପନର ଉଦ୍ୟମ ୧୮୧୬ରେ ଆରମ୍ଭ ହୋଇଥିଲା ଓ ୧୮୧୭ ଜାନୁଆରୀ ୨୦ ତାରିଖରେ କଲେଜ ପ୍ରଥମ ଥରପାଇଁ ଖୋଲିଥିଲା (ଦ୍ର : De, S.K. 1962, pp. 466, 480)। ଏ ସମ୍ପର୍କରେ ସ୍ମରଣ ରଖିବା ଉଚିତ ଯେ ଏ କଲେଜର ସ୍ଥାପନରେ ରାମମୋହନ ରାୟ ସମ୍ପୃକ୍ତ ଥିଲେ ବୋଲି କୌଣସି ପ୍ରମାଣ ନାହିଁ ଓ କେତେକ ଗବେଷକ ସେ ମତ ପରିତ୍ୟାଗ କଲେଣି ।

(୩) ମଧୁସୂଦନଙ୍କ କଲିକତା ପ୍ରବାସ ଓ ଉଚ୍ଚଶିକ୍ଷା ପ୍ରସଙ୍ଗରେ ଏ ଗ୍ରନ୍ଥ ପୁଣି କହେ (୫/୩), "ହିନ୍ଦୁ କଲେଜରେ ନାମ ଲେଖାଇବାରେ ସାହାଯ୍ୟପାଇଁ ମଧୁସୂଦନ ସେତେବେଳେ ଏହାର ପରିଚାଳନା ସମିତିର ବିଶିଷ୍ଟ ହିନ୍ଦୁ ନେତାମାନଙ୍କର ଦ୍ୱାରସ୍ଥ ହୋଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ, ଶୋଭାବଜାରର 'ରାଜା' ରାଧାକାନ୍ତ ଦେବ । କଲିକତା ହିନ୍ଦୁ ସମାଜର ସେ ଥିଲେ ସେ ବେଳର ଜଣେ ବିଶିଷ୍ଟ ସମାଜପତି, ପୁଣି ହିନ୍ଦୁ-କଲେଜ ପରିଚାଳନା ସମିତିର ଅନ୍ୟତମ ସର୍ବମୟ କର୍ତ୍ତା । ମାତ୍ର 'ଉଡ଼ିଷ୍ୟା'ରୁ ଆସିଥିବା ଶିକ୍ଷାପିପାସୁ ଏହି ଦୁଃସାହସିକ ତରୁଣ ପ୍ରତି କୌଣସିଠାରୁ ସେଦିନ କୌଣସି ସହାନୁଭୂତି ମିଳି ନ ଥିଲା" (ପୃ.୯୮/୭୮)। ଏହା ପାଠ କଲେ ମନସ୍ୱୀ ଓ ଦାନୀ ରାଜା ରାଧାକାନ୍ତଙ୍କ ପ୍ରତି ମନରେ ବିରୂପ ଧାରଣା ସୃଷ୍ଟି ହୁଏ । ମାତ୍ର ପ୍ରକୃତପକ୍ଷେ ରାଧାକାନ୍ତ ଦେବ ସେତେବେଳେ କଲିକତାରେ ବାସ କରୁନଥିଲେ । ସେ ୧୮୬୪ରେ ସୁଦୀର୍ଘ କର୍ମ-ଜୀବନରୁ ଅବସର ଗ୍ରହଣ କରି ବୃନ୍ଦାବନ ଯାତ୍ରା କରିଥିଲେ ଓ ସେଠାରେ ବାସ କରୁଥିଲେ । ବୃନ୍ଦାବନରେ ୧୮୬୭ ଏପ୍ରିଲ ମାସରେ ତାଙ୍କର ଦେହାନ୍ତ ହୋଇଥିଲା (ଦ୍ର: ବାଗଲ, ଯୋଗେଶଚନ୍ଦ୍ର, ୧୯୫୭, ରାଧାକାନ୍ତ ଦେବ, ସାହିତ୍ୟସାଧକ ଚରିତମାଳା-୨୦, ପୃ.୪୯)। କେବଳ ସେତିକି ନୁହେଁ, ଏହାର ବହୁ ପୂର୍ବରୁ ୧୮୫୦ରେ ଜଣେ ଛାତ୍ରର ଖ୍ରୀଷ୍ଟଧର୍ମ ଗ୍ରହଣକୁ ବିରୋଧ କରି ସେ ହିନ୍ଦୁ କଲେଜର ପରିଚାଳନା ସମିତି ସହ ସମ୍ପର୍କ ଛିନ୍ନ କରିଥିଲେ (ତତ୍ରୈବ, ପୃ.୧୬-୧୭)। ତେଣୁ

ମଧୁସୂଦନ ତାଙ୍କର ଦ୍ୱାରସ୍ଥ ହେବା ଓ ସେ ସାହଯ୍ୟ ନ କରିବା ପ୍ରଭୃତି ମନଗଢା କଥା 'ଶତାବ୍ଦୀର ସୂର୍ଯ୍ୟ'ରେ ସ୍ଥାନ ପାଇବା ଉଚିତ ହୋଇନାହିଁ । ଏଠାରେ କିଛିଟା ଅବାନ୍ତର ହେଲେ ମଧ୍ୟ ସୂଚାଇ ଦିଆଯାଇପାରେ ଯେ ହିନ୍ଦୁ ସମାଜର ରକ୍ଷଣଶୀଳମାନଙ୍କର ନେତା ଭାବରେ ପରିଚିତ ଏଇ ରାଧାକାନ୍ତ ଦେବଙ୍କ ପ୍ରତି ଖ୍ରୀଷ୍ଟିୟାନ ମଧୁସୂଦନଙ୍କ ହୃଦୟରେ ବୋଧହୁଏ ଏକ କୋମଳ ସ୍ଥାନ ଥିଲା । କାରଣ ସତୀ ପ୍ରଥାକୁ ସମର୍ଥନ ଜଣାଇ ପ୍ରିଭିକାଉନ୍‌ସିଲକୁ ଆବେଦନ କରିବାରେ ସେ ହିଁ ନେତୃତ୍ୱ ନେଇଥିଲେ । ଲେଖକ ସେଇ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ, "ଚିତାନଳ ମଧ୍ୟରେ ଗୋଟିଏ ଆଦର୍ଶପାଇଁ ପ୍ରପୀତାମହୀଙ୍କ ନିଷ୍କମ୍ପ ଆତ୍ମୋତ୍ସର୍ଗର ଉଦ୍‌ବୋଧନ ମଧୁସୂଦନଙ୍କୁ ଜୀବନର ଶତ ଝଡଝଞ୍ଜା ମଧ୍ୟରେ ଏକ ନିଷ୍କମ୍ପ ଦୀପଶିଖାରେ ପରିଣତ କରିପାରିଥିଲା । ମଧୁସୂଦନ ଉଚ୍ଚ ଇଂରାଜୀ ଶିକ୍ଷାପ୍ରାପ୍ତ, ପୁଣି ଭାରତୀୟ ରିନେସାଁ ଓ ୟୁରୋପୀୟ ବୈଜ୍ଞାନିକ ହେତୁବାଦ ତଥା ଯନ୍ତ୍ରବିପ୍ଳବର ଘନିଷ୍ଠ ସମ୍ପର୍କରେ ଆସିଥିଲେ ସୁଦ୍ଧା ଏକ ଆଦର୍ଶପାଇଁ ହିନ୍ଦୁ ନାରୀର ଏଇ ପରମ ଆତ୍ମୋତ୍ସର୍ଗର ଜ୍ୱାଳାମୟୀ ପ୍ରଭାବରୁ ନିଜକୁ ମୁକ୍ତ କରିପାରିନଥିଲେ ।" ଇତ୍ୟାଦି ଇତ୍ୟାଦି (୧/୪, ପୃ.୧୪-୧୫) । କହିଦେବାର ଅଛି, ହିନ୍ଦୁ କଲେଜ ଏତେବେଳକୁ ସମ୍ପୂର୍ଣ୍ଣ ଭାବରେ ସରକାରୀ ପ୍ରେସିଡ଼େନ୍‌ସି କଲେଜରେ ପରିଣତ ହୋଇସାରିଥିଲା ।

(୪) ଲେଖକ 'ଉତ୍କଳ ଦୀପିକା' ସମ୍ପର୍କରେ କହିଛନ୍ତି (୫/୬), "...୧୮୬୫ ସାଲ ଅଗଷ୍ଟ ମାସରେ ଏହାର ପ୍ରଥମ ସଂଖ୍ୟା କଟକ ପ୍ରିଣ୍ଟିଂ କୋମ୍ପାନୀ ପ୍ରେସରୁ ପ୍ରକାଶ ପାଇଥିଲା" (ପୃ.୧୧୦/୮୭-୮୮) କିନ୍ତୁ ଯାହା ଜଣାଯାଏ, 'ଉତ୍କଳ ଦୀପିକା' ପ୍ରଥମେ ପ୍ରକାଶ ପାଏ ୧୮୬୬ ଖ୍ରୀଷ୍ଟାବ୍ଦରେ । ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ ଅନ୍ତର୍ଗତ ମୃତ୍ୟୁଞ୍ଜୟ ରଥଙ୍କ 'କର୍ମଯୋଗୀ ଗୌରୀଶଙ୍କର'ରେ ମଧ୍ୟ ଅନୁରୂପ ଭ୍ରମ ରହିଅଛି । ଏ କ୍ଷେତ୍ରରେ ଲେଖକ ତାହା ଉପରେ ନିର୍ଭର କରିଥିବାର ଅନୁମିତ ହୁଏ । ତେବେ ଲେଖକ ମଧ୍ୟ ଅନ୍ୟତ୍ର (୮/୧) ଲେଖିଛନ୍ତି ଯେ 'ଉତ୍କଳ ଦୀପିକା' ୧୮୬୬ ସାଲର ନ'ଅଙ୍କ ଦୁର୍ଭିକ୍ଷ ପରେ ପ୍ରଥମେ ପ୍ରକାଶ ପାଇଥିଲା (ପୃ. ୧୮୯/୧୪୭) ।

(୫) 'ଶତାବ୍ଦୀର ସୂର୍ଯ୍ୟ'ରେ (୬/୨) ଅଛି, "ମଧୁସୂଦନ ଏଣେ ବାଇବେଲ କ୍ଲାସରେ ଯୋଗଦେବା ପରେ 'ୟଙ୍ଗ୍ ବେଙ୍ଗଲ୍' ଗୋଷ୍ଠୀର ଡ଼ିବେଟିଙ୍ଗ୍ ସୋସାଇଟୀ ଓ ଆକାଡ଼େମିକ୍ ଆସୋସିଏସନ୍ ପ୍ରଭୃତି ଅନୁଷ୍ଠାନ ସହିତ ଯେତିକି ଘନିଷ୍ଠ ଭାବରେ ସମ୍ପୃକ୍ତ ହୋଇ ପଡୁଥିଲେ, 'ୟଙ୍ଗ୍ ବେଙ୍ଗଲ୍' ପ୍ରତି ଧୀରେ ଧୀରେ ତାଙ୍କର ସେତିକି ମୋହଭଙ୍ଗ ଘଟୁଥିଲା ।" (ପୃ.୧୨୪/୯୮) । କିନ୍ତୁ ମଧୁସୂଦନ କଲିକତା ଆସିବାର ବହୁ ପୂର୍ବରୁ, ୧୮୩୯ରେ ଡ଼ିରୋଜିଓଙ୍କଦ୍ୱାରା ପ୍ରତିଷ୍ଠିତ 'ଆକାଡ଼େମିକ୍ ଆସୋସିଏସନ୍'

ନାମକ ଡ଼ିବେଟିଂ-କ୍ଲବର ବିଲୋପ ସାଧନ ଘଟିସାରିଥିଲା (ଦ୍ର: De, S.K. 1962, pp.489-90 and p.490., f.n. No. 1) ।

(୬) ମଧୁସୂଦନଙ୍କ କଲିକତା ପ୍ରବାସ ପ୍ରସଙ୍ଗରେ ଏ ପୁସ୍ତକର ବିଭିନ୍ନ ପରିଚ୍ଛେଦରେ 'ୟଙ୍ଗ୍ ବେଙ୍ଗଲ' ଗୋଷ୍ଠୀର ଉଲ୍ଲେଖ କରାଯାଇଛି । ସେଥିରୁ 'ୟଙ୍ଗ୍ ବେଙ୍ଗଲ' ଗୋଷ୍ଠୀର ଭୂମି ଓ ଭୂମିକା ସମ୍ପର୍କରେ ଲେଖକଙ୍କର ସ୍ପଷ୍ଟ ଧାରଣା ନ ଥିବାର ମନେହୁଏ । ଡ଼ିରୋଜିଓଙ୍କ ଏହି ଶିଷ୍ୟଗୋଷ୍ଠୀ ହିନ୍ଦୁଧର୍ମର ପୌତ୍ତଳିକତା, ପୁରୋହିତ-ବାଦ ଓ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ହେଁ, ଖ୍ରୀଷ୍ଟଧର୍ମର ଆଦୌ ନିକଟବର୍ତ୍ତୀ ନ ଥିଲେ । ପ୍ରସଙ୍ଗକ୍ରମେ ଯୋଗେଶଚନ୍ଦ୍ର ବାଗଲ ଲେଖିଛନ୍ତି, "ହିନ୍ଦୁ ଧର୍ମେର ନ୍ୟାୟ ଖ୍ରୀଷ୍ଟଧର୍ମେର ପ୍ରତି ଓ ନବ୍ୟଦଲେର ବିରୋଧିତା ଖୁବ୍ ଇ ସ୍ପଷ୍ଟ ହଇୟା ଉଠେ ।" (ବାଗଲ, ଯୋଗେଶଚନ୍ଦ୍ର, ୧୩୮୩, ରାମକମଲ ସେନ, କୃଷ୍ଣମୋହନ ବନ୍ଦ୍ୟୋପାଧ୍ୟାୟ, ସାହିତ୍ୟସାଧକ ଚରିତମାଳା-୭୨, ପୃ.୩୭) । 'ୟଙ୍ଗ୍ ବେଙ୍ଗଲ'ଗୋଷ୍ଠୀ ମୂଳତଃ ଥିଲେ ହେତୁବାଦୀ (rationalist) । David Humeଙ୍କ ସଂଶୟବାଦ (scepticism) ମଧ୍ୟ ସେମାନଙ୍କୁ ପ୍ରଭାବିତ କରିଥିଲା । ସେମାନଙ୍କର ଶାସ୍ତ୍ର ନ ଥିଲା । ସେମାନେ ନିଜକୁ ସତ୍ୟର-ପୂଜାରୀ ବୋଲି କହୁଥିଲେ । ଖ୍ରୀଷ୍ଟାନ୍ ମିଶନାରୀମାନେ ଅବଶ୍ୟ ହିନ୍ଦୁ ସମାଜରେ ଡ଼ିରୋଜିଓଙ୍କ ପ୍ରଭାବଜନିତ ଚିତ୍ତବିକ୍ଷୋଭର ସୁଯୋଗ ନେବାକୁ ଚେଷ୍ଟା କରିଥିଲେ । S. K. Deଙ୍କ ଭାଷାରେ "The Christian Missionaries of Calcutta, in the mean time, headed by Duff, availed themselves of the growing unrest and arranged a series of lectures on Christianity at Duff's house at College Square, nearly opposit the Hindu College.", De, S. K. 1962, p. 491) । କିନ୍ତୁ ତା' ବୋଲି, "କଲିକତାର 'ୟଙ୍ଗ୍ ବେଙ୍ଗଲ' ଗୋଷ୍ଠୀରେ ସ୍ୱର୍ଗତ ଡ଼ିରୋଜିଓଙ୍କ ପଛକୁ ଆଲେକ୍‌ଜାଣ୍ଡର ଡ଼ଫ୍‌ଙ୍କ ନାମ ଏକ ଐନ୍ଦ୍ରଜାଲିକ ନାମ ଥିଲା ।" (ପୃ.୧୩୧/୧୦୩) ବୋଲି କହିବା (୭/୧) ବା ଏହି ଗୋଷ୍ଠୀ ସହ ମାଇକେଲ ମଧୁସୂଦନଙ୍କୁ ଜଡ଼ିତ କରାଇବା(ପୃ.୯୫/୭୬) କେତେଦୂର ଉଚିତ ? ଏଠାରେ ସ୍ମରଣ କରାଯାଇପାରେ ଯେ କେବଳ ବିବାହରୁ ଅବ୍ୟାହତି ପାଇବା ଓ ଇଂଲଣ୍ଡ ଯିବା ଉଦ୍ଦେଶ୍ୟରେ ହିଁ ମାଇକେଲ ମଧୁସୂଦନ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । କୃଷ୍ଣମୋହନ ବନ୍ଦ୍ୟୋପାଧ୍ୟାୟଙ୍କ ପରି ଡ଼ିରୋଜିଓଙ୍କଦ୍ୱାରା ପ୍ରଭାବିତ ଯୁବଗୋଷ୍ଠୀ ମଧ୍ୟରୁ କେତେକ ଯେପରି ପରବର୍ତ୍ତୀ କାଳରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ, ସେହିପରି ସେମାନଙ୍କ ମଧ୍ୟରୁ ଅନେକ ବ୍ରାହ୍ମଧର୍ମରେ ମଧ ଦୀକ୍ଷିତ ହୋଇଥିଲେ । David Kopf କହନ୍ତି, "It is not to be

wondered at, then, that fifty Bengali intellectuals offered themselves to Duff for Baptism, and that most of the other members of Young Bengal who decided that they wished to maintain their identity as Hindus joined Debendranath Tagore in 1842 to revitalize the *Brahmo Samaj*." (Kopf, D., 1969, p.263) । ପୁଣି ପରବର୍ତ୍ତୀ କାଳରେ, ଡିରୋଜିଓଙ୍କ ମୃତ୍ୟୁ(୧୮୩୧)ର ପ୍ରାୟ ୩୫ ବର୍ଷ ପରେ, ଉତ୍କଳଗୌରବ ମଧୁସୂଦନ କଲିକତାରେ ପହଞ୍ଚିବା ବେଳକୁ ଅସ୍ତାୟମାନ ୟଙ୍ଗ୍ ବେଙ୍ଗଲର ଶେଷ ରଶ୍ମିଜାଲରେ କଲିକତାର ଆକାଶ ରଞ୍ଜିତ ହୋଇପାରିଥାଏ, କିନ୍ତୁ ସେଥିରେ ମଧ୍ୟାହ୍ନ ସୂର୍ଯ୍ୟର ଦୀପ୍ତି ଓ ଜ୍ୱଳନ ନଥିଲା । ତେଣୁ David Kopfଙ୍କ ଭାଷାରେ "Only recently, when scholars have, shifted to Young Bengal's mature years, their research has focused on a different kind of intelligentsia, one cultivating Bengali at the expence of English and struggling desperately to return to the cultural fold, but without losing its belief in modernization." (Kopf. D., 1969, p. 257) ।

(୭) 'ଶତାବ୍ଦୀର ସୂର୍ଯ୍ୟ' (୭/୧) ଅନୁଯାୟୀ ମଧୁସୂଦନ କଲିକତାରେ ଛାତ୍ରାବସ୍ଥାରେ ବିଖ୍ୟାତ ଖ୍ରୀଷ୍ଟଧର୍ମ ପ୍ରଚାରକ ଆଲେକ୍‌ଜାନ୍ତର ଡ଼ଫ୍‌ଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ ଓ ତାଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ (ପୃ.୧୩୦-୨/୧୦୩-୦୪) । କିନ୍ତୁ ମଧୁସୂଦନ କଲିକତାରେ ପହଞ୍ଚିବାର କେତେବର୍ଷ ପୂର୍ବରୁ ୧୮୬୩ ଖ୍ରୀଷ୍ଟାବ୍ଦରେ ଡ଼ଫ୍ (Duff) ଶେଷଥରପାଇଁ କଲିକତା ତଥା ଭାରତ ତ୍ୟାଗ କରିସାରିଥିଲେ (ଦ୍ର: De, S.K. 1962, p.579, f.n., No.2; The Dictionary of National Biography, OUP, Vol. VI, 1973, 125-128.) । ତେଣୁ ମଧୁସୂଦନ ଡ଼ଫ୍‌ଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ତାଙ୍କଦ୍ୱାରା ପ୍ରଭାବିତ ହୋଇଥିବା ଠିକ୍ ନୁହେଁ । (ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ମଧ୍ୟ ତାଙ୍କର 'ଦେଶପ୍ରାଣ ମଧୁସୂଦନ' ଗ୍ରନ୍ଥରେ ଠିକ୍ ଏଇ ଭ୍ରମ କରିଛନ୍ତି ।)

(୮) 'ଶତାବ୍ଦୀର ସୂର୍ଯ୍ୟ'ର ଠାଏ (୭/୨) ଅଛି, "ବସ୍ତୀ ଭିତରେ ତ୍ରିନାଥ ମେଳା ନାଁ'ରେ ଅର୍ଦ୍ଧଲୁଆ ଖଞ୍ଜଣୀମାଡ଼ ସାଙ୍ଗକୁ ଗଞ୍ଜେଇ ଧୂଆଁର ଧୂମ୍ ଉଠିଥିଲା ।" (ପୃ.୧୪୬/୧୧୫) ଇତ୍ୟାଦି ଏହା ମଧୁସୂଦନଙ୍କ କଲିକତା ଜୀବନ ପରିପ୍ରେକ୍ଷୀରେ ଉଲ୍ଲିଖିତ । ମାତ୍ର ତ୍ରିନାଥ ମେଳାର ସୃଷ୍ଟି ଏହାର ବହୁ ପରେ ହୁଏ । ପଣ୍ଡିତ ନୀଳକଣ୍ଠଙ୍କ ବକ୍ତବ୍ୟ ଅନୁଯାୟୀ କଟକର ଜଣେ ବହିଦୋକାନୀ ପଦନ ସାହୁ ପ୍ରାୟ ୧୯୦୨-୦୩ ବେଳକୁ ଏହାର ଅୟମାରମ୍ଭ କରନ୍ତି । ପରେ ବଡ ଖେମୁଣ୍ଡିର ରାଜା କୃପାମୟ ଦେବ ପଣ୍ଡିତ ସୁଦର୍ଶନ ମିଶ୍ରଙ୍କ ସହାୟତାରେ ଏହାକୁ ପ୍ରାଚୀନ ପୁରାଣର ରୂପରେ ସଂସ୍କୃତରେ ଅନୁବାଦ

କରାଇ ଛପାଇ ଥିଲେ (ଦାସ, ପଣ୍ଡିତ ନୀଳକଣ୍ଠ, ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ୨/୮, ନୀଳକଣ୍ଠ ଗ୍ରନ୍ଥାବଳୀ, ୩ୟ ଖଣ୍ଡ, ୧୯୬୭, ପୃ. ୩୭୭-୭୮)।

(୯) ମଧୁସୂଦନଙ୍କ ଏମ୍.ଏ. ପରୀକ୍ଷା ଫଳ ବାହାରିବା ପ୍ରସଙ୍ଗରେ ଏ ପୁସ୍ତକରେ (୭/୫) ଅଛି, "'ନାସନାଲ୍ ଥିଏଟର୍'ରେ ନାଟ୍ୟକାର କିରଣଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟଙ୍କ 'ଭାରତମାତା' ନାଟକର ଅଭିନୟ ଓ ସେଥିରେ ଦ୍ୱିଜେନ୍ଦ୍ରନାଥ ଠାକୁରଙ୍କ ସଙ୍ଗୀତ, କଲିକତାର ବିଦ୍‌ଗଧ ସମାଜରେ ସେତେବେଳେ ଏକ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଥିଲା ।" (ପୃ.୬୨/୧୨୭/୨୮)। ଏଥିରୁ ଧାରଣା ହୁଏ ଯେ, ନାସନାଲ୍ ଥିଏଟର୍‌ରେ ସେତେବେଳେ ପ୍ରାୟ ପ୍ରତିଦିନ 'ଭାରତମାତା' ନାଟକର ଅଭିନୟ ହୋଉଥିଲା । ଏହା ୧୮୭୩ର ଘଟଣା । କିନ୍ତୁ ପ୍ରକୃତ ପକ୍ଷେ ୧୮୭୩ରେ କେବଳ ଥରକପାଇଁ 'ଭାରତମାତା' ନାଟକର ଅଭିନୟ ହୋଇଥିଲା । ତା' ହେଉଛି ଫେବୃଆରୀ ମାସର ୧୮ ତାରିଖ (ଦ୍ର: ବନ୍ଦ୍ୟୋପାଧ୍ୟାୟ, ବ୍ରଜେନ୍ଦ୍ରନାଥ, ୧୯୫୪, ବଙ୍ଗୀୟ ନାଟ୍ୟଶାଳା, ବିଶ୍ୱଭାରତୀ, ବିଶ୍ୱବିଦ୍ୟାସଂଗ୍ରହ-୧୫, ପୃ. ୪୫)। ଏହା ଅବଶ୍ୟ ସଫଳ ହୋଇଥିଲା ଓ ବୁଦ୍ଧିଜୀବୀ ମହଲରେ କିଛିଟା ଆଲୋଡ଼ନ ସୃଷ୍ଟି କରିଥିଲା (ତତ୍ରୈବ, ପୃ.୪୦)। ଏଠାରେ ସୂଚାଇଦେବା ଆବଶ୍ୟକ ଯେ ପ୍ରଥମେ ନାସନାଲ୍ ଥିଏଟର୍‌ରେ କେବଳ ଶନିବାର ଦିନ ଅଭିନୟ ହେଉଥିଲା । କିନ୍ତୁ ଜାନୁଆରୀ ୧୧ ତାରିଖଠାରୁ ତା ସହ ବୁଧବାର ଦିନ ଅଭିନୟ କରାଯିବା ଉଦ୍ୟମ ମଧ୍ୟ ହେଲା । ଏ ସିଜିନ୍‌ରେ ସବୁଠାରୁ ଅଧିକ ଅଭିନୟ ହୋଇଥିଲା 'ନୀଳ ଦର୍ପଣ' ନାଟକର, ମୋଟରେ ଚାରି ଥର । ପୁଣି ୧୮୭୩ରେ ନାସନାଲ୍ ଥିଏଟର୍‌ଗୋଷ୍ଠୀରୁ ବାହାରିଯାଇ କିରଣଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ପ୍ରମୁଖ ହିନ୍ଦୁ ନାସନାଲ୍ ଥିଏଟର ଗଠନ କଲେ । ତେଣୁ ନାସନାଲ୍ ଥିଏଟରରେ ଆଉ 'ଭାରତମାତା' ଅଭିନୀତ ହେବାର ପ୍ରଶ୍ନ ଉଠେ ନାହିଁ ।

(୧୦) ସୁରେନ୍ଦ୍ର ବାବୁ ଲେଖିଛନ୍ତି. (୭/୭) "ଶ୍ରୀରାମପୁର କଲେଜରେ ଗୋଟିଏ ଅଧ୍ୟାପକ ପଦ ଖାଲି ପଡ଼ିଥିଲା । ... ... 'ସମାଚାର ଦର୍ପଣ' କାଗଜରେ ବିଜ୍ଞାପନଟି ଦେଖି କଲେଜର ପ୍ରିନ୍‌ସିପାଲଙ୍କ ସହିତ ସାକ୍ଷାତକାର ପାଇଁ ମଧୁସୂଦନ କାଳବିଳମ୍ବ ନ କରି ସଙ୍ଗେ ସଙ୍ଗେ ବାହାରି ପଡ଼ିଥିଲେ ।" (ପୃ.୧୬୯/୧୩୨)। ଏହା ୧୮୭୩ ବା ୧୮୭୪ ର ଘଟଣା ହେବ । କିନ୍ତୁ ଏହାର ପ୍ରାୟ କୋଡ଼ିଏ ବର୍ଷ ପୂର୍ବରୁ ୧୮୫୨ରେ ଶ୍ରୀରାମପୁରସ୍ଥ ଖ୍ରୀଷ୍ଟିଆନ ମିଶନାରୀମାନଙ୍କଦ୍ୱାରା ୧୮୧୮ଠାରୁ ପ୍ରକାଶିତ ହେଉଥିବା ପ୍ରଥମ ବଙ୍ଗଳା ସମ୍ବାଦପତ୍ର 'ସମାଚାର ଦର୍ପଣ' ବନ୍ଦ ହୋଇ ଯାଇଥିଲା (ଦ୍ର: De,

S.K.1962, p.219; ବନ୍ଦ୍ୟୋପାଧ୍ୟାୟ, ବ୍ରଜେନ୍ଦ୍ରନାଥ, 'ସମ୍ବାଦପତ୍ରେ ସେ କାଲେର କଥା', ୧ମ ଖଣ୍ଡ, ୧୩୭୭, ଭୂମିକା) ।

(୧୧) ତାପରେ ରଙ୍ଗମଞ୍ଚ ଉପରେ ଆବିର୍ଭୂତ ହୁଅନ୍ତି ଶ୍ରୀରାମପୁର କଲେଜର ପ୍ରିନ୍‌ସିପାଲ ରେଭରେଣ୍ଡ୍ ଲଙ୍ଗ୍ (୭/୭) । ଏହାଙ୍କୁ ସେ ସମୟର ବିଖ୍ୟାତ ପାଦ୍ରୀ ରେଭରେଣ୍ଡ ଜେମ୍‌ସ ଲଙ୍ଗ୍‌ଙ୍କ ସହ ପାଠକ ଚିହ୍ନିତ କରେ । ତାଙ୍କ ପ୍ରତି ଲେଖକଙ୍କର ମନୋଭାବ ଉଦାର ନ ଥିବାର ଧାରଣା ହୁଏ । ପୁଣି ନିର୍ଦ୍ଦିଷ୍ଟ ପ୍ରସଙ୍ଗଟି ପାଠ କରି ସାରିବା ପରେ ପାଠକ ମନରେ ମଧ୍ୟ ସେଇ ଧାରଣା ଜନ୍ମେ (ପୃ. ୧୬୯-୭୩/ ୧୩୩-୩୫) । କିନ୍ତୁ ରେଭରେଣ୍ଡ୍ ଲଙ୍ଗ୍ ଥିଲେ ଜଣେ ଅତ୍ୟନ୍ତ ପରୋପକାରୀ ସଦାଶୟ ବ୍ୟକ୍ତି । ସେ ତାଙ୍କର ପରୋପକାର ଗୁଣପାଇଁ ଅତ୍ୟନ୍ତ ଲୋକପ୍ରିୟ ଥିଲେ ଓ ପାଦ୍ରୀ ଲଙ୍ଗ୍ ନାମରେ ପରିଚିତ ଥିଲେ । ସେତିକି ନୁହେଁ ନୀଳକର ଅତ୍ୟାଚାରର ପ୍ରତିବାଦରେ ଦୀନବନ୍ଧୁ ମିତ୍ରଙ୍କ ଲିଖିତ ବିଖ୍ୟାତ ନାଟକ 'ନୀଳଦର୍ପଣ'ର ଇଂରାଜୀ ଅନୁବାଦର ଭୂମିକା ଲେଖି ୧୮୬୧ରେ ହଜାରେ ଟଙ୍କା ଜୋରିମାନା ଦେଇଥିଲେ, ଜେଲ୍ ମଧ୍ୟ ଯାଇଥିଲେ । ଏହାର ଇଂରାଜୀ ଅନୁବାଦ କରିଥିଲେ ମାଇକେଲ ମଧୁସୂଦନ ଦତ୍ତ । ପ୍ରକାଶିତ ପୁସ୍ତକରେ ତାଙ୍କ ନାମ ନ ଥିଲା । ରେଭରେଣ୍ଡ୍ ଲଙ୍ଗ୍ ମଧ୍ୟ ବିଚାର ବେଳେ ମାଇକେଲ ମଧୁସୂଦନଙ୍କ ନାମ ପ୍ରକାଶ କରି ନଥିଲେ । ଏତେବେଳେ ରକ୍ଷଣଶୀଳ ହିନ୍ଦୁ ସମାଜର ନେତା ରାଜା ରାଧାକାନ୍ତ ଦେବ ପାଦ୍ରୀ ଲଙ୍ଗ୍‌ଙ୍କୁ ସମର୍ଥନ ଜଣାଇବାରେ ବଙ୍ଗାଳୀମାନଙ୍କର ନେତୃତ୍ୱ ନେଇଥିଲେ (ଦ୍ର: ବାଗଲ, ଯୋଗେଶଚନ୍ଦ୍ର, ୧୯୫୭, ରାଧାକାନ୍ତ ଦେବ, ସାହିତ୍ୟସାଧକ ଚରିତମାଳା-୨୦, ପୃ.୪୫; ବନ୍ଦ୍ୟୋପାଧ୍ୟାୟ ବ୍ରଜେନ୍ଦ୍ର ନାଥ, ୧୯୫୫, ମଧୁସୂଦନ ଦତ୍ତ, ସାହିତ୍ୟସାଧକ ଚରିତମାଳା-୨୩, ପୃ.୫୯) । ତେଣୁ ତାଙ୍କୁ ଉତ୍କଳଗୌରବ ମଧୁସୂଦନଙ୍କ ଜୀବନୀ ପ୍ରସଙ୍ଗରେ ଉପହସିତ କରାଇବା ଠିକ୍ ହେଲା ନାହିଁ । ପୁଣି ରେଭେରେଣ୍ଡ୍ ଲଙ୍ଗ୍ ସବୁଦିନପାଇଁ ବଙ୍ଗ ତଥା ଭାରତ ଛାଡ଼ିଲେ ୧୮୭୨ରେ (ଦ୍ର: The Dictionary of National Biography, O.U.P, Vol XII, 1973, pp.105-06) ତେଣୁ ୧୮୭୨ ପରେ ମଧୁସୂଦନ ଶ୍ରୀରାମପୁର କଲେଜର ଅଧ୍ୟାପକ ପଦପାଇଁ ପ୍ରାର୍ଥୀ ହେବାବେଳେ ଶ୍ରୀରାମପୁରରେ ଲଙ୍ଗ୍‌ଙ୍କ ଉପସ୍ଥିତିର ପରିକଳ୍ପନା ଅସଙ୍ଗତ । ପ୍ରକୃତରେ ସେତେବେଳେ Rev. John Trafford ଶ୍ରୀରାମପୁର କଲେଜର ପ୍ରିନସିପାଲ ଥିବାର ଜଣାଯାଏ ।

(୧୨) 'ଶତାବ୍ଦୀର ସୂର୍ଯ୍ୟ'ର ୮ମ ପରିଚ୍ଛେଦର ପ୍ରଥମ ଚାରିଗୋଟି ପ୍ରସଙ୍ଗରେ ଓଡ଼ିଆ ଭାଷାସୁରକ୍ଷା ଆନ୍ଦୋଳନ ବିସ୍ତୃତ ଭାବରେ ଆଲୋଚିତ ହୋଇଅଛି । ଏହା ପୂର୍ବେ ୪ର୍ଥ

ପରିଚ୍ଛେଦରେ ମଧ୍ୟ ସେ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଇଥିଲା । ଏହା ମୂଳତଃ ମଧୁସୂଦନଙ୍କ ଜୀବନୀର ପୃଷ୍ଠପଟ ରୂପରେ ଲିଖିତ । କାରଣ ଏଥିରେ ମଧୁସୂଦନ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ କୌଣସି ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇ ନଥିଲେ । ଏହି ପୃଷ୍ଠପଟ ଅଙ୍କନରେ ପୁଣି କେତେକ ଅଭାବ ପରିଲକ୍ଷିତ ହୁଏ । ଏହି ଆନ୍ଦୋଳନ ବେଳେ ଓଡ଼ିଆ ଭାଷାର ବିରୋଧୀମାନେ ମୁଖ୍ୟତଃ ତିନୋଟି ଅସ୍ତ୍ରରେ ଓଡ଼ିଆ ଭାଷା ଉପରେ ଆଘାତ ହାଣିବାର ପ୍ରଚେଷ୍ଟା କରିଥିଲେ : (କ) ସଭାସମିତି ଓ ସମ୍ବାଦପତ୍ରର ପୃଷ୍ଠା, ଯାହାର ତରଙ୍ଗ କୋର୍ଟକଚେରୀକୁ ମଧ୍ୟ ସ୍ପର୍ଶ କରିଥିଲା, (ଖ) ମିଥ୍ୟା-ଭାଷାତତ୍ତ୍ୱ ଓ (ଗ) ସରକାରୀ ନଥିପତ୍ର । ଏ ମଧ୍ୟରୁ ଲେଖକ ସଭାସମିତି ଓ ସମ୍ବାଦପତ୍ରର ପୃଷ୍ଠା ମାଧ୍ୟମରେ ହେଉଥିବା ଆକ୍ରମଣର ବିସ୍ତୃତ କିନ୍ତୁ ଆଂଶିକ ଚିତ୍ର ଆମକୁ ଦେଇଛନ୍ତି । କିନ୍ତୁ କର୍କ୍‌ଉଡ଼୍ ସାହେବଙ୍କ କୋର୍ଟରେ ଏଇ ପ୍ରସଙ୍ଗକୁ କେନ୍ଦ୍ରକରି ହୋଇଥିବା ମକଦ୍ଦମା ତାଙ୍କ ବିବରଣୀରୁ ବାଦ ପଡ଼ିଛି । ସେ ସେହିପରି ମିଥ୍ୟା ଭାଷାତତ୍ତ୍ୱକୁ ଭିତ୍ତିକରି ଲିଖିତ କାନ୍ତିଚନ୍ଦ୍ରଙ୍କ ପୁସ୍ତିକାର ଉଲ୍ଲେଖ କରିଥିଲେ ମଧ୍ୟ ଏହି ପୁସ୍ତିକାର ପ୍ରତିବାଦରେ ଜନ୍ ବୀମସ କଲିକତାର ଆସିଆଟିକ୍ ସୋସାଇଟିର ଏକ ଅଧିବେଶନରେ ପାଠ କରିଥିବା ପ୍ରବନ୍ଧ ସମ୍ପର୍କରେ ନିରବ ରହିଛନ୍ତି । ଶେଷରେ ପୁଣି ସରକାରୀ ନଥିପତ୍ରରେ ସ୍କୁଲ ଇନ୍‌ସପେକ୍‌ଟର ଓ କମିଶନର ରେଭେନ୍‌ସା କିପରି ଓଡ଼ିଆ ଭାଷାକୁ ସମର୍ଥନ କରିଛନ୍ତି ଓ ଲେଫ୍‌ଟନାଣ୍ଟ-ଗଭର୍ଣ୍ଣର ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଆଦେଶ ଦେଇଛନ୍ତି, ସେ ସବୁର ବର୍ଣ୍ଣନା ଉପରୋକ୍ତ ପୃଷ୍ଠପଟରେ ନାହିଁ । ଫଳରେ ପୃଷ୍ଠପଟଟି ବିସ୍ତୃତ ହୋଇଥିଲେ ମଧ୍ୟ ଖଣ୍ଡିତ ରହିଛି ।

(୧୩) ମଧୁସୂଦନଙ୍କ ଜୀବନ-କାହାଣୀର ଅନ୍ୟତମ ପୃଷ୍ଠପଟ ରୂପେ ପରିକଳ୍ପିତ ଓଡ଼ିଆ ଭାଷାସୁରକ୍ଷା ଆନ୍ଦୋଳନର ଚିତ୍ରରେ ପୂର୍ବୋକ୍ତ ଅଭାବ ବ୍ୟତୀତ କେତେକ ତଥ୍ୟଗତ ଭ୍ରାନ୍ତି ମଧ୍ୟ ଦୃଷ୍ଟିଗୋଚର ହୁଏ, ଯଥା:

(କ). କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଲିଖିତ ପୁସ୍ତକର ନାମ ଭ୍ରମକ୍ରମେ ହୋଇଛି (୪/୪ ଓ ୮/୪) 'ଉଡ଼ିଆ ସ୍ୱତନ୍ତ୍ର ଭାଷା ନୟ' (ପୃ.୭୧ ଓ ୨୦୬/୫୭ ଓ ୧୬୧) ପୁସ୍ତକଟିର ପ୍ରକୃତ ନାମ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ।

(ଖ). ସୁରେନ୍ଦ୍ର ବାବୁ ଲେଖିଛନ୍ତି (୮/୨), ରାଜେନ୍ଦ୍ରଲାଲ ବଡବୋଲା ହୋଇଥିବାରୁ "କଟକରେ ତତ୍କାଳୀନ କଲେକ୍‌ଟର ଓ Comparative Grammar of Indo-Aryan Languagesର ଲେଖକ ସାର୍ ଜନ୍ ବୀମସ୍‌ଙ୍କ ସହିତ ଓଡ଼ିଆ ଭାଷା ତଥା ଓଡ଼ିଆ ସଂସ୍କୃତି ସମ୍ପର୍କରେ ତାଙ୍କର ଅନେକ ଆଲୋଚନା ହୋଇଥିଲେ ସୁଦ୍ଧା ବଙ୍ଗଳା ଅପେକ୍ଷା

ଓଡ଼ିଆ ଭାଷା ବୃହତ୍ତର ଜନ ସମାଜରେ କଥିତ, ଅଧିକ ଐଶ୍ୱର୍ଯ୍ୟଶାଳୀ ପୁଣି ଐତିହ୍ୟ ସମ୍ପନ୍ନ ଥିବା ସମ୍ପର୍କରେ ବୀମସ୍‌ଙ୍କ ପ୍ରାମାଣିକ ଅଭିମତ ରାଜେନ୍ଦ୍ରଲାଲ ବୋଧହୁଏ ଶୁଣିପାରି ନଥିଲେ । ଜନ୍ ବୀମସ୍ ଆଲୋଚିତ ଗ୍ରନ୍ଥରେ ଲେଖିଥିଲେ 'ପୃଥିବୀରେ ପର୍ତ୍ତୁଗୀଜ ଭାଷାର ସଂଖ୍ୟା ପୃଥିବୀରେ ସର୍ବାପେକ୍ଷା ଅଳ୍ପ, ତାହା ବୋଲି କଣ ପର୍ତ୍ତୁଗୀଜ ଭାଷା ପୃଥିବୀରେ ରହିବ ନାହିଁ ?'" (ପୃ.୧୯୭-୯୮/୧୫୩) ।

କିନ୍ତୁ ବୀମସ୍ ସାର (sir) ପଦଧାରୀ ନଥିଲେ । ପୁଣି କଥିତ ସମୟରେ (ଅର୍ଥାତ୍ ୧୮୬୮ରେ) ସେ କଟକରେ କଲେକ୍‌ଟର ମଧ୍ୟ ନଥିଲେ । ସେ କଟକକୁ କଲେକ୍‌ଟର ହୋଇ ଆସିଲେ ୧୮୭୩ରେ ଓ ସେତେବେଳକୁ ଭାଷାବିବାଦର ଅବସାନ ହେଲାଣି । ପୁଣି ରାଜେନ୍ଦ୍ରଲାଲ କଟକ ଡ଼ିବେଟିଂ କ୍ଲବରେ ଦେଇଥିବା ୧୮୬୮ ଡ଼ିସେମ୍ବରର ଭାଷଣ ପରେ ହିଁ ବୀମ୍‌ସ୍ ଓଡ଼ିଆ ଭାଷା ସମ୍ପର୍କରେ ତାଙ୍କର ପ୍ରାମାଣିକ ଅଭିମତ ଦେଲେ । ସ୍ମରଣ କରାଯାଇପାରେ ଯେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ପୁସ୍ତିକା ପ୍ରକାଶିତ ହେଲା, ୧୮୭୦ରେ ଜାନୁଆରୀ ମାସରେ । ଜନ୍ ବୀମ୍‌ସ ତାର ପ୍ରତିବାଦରେ On the Relation of the Uriya to the other Modern Aryan Languages ନାମକ ଏକ ପ୍ରବନ୍ଧ ଲେଖି ସେଇ ବର୍ଷ ଏପ୍ରିଲ ମାସରେ କଲିକତାସ୍ଥ ଆସିଆଟିକ୍ ସୋସାଇଟିକୁ ପ୍ରେରଣ କରିଥିଲେ ଓ ମେ' ମାସ ୪ ତାରିଖରେ ସୋସାଇଟିର ଏକ ଅଧିବେଶନରେ ସେ ତାହାକୁ ପାଠ କରିଥିଲେ । ବୀମ୍‌ସ୍ ତାଙ୍କ ପ୍ରବନ୍ଧଟି ଉପସ୍ଥାପନ କରିସାରିବା ପରେ ବୀମ୍‌ସ୍‌ଙ୍କ ମତାମତର ତୀବ୍ର ପ୍ରତିବାଦ କରିଥିଲେ ରାଜେନ୍ଦ୍ରଲାଲ ମିତ୍ର (ଦ୍ର: Beames, John, 1870) । ବୀମ୍‌ସ୍‌ଙ୍କ ପୁସ୍ତକର ପ୍ରକୃତ ନାମ ହେଉଛି A comparative Grammar of the Modern Aryan Languages of India । ଏହା ପ୍ରଥମ ଭାଗ, ଦ୍ୱିତୀୟ ଭାଗ ଓ ତୃତୀୟ ଭାଗ ପ୍ରଥମଥରପାଇଁ ଯଥାକ୍ରମେ ୧୮୭୨, ୧୮୭୫ ଓ ୧୮୭୯ରେ ପ୍ରକାଶିତ ହୋଇଥିଲା । ତେଣୁ ୧୮୬୮ ବେଳକୁ ରାଜେନ୍ଦ୍ର ଲାଲ ଓଡ଼ିଆ ଭାଷା ସମ୍ପର୍କରେ ବୀମ୍‌ସ୍‌ଙ୍କ ପ୍ରାମାଣିକ ଅଭିମତ ଶୁଣିବାର ପ୍ରଶ୍ନ ଇ ଉଠେନାହିଁ । ଏହା ସହ ସେ ବଡ଼ବୋଲା ହେବାର କି ସମ୍ପର୍କ ଅଛି ? ପୁଣି ସେ ୧୮୭୦ରେ ବୀମ୍‌ସ୍‌ଙ୍କ ପ୍ରାମାଣିକ ଅଭିମତ ଶୁଣି ମଧ୍ୟ ଗ୍ରହଣ କରି ନଥିଲେ । ଶେଷରେ ପୃଥିବୀରେ ପର୍ତ୍ତୁଗୀଜ ଜାତିର ସଂଖ୍ୟା ସର୍ବାପେକ୍ଷା ଅଳ୍ପ ବୋଲି ବୀମ୍‌ସ୍ କହିଛନ୍ତି କି ? ବୀମ୍‌ସ୍ କହିଥିଲେ, "If Oriya is to be suppressed because it is only spoken by a few millions of people, it might also be urged that Dutch, or Danish, or Portuguese, should be obliterated also. Basque should also be stamped out, and the same argument would apply to Romaic or Modern Greek, and would

justify the Russians in trying to eradicate Polish or the Austrians in annihilating Czech." (Beames, John, 1970, p.118).

(ଗ). 'ଶତାବ୍ଦୀର ସୂର୍ଯ୍ୟ' ଅନୁଯାୟୀ (୮/୨) ୧୮୬୮ ଡ଼ିସେମ୍ବର ବେଳକୁ "... ... 'ଉତ୍କଳ ହିତୈଷିଣୀ' ଓ ଇଂରାଜୀ ସାପ୍ତାହିକ 'କଟକ ଷ୍ଟାର' ଓଡ଼ିଆ ଭାଷାବିରୋଧୀ ଆନ୍ଦୋଳନର ମୁଖପତ୍ର ଥିଲା । ଜନୈକ ଆଗନ୍ତୁକ ଜମିଦାର ବାବୁ କାଳୀପଦ ଚାଟାର୍ଜୀ ଏ ପତ୍ରିକା ଦୁଇଟିର ସମ୍ପାଦକ ଥିଲେ । 'କଟକ ଡିବେଟିଙ୍ଗ ସୋସାଇଟୀ' ଓଡିଆ ଭାଷାବିରୋଧୀ ଆନ୍ଦୋଳନର ରାଜନୈତିକ ମଞ୍ଚ ଥିଲା । କଟକ ହାଇସ୍କୁଲ ସହିତ ସେତେବେଳେ ଯୋଡ଼ା ଯାଇଥିବା ଆଇନ ଶ୍ରେଣୀର ଅଧ୍ୟାପକ ବାବୁ ରାଜକୃଷ୍ଣ ମୁଖୋପାଧ୍ୟାୟ ଓ ଅନ୍ୟଜଣେ ବଙ୍ଗୀୟ ଆଗନ୍ତୁକ ଉମାଚରଣ ହାଲଦାର ଏଥିରେ ମୁଖ୍ୟ କାରପଟଦାର ଥିଲେ । ସେମାନେ ଭାବି ସ୍ଥିର କଲେ ରାଜେନ୍ଦ୍ର ଲାଲ ମିତ୍ରଙ୍କ ପରି ଜଣେ ସରକାରୀ ପଣ୍ଡିତ ଯଦି ଓଡ଼ିଆ ଭାଷାର ବିଲୋପ ସମ୍ପର୍କରେ ଗୋଟିଏ ପ୍ରାମାଣିକ ମତ କଟକରେ ପ୍ରକାଶ କରିଯାନ୍ତି, ତାହେଲେ ସେମାନଙ୍କ ପକ୍ଷରେ ତାହା ଅନୁକୂଳ ହେବ... । ଏହି ଅଭିପ୍ରାୟରେ କଟକ ଡ଼ିବେଟିଙ୍ଗ୍ ସୋସାଇଟିରେ ଭାଷଣ ଦେବାପାଇଁ ପଣ୍ଡିତ ପ୍ରବର ରାଜେନ୍ଦ୍ରଲାଲ ମିତ୍ର ସେଦିନ ଆମନ୍ତ୍ରିତ ହୋଇ ଆସିଥିଲେ । ଏହା ପୂର୍ବରୁ 'କଟକ ଷ୍ଟାର' ପତ୍ରିକା ଅଫିସରେ ତାଙ୍କ ବଡ଼ବୋଲା କାନରେ ଯଥେଷ୍ଟ ମନ୍ତ୍ରଭେଦ କରାଯାଇ ଥିଲା ।" (ପୃ.୧୯୮-୯୯/୧୫୪) ।

କିନ୍ତୁ 'ଉତ୍କଳ ହିତୈଷିଣୀ' ଓ 'କଟକଷ୍ଟାର'ର ସମ୍ପାଦକଙ୍କ ନାମ କାଳୀପଦ ଚାଟାର୍ଜୀ ନୁହେଁ, କାଳୀପଦ ବନ୍ଦ୍ୟୋପାଧ୍ୟାୟ ଥିଲା । ପୁଣି ରାଜେନ୍ଦ୍ର ଲାଲ ୧୮୬୮ ଡ଼ିସେମ୍ବରରେ 'କଟକ ଡ଼ିବେଟିଙ୍ଗ୍ କ୍ଲବ'ରେ (ସୋସାଇଟି ନୁହେଁ) ଭାଷଣ ଦେବା ବେଳକୁ ଏ ପତ୍ରିକା ଦୁଇଟି ପ୍ରକାଶିତ ହେଉ ନଥିଲା । 'ଉତ୍କଳ ହିତୈଷିଣୀ'ର ପ୍ରଥମ ସଂଖ୍ୟା ପ୍ରକାଶିତ ହୁଏ ୧୮୬୯ ଫେବୃଆରୀ ୧୬ ତାରିଖରେ ଓ 'କଟକ ଷ୍ଟାର'ର ପ୍ରଥମ ସଂଖ୍ୟା ପ୍ରକାଶିତ ହେଲା ୧୮୬୯ ଫେବୃଆରୀ ୨୨ ତାରିଖରେ । ତେଣୁ ରାଜେନ୍ଦ୍ର ଲାଲ ଡ଼ିବେଟିଙ୍ଗ କ୍ଲବରେ ଭାଷଣ ଦେବା ପୂର୍ବରୁ 'କଟକ ଷ୍ଟାର' ଅଫିସରେ ତାଙ୍କ କାନରେ ମନ୍ତ୍ରଭେଦ କରାଗଲା କିପରି ? ଶେଷରେ ୧୮୬୮ ଡ଼ିସେମ୍ବର ବେଳକୁ ରାଜକୃଷ୍ଣ ମୁଖୋପାଧ୍ୟାୟ କଟକ ହାଇସ୍କୁଲରେ ଯୋଡ଼ା ଯାଇଥିବା ଆଇନ ଶ୍ରେଣୀର ଅଧ୍ୟାପକ ନ ଥିଲେ । ସେ ଆଇନ ଶ୍ରେଣୀର ଅଧ୍ୟାପକ ହେଲେ ୧୮୬୯ର ଫେବୃଆରୀ ମାସରେ (ଦ୍ର:'ଉତ୍କଳ ଦୀପିକା', ୨୦/୨/୧୮୬୯; ପଟ୍ଟନାୟକ, ସୁଧାକର, ୧୯୭୨, ପୃ.୫୩୦-୩୧) ।

(ଘ) 'ଶତାବ୍ଦୀର ସୂର୍ଯ୍ୟ'ର ବହୁ ସ୍ଥଳରେ 'ଉତ୍କଳ ଦୀପିକା'ରୁ ପ୍ରତ୍ୟକ୍ଷ ଉଦ୍ଧୃତି ଦିଆ ଯାଇଥିଲେ ମଧ୍ୟ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ପ୍ରସଙ୍ଗରେ 'ଉତ୍କଳ ଦୀପିକା'ର ଉଦ୍ଧୃତି ପାଇଁ ମୃତ୍ୟୁଞ୍ଜୟ ରଥଙ୍କ 'କର୍ମଯୋଗୀ ଗୌରୀଶଙ୍କର' ପୁସ୍ତକ ଉପରେ ନିର୍ଭର କରାଯିବାଦ୍ୱାରା ଉଦ୍ଧୃତାଂଶ ଗୁଡ଼ିକରେ କେତେକ ଭ୍ରମପ୍ରମାଦ ପରିଲକ୍ଷିତ ହୁଏ ।

(୧୪). ହିନ୍ଦୁମେଳାର ୧୧ଶ ଅଧିବେଶନ ସମ୍ପର୍କରେ ସୁରେନ୍ଦ୍ର ବାବୁ ଲେଖିଛନ୍ତି (୮/୬), "ପରବର୍ତ୍ତୀ କାଳରେ କବିଗୁରୁ ରବୀନ୍ଦ୍ର ନାଥ ସେଦିନ ଅପରିଚିତ କିଶୋର କବି । କିନ୍ତୁ ମେଳା ମଣ୍ଡପରେ କଣ୍ଠେ କଣ୍ଠେ ତାଙ୍କର ସଙ୍ଗୀତ... 'ଭାରତ କଙ୍କାଳ ଆର କି ଏଖନ... ।'" (ପୃ. ୨୧୫/୧୬୬-୬୭) । ପ୍ରକୃତ ପକ୍ଷେ "ଭାରତ କଙ୍କାଳ ..." ଇତ୍ୟାଦି ଏକ କବିତା, ସଙ୍ଗୀତ ନୁହେଁ । ରବୀନ୍ଦ୍ରନାଥ ହିନ୍ଦୁମେଳାର ୯ମ ଅଧିବେଶନରେ ହିଁ ପ୍ରଥମ ଥରପାଇଁ କବିତାଟି ଆବୃତ୍ତି କରିଥିଲେ, ସଙ୍ଗୀତ ଗାନ କରି ନଥିଲେ । ପୁଣି "ତାହା କବିତା ହିସାବେ ତୁଚ୍ଛ" ଓ "ହେମଚନ୍ଦ୍ରେର ସୁରେ ବାଁଧା ଓ ବିହାରୀଲାଲେର ରଙ୍ଗେ ରଞ୍ଜିତ" ତଥା ସମସାମୟିକମାନଙ୍କ ଉପରେ ଏହା ସେପରି କିଛି ପ୍ରଭାବ ପକାଇ ପାରିନଥିଲା ବୋଲି ରବୀନ୍ଦ୍ରନାଥଙ୍କ ଜୀବନୀକାର କହନ୍ତି (ଦ୍ର: ମୁଖୋପାଧ୍ୟାୟ, ପ୍ରଭାତକୁମାର, ୧୯୭୦, ରବୀନ୍ଦ୍ର ଜୀବନୀ, ୧ମ ଖଣ୍ଡ, ପୃ.୪୯-୫୦ ଓ ପାଦଟୀକା) । ବରଂ ସେଦିନ ହେମଚନ୍ଦ୍ରଙ୍କ "ବାଜ୍‌ରେ ଶିଙ୍ଗା ବାଜ୍ ଏଇ ରବେ ..." ବଙ୍ଗାଳୀମାନଙ୍କ କଣ୍ଠେ କଣ୍ଠେ ସ୍ଥାନ ପାଇଥିଲା (ତତ୍ରୈବ) ।

(୧୫) ନରହତ୍ୟା ଅପରାଧରେ ଠାକୁର ରାଜା ଦିବ୍ୟସିଂହ ଦେବଙ୍କର ବିଚାର ଓ ଦଣ୍ଡବିଧାନ ସମ୍ପର୍କିତ ବହୁ ଭ୍ରମପ୍ରମାଦ ଏ ପୁସ୍ତକରେ (୮/୭) ସ୍ଥାନ ପାଇଛି ଯଥା:

(କ) ପ୍ରସଙ୍ଗର ଆରମ୍ଭରେ ଅଛି, "ଇଂ ୧୮୭୭ ସାଲ..." (ପୃ. ୨୨୦/୧୭୧) । ପ୍ରକୃତ ପକ୍ଷେ ଏହା ୧୮୭୮ର ଘଟଣା ।

(ଖ) ସୁରେନ୍ଦ୍ର ବାବୁ ତା'ପରେ ଲେଖିଛନ୍ତି, "କଟକ ଜଜ୍‌ଙ୍କ ରାୟ ବାହରିବା ସଙ୍ଗେ ସଙ୍ଗେ ସରକାର ରାତାରାତି ତାଙ୍କୁ (ଅର୍ଥାତ୍ ଦିବ୍ୟସିଂହ ଦେବଙ୍କୁ) ଗୋଟିଏ ଜାହାଜରେ ଲୁଚାଇ ଆଣ୍ଡାମାନକୁ ଦ୍ୱୀପାନ୍ତରିତ କରିଦେଲେ । ଜନ ବୀମ୍‌ସ୍ ସେତେବେଳେ ଓଡ଼ିଶା ଡ଼ିଭିଜନ୍‌ର କମିଶନର.." (ପୃ.୨୨୦-୨୧/୧୭୧) । ଆହୁରିମଧ୍ୟ, "ପୁରୀ ରାଜାଙ୍କୁ ଅପିଲ କରିବାପାଇଁ ସୁଯୋଗ ଦିଆଯିବା ପୂର୍ବରୁ ତାଙ୍କୁ ହରଣଚାଳ କରି ଆଣ୍ଡାମାନ ଦ୍ୱୀପାନ୍ତରିତ କରି ଦିଆଯାଇ ଥିବାରୁ ହାଇକୋର୍ଟର ଭାରତୀୟ ହିନ୍ଦୁ ଓକିଲମାନଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ପ୍ରକାଶ ପାଇଥିଲା ।" (ପୃ.୨୨୦-୨୧/୧୭୧) ।

ପ୍ରଥମତଃ କଥିତ ସମୟକୁ ଜନ୍ ବୀମ୍‌ସ୍ ଓଡ଼ିଶାର କମିଶନର ନଥିଲେ । କଟକ ଜଜ୍ କୋର୍ଟରେ ପୁରୀ ରାଜାଙ୍କ ଦୌରା ବିଚାର ଆରମ୍ଭ ହୁଏ ୧୮୭୮ ମାର୍ଚ୍ଚ ୨୬ ତାରିଖରେ । ଏହି ଦୌରା ବିଚାରର ରାୟ ବାହାରିଲା ଏପ୍ରିଲ ୮ ତାରିଖରେ । କଟକରେ ପୁରୀ ରାଜାଙ୍କ ଦୌରା ବିଚାର ଆରମ୍ଭ ବେଳକୁ ରେଭେନ୍‌ସା ଓଡ଼ିଶାର କମିଶନର ଥିଲେ । କିନ୍ତୁ ବିଚାର ମଝିରେ ଏପ୍ରିଲ ୧ ତାରିଖ ଦିନ ନୂତନ କମିଶନର ଏ. ସ୍ମିଥ୍‌ଙ୍କୁ କାର୍ଯ୍ୟଭାର ଦେଇ ରେଭେନ୍‌ସା ବଦଳି ହୋଇଗଲେ । ତେଣୁ ରାୟ ବାହାରିବା ବେଳକୁ ଓଡ଼ିଶାର କମିଶନର ଥିଲେ ସ୍ମିଥ୍ ସାହେବ (ଦ୍ର: 'ଉତ୍କଳ ଦୀପିକା' ୬/୪/୧୮୭୮, ପଟ୍ଟନାୟକ ସୁଧାକର, ୧୯୭୨, ପୃ. ୭୨୬-୨୭; Mukherji, P., 1964, p.403) ।

ଦ୍ୱିତୀୟତଃ ପୁରୀ ରାଜା ଦିବ୍ୟସିଂହ ଦେବଙ୍କୁ କଟକ ଜଜ୍‌ଙ୍କ ରାୟ ବିରୁଦ୍ଧରେ କଲିକତା ହାଇକୋର୍ଟରେ ଅପିଲ କରିବାର ସୁଯୋଗ ଦିଆଯାଇଥିଲା ଓ ସେ ମଧ୍ୟ ହାଇକୋର୍ଟରେ ଅପିଲ ଦାୟର କରିଥିଲେ । କୁହାଯାଇଛି କଟକ ଜଜ୍‌ଙ୍କ ରାୟ ବାହାରିଲା ୧୮୭୮ ଏପ୍ରିଲ ୮ ତାରିଖ । କଟକ ଜଜ୍ ରାଜା ଓ ତାଙ୍କର ଚାରିଜଣ ଚାକରଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ପ୍ରଦାନ କରିଥିଲେ । ସେହି ଏପ୍ରିଲ ମାସରେ ରାଜାଙ୍କ ପକ୍ଷରୁ ହାଇକୋର୍ଟରେ ଅପିଲ କରାଯାଇଥିଲା । ହାଇକୋର୍ଟରେ ରାଜାଙ୍କ ପକ୍ଷରୁ ଓକିଲ ଥିଲେ ବାରିଷ୍ଟର ବ୍ରାନ୍‌ସନ୍, ବାରିଷ୍ଟର ଇଭାନ୍‌ସ୍ ଓ ବାରିଷ୍ଟର ମନମୋହନ ଘୋଷ । ସେଇ ବର୍ଷ ମେ' ମାସରେ ହାଇକୋର୍ଟର ରାୟ ବାହାରି ଥିଲା । ରାଜାଙ୍କର ଚାରିଜଣ ଚାକରଙ୍କ ମଧ୍ୟରୁ ଦୁଇ ଜଣଙ୍କୁ ସନ୍ଦେହରେ ଖଲାସ କରି ରାଜା ଓ ଦୁଇଜଣ ଚାକରଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ହାଇକୋର୍ଟ ଦେଇଥିଲେ । 'ଉତ୍କଳ ଦୀପିକା'ର ବିଭିନ୍ନ ସଂଖ୍ୟାରେ ଏ ସମ୍ପର୍କୀୟ ବିସ୍ତୃତ ବିବରଣ ପ୍ରକାଶ ପାଇଥିଲା (ଦ୍ର: ପଟ୍ଟନାୟକ, ସୁଧାକର, ୧୯୭୨, ପୃ.୩୭୩, ୭୨୬, ୩୭୬-୭୭, ୩୮୦-୪୦୨, ୭୨୭, ୪୦୩-୦୮) । ମଧୁବାବୁ ସେତେବେଳେ ହାଇକୋର୍ଟରେ ଅନୁବାଦକର କାର୍ଯ୍ୟ କରୁଥିଲେ ବା ତରୁଣ ଓକିଲ ଭାବରେ ଓକିଲାତି ବ୍ୟବସାୟ ଆରମ୍ଭ ମାତ୍ର କରିଥିଲେ । ପୁଣି ହାଇକୋର୍ଟରେ ପୁରୀ ରାଜାଙ୍କ ମକଦ୍ଦମା ବିଚାର ବେଳେ ସମସାମୟିକ ଖବର କାଗଜରେ ତାର ବିବରଣ ପ୍ରକାଶିତ ହେଉଥିଲା । ମନେହୁଏ ମଧୁବାବୁ କୌତୂହଳାକ୍ରାନ୍ତ ହୋଇ ହାଇକୋର୍ଟରେ ଏ ମକଦ୍ଦମାର ବିଚାର ଦେଖିପାରିଥାଆନ୍ତି ।

ତୃତୀୟତଃ ହାଇକୋର୍ଟର ରାୟ ବାହାରିବା ପରେ ସେ ବର୍ଷ ଅଗଷ୍ଟ ମାସରେ ଅପରାଧୀ ରାଜା ଦିବ୍ୟସିଂହ ଦେବ କଲିକତାର ଜେଲ ଛାପାଖାନାରେ ଡ଼ିଷ୍ଟ୍ରିବ୍ୟୁଟର ବା ଅକ୍ଷର ଖଞ୍ଜିବାର କାମ କରୁଥିଲେ ବୋଲି ୧୦/୮/୧୮୭୮ର 'ଉତ୍କଳ ଦୀପିକା'ରୁ

ଜଣାଯାଏ ଓ ସେ ସେହି ବର୍ଷ ସେପ୍ଟେମ୍ବର ମାସ ୪ ତାରିଖରେ ଆଣ୍ଡାମାନ୍‌ସ୍ଥ ପୋର୍ଟବ୍ଲେଆରରେ ପହଞ୍ଚିଲେ ବୋଲି ୧୨/୧୦/୧୮୭୮ର 'ଉତ୍କଳ ଦୀପିକା' କହେ (ପଟ୍ଟନାୟକ, ସୁଧାକର, ୧୯୭୨, ପୃ.୪୧୧ ଓ ୪୧୪)। ତେଣୁ କଟକ ଜଜ୍‌ଙ୍କ ରାୟ ବାହାରିବା ସଙ୍ଗେ ସଙ୍ଗେ ତାଙ୍କୁ ଅପିଲର ସୁଯୋଗ ଦିଆନଯାଇ, ହରଣଚାଳ କରି ରାତାରାତି ଗୋଟିଏ ଜାହାଜରେ ଆଣ୍ଡାମାନ ପଠାଇ ଦିଆଯାଇଥିବାର ସମ୍ବାଦ ସତ୍ୟ ନୁହେଁ। ମନେହୁଏ, ସୁରେନ୍ଦ୍ରବାବୁ ଦିବ୍ୟସିଂହ ଦେବଙ୍କ ପ୍ରତି ବିଦ୍ୱେଷପରାୟଣ ଜନ୍ ବୀମସ୍‌ଙ୍କ ସ୍ମୃତିକଥାର ଭ୍ରମାତ୍ମକ ବିବରଣୀ ଉପରେ ନିର୍ଭର କରିଥିବାରୁ ଏପରି ଭ୍ରମାତ୍ମକ ତଥ୍ୟ ପରିବେଷଣ କରିଛନ୍ତି। କାରଣ, ବୀମସ୍ ଲେଖିଥିଲେ, "The Maharaja was arrested, tried and sentenced to imprisonment for life. ... Immense excitement was aroused all over Orissa and crowds assembled round the Judge's court every day during the trial. The boy was smuggled away at night with a strong guard to the steamer. No actual outbreak occurred ... ." (Beames, John, 1961, p.273.)

ଇତିହାସର ନୂତନ ବ୍ୟାଖ୍ୟା କରି ବ୍ରିଟିଶ ରାଜନୀତିର ଯୂପକାଷ୍ଠରେ ଦିବ୍ୟସିଂହ ଦେବଙ୍କୁ ବଳି ପକାଇଦିଆଯାଇ ଥିଲା ବୋଲି ସନ୍ଦେହ କରିବାର ଯଥେଷ୍ଟ ଅଧିକାର ଅବଶ୍ୟ ଲେଖକଙ୍କର ରହିଛି ଓ ସେପରି କିଛି କାରଣ ବି ବିଦ୍ୟମାନ। କିନ୍ତୁ ଭୁଲ ତଥ୍ୟ ପରିବେଷଣର କୌଣସି ଅଧିକାର ଲେଖକଙ୍କର ନାହିଁ। ଏ ପ୍ରସଙ୍ଗରେ ସ୍ମରଣ ରଖିବା ଉଚିତ ଯେ ଏହି ମକଦ୍ଦମାରେ ପୁରୀର କଲେକ୍‌ଟର ଆର୍ମଷ୍ଟ୍ରଙ୍ଗ ନୁହନ୍ତି ଡେ଼ପୁଟି ମ୍ୟାଜିଷ୍ଟ୍ରେଟ ଓ 'ପଳାସୀର ଯୁଦ୍ଧ' 'ରୈବତକ' ପ୍ରଭୃତି କାବ୍ୟର କବି ନବୀନଚନ୍ଦ୍ର ସେନ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ। (ଦ୍ର: ସେନ, ନବୀନଚନ୍ଦ୍ର, ୧୯୫୯, 'ଆମାର ଜୀବନ', ୩ୟ ଭାଗ)।

(୧୬) 'ଶତାବ୍ଦୀର ସୂର୍ଯ୍ୟ'ର ୧୩ଶ ଓ ୧୬ଶ ପରିଚ୍ଛେଦରେ ଦିବ୍ୟସିଂହ ଦେବଙ୍କ ନାବାଳକ ପୁତ୍ର ଜଗନ୍ନାଥ ଜେନାମଣିଙ୍କୁ ପୁରୀ ରାଜା ମୁକୁନ୍ଦଦେବ ଭାବରେ ସ୍ୱୀକୃତି ଦିଆଯିବା ବିଷୟ ଓ ସେଥିରେ ମଧୁସୂଦନଙ୍କ ଭୂମିକା ବର୍ଣ୍ଣିତ। ଏ ପ୍ରସଙ୍ଗରେ ମଧ୍ୟ କେତେକ ପ୍ରମାଦପୂର୍ଣ୍ଣ ତଥ୍ୟର ପରିବେଷଣ କରାଯାଇ ଅଛି ଯଥା:

(କ) ସୁରେନ୍ଦ୍ରବାବୁ ଲେଖିଛନ୍ତି, "ସ୍ୱର୍ଗତ ରାଜା ପଦ୍ମନାଭ ଦେବଙ୍କର ଦୁଇ ରାଣୀ ଥିଲେ-ଚନ୍ଦ୍ରମଣି ଓରଫ ସୂର୍ଯ୍ୟମଣି ପାଟମହାଦେଈ ଓ ଶ୍ରୀମତୀ ମହାଦେଈ। ସୂର୍ଯ୍ୟମଣି ପାଟମହାଦେଈଙ୍କ ପୁତ୍ର ଦିବ୍ୟସିଂହ, ଶ୍ରୀମତୀ ମହାଦେଈଙ୍କ ପୁତ୍ର ଭାଗିରଥୀ। ପଦ୍ମନାଭଙ୍କ

ଅନ୍ତେ ଦିବ୍ୟସିଂହ ଦେବ ଖୋର୍ଦ୍ଧା ସିଂହାସନରେ ରାଜାରୂପେ ସ୍ୱୀକୃତି ଲାଭ କରିଥିଲେ ।" ଇତ୍ୟାଦି (ପୃ.୩୦୭/୨୩୮) ଓ "... ସୂର୍ଯ୍ୟମଣି ପାଟମହାଦେଈ ଦିବ୍ୟସିଂହ ଦେବଙ୍କ ନାବାଳକ ପୁତ୍ର ଜଗନ୍ନାଥ ଜେନାମଣିଙ୍କୁ ମୁକୁନ୍ଦ ଦେବ ନାମ ଦେଇ ଖୋର୍ଦ୍ଧାରାଜା ରୂପେ ଅଭିଷିକ୍ତ କରାଇଦେବାରୁ ଇଂରେଜ ଶାସକଗୋଷ୍ଠୀ ସେମାନଙ୍କ ଚକ୍ରାନ୍ତ ଏହିପରି ଭାବରେ ପଣ୍ଡ ହେଉଥିବା ଦେଖି ଶ୍ରୀମତୀ ମହାଦେଈଙ୍କ ପୁତ୍ର ଭାଗିରଥୀଙ୍କୁ ଖୋର୍ଦ୍ଧା ସିଂହାସନପାଇଁ ଏକ ପ୍ରତିଦ୍ୱନ୍ଦ୍ୱୀ ରୂପେ ଠିଆ କରାଇ ଦେଲେ । ଦାଦୀ ପୁତୁରାଙ୍କ ମଧ୍ୟରେ ଝଗଡ଼ା ଲାଗିଲେ ତୃତୀୟପକ୍ଷ ରୂପେ ଇଂରେଜମାନଙ୍କର ଲାଭ- ଏହାହିଁ ଥିଲା ପରିକଳ୍ପନା ।" (ପୃ. ୩୦୭-୩୦୮/୨୩୮) ଇତ୍ୟାଦି । ।

ଲେଖକ ପୁରୀ ରାଜବଂଶର ଏପରି ଅଦ୍ଭୁତ ବଂଶାବଳୀ କେଉଁ ସୂତ୍ରରୁ ସଂଗ୍ରହ କଲେ ? ଏପରି ମନଗଢ଼ା ଘଟଣା କେଉଁଠାରୁ ଜାଣିଲେ ? ପ୍ରକୃତପକ୍ଷେ ୧୯ଶ ଶତକରେ ପୁରୀ ରାଜବଂଶରେ ପଦ୍ମନାଭ ଦେବ ବୋଲି କୌଣସି ରାଜା ନ ଥିଲେ । ଇଂରେଜମାନେ ଓଡ଼ିଶାକୁ ଅଧିକାର କରିବାବେଳେ ଖୋର୍ଦ୍ଧା ରାଜା ଥିଲେ ମୁକୁନ୍ଦ ଦେବ (୧୭୯୮-୧୮୧୭) । ସେ ପରେ ଖୋର୍ଦ୍ଧା ରାଜଗାଦିରୁ ବଞ୍ଚିତ ହୋଇ ପୁରୀରେ ଅବସ୍ଥାନ କରିବା ସହ ପୁରୀରାଜା ଭାବରେ ପରିଚିତ ହୋଇଥିଲେ ଓ ବାର୍ଷିକ ଟ ୨୫,୦୦୦ ପେନ୍‌ସନ୍ ପାଉଥିଲେ । ସେଇ ପେନ୍‌ସନ ଟଙ୍କାରେ ତାଙ୍କର ତିନି ଭାଇ ଗୋପୀନାଥ ରାୟ, ଲୋକନାଥ ରାୟ ଓ ପୀତାମ୍ବର ରାୟଙ୍କ ଭରଣପୋଷଣ ମଧ୍ୟ ନିର୍ବାହ ହେଉଥିଲା । ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁଅ ରାମଚନ୍ଦ୍ର ଦେବ ୧୮୧୭ରୁ ୧୮୫୪ ପର୍ଯ୍ୟନ୍ତ ପୁରୀର ରାଜା ଥିଲେ । ତାଙ୍କ ପରେ ବୀରକିଶୋର ଦେବ ୧୮୫୪ରୁ ୧୮୫୯ ପର୍ଯ୍ୟନ୍ତ ପୁରୀରେ ରାଜା ହେଲେ । ରାଣୀ ସୂର୍ଯ୍ୟମଣି ବୀରକିଶୋରଙ୍କର ଏକମାତ୍ର ପତ୍ନୀ । ବୀରକିଶୋରଙ୍କର ମୃତ୍ୟୁ ହୁଏ ୧୮୫୯ରେ । ମୃତ୍ୟୁ ପୂର୍ବରୁ ସେ ବଡ଼ଖେମୁଣ୍ଡିର ୪ ବର୍ଷ ବୟସ୍କ ରାଜକୁମାରଙ୍କୁ ଦିବ୍ୟସିଂହ ଦେବ ନାମ ଦେଇ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ଦିବ୍ୟସିଂହ ଦେବଙ୍କର ନାବାଳକ ଅବସ୍ଥାରେ ରାଣୀ ସୂର୍ଯ୍ୟମଣି ତାଙ୍କର ମହାଫିସ୍ ଥିଲେ । ସେ ୧୮୭୮ରେ ଆଣ୍ଡାମାନକୁ ନରହତ୍ୟା ଅପରାଧରେ ନିର୍ବାସିତ ହେବାପରେ ତାଙ୍କର ନାବାଳକ ପୁତ୍ର ଜଗନ୍ନାଥ ଜେନାମଣିଙ୍କୁ ରାଣୀ ସୂର୍ଯ୍ୟମଣି ମୁକୁନ୍ଦଦେବ ନାମ ଦେଇ ପୁରୀ ସିଂହାସନରେ ଅଭିଷିକ୍ତ କରାଇଥିଲେ । ରାଣୀ ଥିଲେ ତାଙ୍କର ମହାଫିସ ।

ରାମଚନ୍ଦ୍ର ଦେବଙ୍କ ସମୟରେ ତାଙ୍କର ବାର୍ଷିକ ଭତ୍ତାରୁ ଟଙ୍କା କାଟି ତାଙ୍କର କକା (ଅର୍ଥାତ୍ ମୁକୁନ୍ଦ ଦେବଙ୍କ ଭାଇ) ଗୋପୀନାଥ ଓ ଲୋକନାଥ ପ୍ରତ୍ୟେକଙ୍କୁ ମାସିକ

୧୭୫ ଟଙ୍କା ଓ ପୀତାମ୍ବରଙ୍କୁ ମାସିକ ୧୦୦ ଟଙ୍କା ଭତ୍ତା ଦେବାର ପ୍ରଥା ସୃଷ୍ଟି କରାଗଲା । ଲୋକନାଥ ବେଓ୍ୱାରସ ଥିବାରୁ ତାଙ୍କ ମୃତ୍ୟୁ ପରେ ଗୋପୀନାଥ ମାସିକ ୧୭୫ ଟଙ୍କା (ବା କମ୍ପାନୀଟଙ୍କା ୧୮୬-୧୦-୮) ପାଇବାକୁ ଲାଗିଲେ । ଗୋପୀନାଥଙ୍କ ମୃତ୍ୟୁ ପରେ ତାଙ୍କର ପାଞ୍ଚପୁଅ, ତାଙ୍କର ମା'ଓ ଗୋପୀନାଥଙ୍କ ଭଉଣୀଙ୍କ ମଧ୍ୟରେ ଏ ଟଙ୍କା ବଣ୍ଟା ଯାଉଥିଲା । ଗୋପୀନାଥଙ୍କ ପୁଅମାନଙ୍କ ନାମ: ପଦ୍ମନାଭ, ଜୟଦେବ, ରଘୁନାଥ, ଦାମୋଦର ଓ ନୂତନ । ଏମାନଙ୍କ ମଧ୍ୟରୁ ପ୍ରଥମେ ଜୟଦେବ, ତା'ପରେ କ୍ରମେ ତାଙ୍କର ମା, ନୂତନ ଓ ଗୋପୀନାଥଙ୍କ ଭଉଣୀଙ୍କର ମୃତ୍ୟୁ ହେଲା । ଏମାନେ ସମସ୍ତେ ବେଓ୍ୱାରସ ଥିବାରୁ ମୃତ୍ୟୁ ପରେ ଏମାନଙ୍କ ପ୍ରାପ୍ୟ ଭତ୍ତା ଟଙ୍କା ଅନ୍ୟାନ୍ୟ ଜୀବିତ ଅଂଶୀଦାରଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଥିଲା । ଏହା ପରେ ୧୮୬୦ରେ ରଘୁନାଥ ଓ ୧୮୬୧ରେ ଦାମୋଦର ସେମାନଙ୍କ ବିଧବା ପତ୍ନୀମାନଙ୍କୁ ଛାଡ଼ି ପରଲୋକ ପ୍ରାପ୍ତ ହେଲେ । ଫଳରେ ୧୮୬୧ ବେଳକୁ ରାଜା ମୁକୁନ୍ଦଦେବ(୧୭୯୮-୧୮୧୭)ଙ୍କ ସାନଭାଇ ଗୋପୀନାଥ ଓ ଲୋକନାଥଙ୍କ ପ୍ରାପ୍ୟ ମାସିକ ଭତ୍ତା କମ୍ପାନୀ ଟଙ୍କା ୧୮୬-୧୦-୮ ତାଙ୍କର ଜୀବିତ ଉତ୍ତରାଧିକାରୀମାନଙ୍କୁ ନିମ୍ନ ଭାବରେ ବଣ୍ଟାଯାଇ ଦିଆଯାଇଥିଲା ।

| | |
|---|---|
| ଗୋପୀନାଥଙ୍କ ବଡ଼ପୁଅ ପଦ୍ମନାଭ | ଟ ୧୧୫-୮-୧୦ |
| ଗୋପୀନାଥଙ୍କ ମୃତପୁତ୍ର ରଘୁନାଥଙ୍କ ବିଧବାପତ୍ନୀ (ଚନ୍ଦ୍ରମଣୀ) | ଟ ୫୫-୧-୧୦ |
| ଗୋପୀନାଥଙ୍କ ମୃତପୂତ୍ର ଦାମୋଦରଙ୍କ ବିଧବାପତ୍ନୀ | ଟ ୧୬-୦-୦ |
| ମୋଟ | ଟ ୧୮୬-୧୦-୮ |

କଥିତ ସମୟକୁ ପଦ୍ମନାଭଙ୍କ ମୃତ୍ୟୁ ହେଲା । ତାଙ୍କର ଦୁଇଜଣ ବିଧବା ପତ୍ନୀ ଶ୍ରମତୀ ମହାଦେଈ ଓ ଚନ୍ଦ୍ରମଣି ମହାଦେଈ ଓ ଶ୍ରୀମତୀ ମହାଦେଈଙ୍କ ଆଡୁ ଥିବା ପୁତ୍ର ଭାଗିରଥୀ ଉତ୍ତରାଧୀକାରୀ ଥିଲେ । କିନ୍ତୁ ରାଣୀ ସୂର୍ଯ୍ୟମଣି ପଦ୍ମନାଭଙ୍କର ମାସିକ ଭତ୍ତା ଟ.୧୧୫-୮-୧୦ ତାଙ୍କର ଉତ୍ତରାଧିକାରୀମାନଙ୍କୁ ଦେବାକୁ ପ୍ରସ୍ତୁତ ନଥିଲେ । ସେ ଭାଗିରଥୀଙ୍କୁ ପଦ୍ମନାଭଙ୍କର ଜାରଜ ସନ୍ତାନ ବୋଲି ଘୋଷଣା କରି (ଅର୍ଥାତ୍ ଶ୍ରୀମତୀ ବା ଚନ୍ଦ୍ରମଣି କାହାରି ପୁତ୍ର ନୁହେଁ, ଆଉ କେଉଁ ଅଜ୍ଞାତ କୁଳଶୀଳାର ପୁତ୍ର) ଶ୍ରୀମତୀ ଓ ଚନ୍ଦ୍ରମଣି ପ୍ରତ୍ୟେକଙ୍କୁ ମାସିକ ୧୫ ଟଙ୍କା ହାରରେ ମୋଟ ମାତ୍ର ୩୦ ଟଙ୍କା ଦେବାକୁ ରାଜି ଥିଲେ । କିନ୍ତୁ ପୁରୀର କଲେକ୍ଟର କୃଷ୍ଣ ଗୋବିନ୍ଦ ଗୁପ୍ତ (ଯେ ଜଗନ୍ନାଥ ଜେନାମଣିଙ୍କୁ ରାଜାଭାବରେ ସ୍ୱୀକୃତି ଦିଆଯିବା ବିଷୟ ସମର୍ଥନ କରିଥିଲେ) ଓ ଓଡ଼ିଶାର କମିଶନର ରାଣୀଙ୍କ ଯୁକ୍ତିରେ ପ୍ରଭାବିତ ହୋଇ ନଥିଲେ । କମିଶନର ପଦ୍ମନାଭଙ୍କୁ ଦିଆଯାଉଥିବା ଭତ୍ତାରୁ ଶ୍ରୀମତୀ ମହାଦେଈ ଓ ତାଙ୍କର ପୁତ୍ର ଭାଗିରଥୀଙ୍କୁ ମାସିକ ୭୦ ଟଙ୍କା ଓ ଅବଶିଷ୍ଟ

ଚନ୍ଦ୍ରମଣିଙ୍କୁ (ଅର୍ଥାତ୍ ପଦ୍ମନାଭଙ୍କ ୨ୟ ବିଧବାପତ୍ନୀଙ୍କୁ) ଦିଆଯାଉ ବୋଲି ଆଦେଶ ଦେଇଥିଲେ । ରାଣୀ ସୂର୍ଯ୍ୟମଣି ଏହାର ପ୍ରତିବାଦ କରି ମକଦ୍ଦମା କରିବେ ବୋଲି ସରକାରଙ୍କୁ ଧମକ ଦେଇଥିଲେ । ସଂକ୍ଷେପରେ ଏହା ହିଁ ଘଟଣା ।

ତେଣୁ ରାଣୀ ସୂର୍ଯ୍ୟମଣି ପଦ୍ମନାଭ ରାୟଙ୍କ ପତ୍ନୀ ନ ଥିଲେ କି ତାଙ୍କର କେହି ସପତ୍ନୀ ମଧ୍ୟ ନଥିଲେ । ସେହିପରି ପଦ୍ମନାଭଙ୍କ ପୁଅ ଭାଗିରଥୀ ପୁରୀ ସିଂହାସନର ଦାବିଦାର ବି ନଥିଲେ । ରାଣୀ ସୂର୍ଯ୍ୟମଣି ଥିଲେ ରାଜା ମୁକୁନ୍ଦଦେବ (୧୭୯୮-୧୮୧୭)ଙ୍କ ନାତୁଣୀବୋହୂ ଓ ପଦ୍ମନାଭ ଥିଲେ ମୁକୁନ୍ଦଦେବଙ୍କ ଭାଇ ଗୋପୀନାଥଙ୍କ ପୁଅ ।

(ଖ) 'ଶତାବ୍ଦୀର ସୂର୍ଯ୍ୟ' ଅନୁଯାୟୀ ରାଣୀ ସୂର୍ଯ୍ୟମଣି ପୁରୀର କଲେକ୍ଟରଙ୍କୁ ୧୨/୭/୧୮୮୩ର ଦରଖାସ୍ତ ଲେଖିସାରିବା ପରେ ମଧୁସୂଦନଙ୍କୁ ପୁରୀ ଡକାଇଥିଲେ (ପୃ.୩୧୨/୨୪୧) । ପୁଣି ଶ୍ରୀନବରରୁ ସୂର୍ଯ୍ୟମଣିଙ୍କ ନିକଟରୁ ଫେରି ମଧୁସୂଦନ ପୁରୀର କଲେକ୍ଟର ଗ୍ରାଣ୍ଟଙ୍କ ସହ ସାକ୍ଷାତ କରିଥିଲେ (ପୃ.୩୨୪/୨୫୦) । ପରେ ମଧୁସୂଦନ ଚିଠା କରିଥିବା ରାଣୀଙ୍କ ଯେଉଁ ଦରଖାସ୍ତର ଉଦ୍ଧୃତି ଲେଖକ ଦେଇଛନ୍ତି (ପୃ.୩୨୭/୨୫୨) ତାହାର ତାରିଖ ୩୦/୭/୧୮୮୩ ବୋଲି Board of Revenueରେ ଗଚ୍ଛିତ ଥିବା Jagannanth Temple Correspondenceରୁ ଜଣାପଡ଼େ । ଏହାର ଅର୍ଥ ୧୨/୭/୧୮୮୩ରୁ ୩୦/୭/୧୮୮୩ ମଧ୍ୟରେ ଦିନେ ମଧୁସୂଦନ ରାଣୀ ସୂର୍ଯ୍ୟମଣି ଓ କଲେକ୍ଟର ଗ୍ରାଣ୍ଟଙ୍କ ସହ ଦେଖା କରିଥିବେ । କିନ୍ତୁ ପ୍ରକୃତରେ ସେଇ ସମୟରେ ଗ୍ରାଣ୍ଟ୍ ସାହେବ ପୁରୀର କଲେକ୍ଟର ନ ଥିଲେ । ସେତେବେଳେ ପୁରୀର କଲେକ୍ଟର ଥିଲେ, କୃଷ୍ଣ ଗୋବିନ୍ଦ ଗୁପ୍ତ ବା କେ. ଜି. ଗୁପ୍ତ । ଗୁପ୍ତ ସାହେବ ରାଣୀ ଓ ଜଗନ୍ନାଥ ଜେନାମଣିଙ୍କୁ ଦୃଢ ସମର୍ଥନ ଜଣାଇଥିଲେ ।

(ଗ) ସେହିପରି ବଡ଼ଲାଟ ରିପନ୍ ଜଗନ୍ନାଥ ଜେନାମଣିଙ୍କୁ ରାଜା ମୁକୁନ୍ଦଦେବ ରୂପେ ସ୍ୱୀକୃତି ଦେଇ ସନନ୍ଦ ଦେଲେ ୨୯-୩-୧୮୮୪ରେ । ସେ ସମ୍ବାଦ ପୁରୀର କଲେକ୍ଟର ରାଣୀ ସୂର୍ଯ୍ୟମଣିଙ୍କୁ ୧୫-୫-୧୮୮୪ରେ ଲିଖିତ ଏକ ପତ୍ର ମାଧ୍ୟମରେ ଜଣାଇଥିଲେ । ରାଣୀ ସୂର୍ଯ୍ୟମଣି ମଧ୍ୟ ଏ ଚିଠିର ଉତ୍ତର କଲେକ୍ଟରଙ୍କୁ ୧୦-୬-୧୮୮୪ରେ ଜଣାଇଥିଲେ । ସୁରେନ୍ଦ୍ର ବାବୁ ମଧ୍ୟ ରାଣୀଙ୍କ ଏ ଚିଠିର ନକଲ ଦେଇଛନ୍ତି (ପୃ.୩୭୦/୨୮୫-୮୬) । ତାଙ୍କ ମତରେ ଏକଥା ମଧୁସୂଦନ ୧୮୮୪ ଶେଷରେ ଡ଼ିସେମ୍ବରରେ, କଟକ ମ୍ୟୁନିସିପାଲ୍ଟିର ନିର୍ବାଚନ ଫଳ ବାହାରିବା ପରେ, ଏ ପ୍ରସଙ୍ଗର ତଦ୍‌ବୀର କରିବାପାଇଁ କଲିକତା ଯାଇ ଜାଣିଲେ ଓ ରାଣୀଙ୍କ ପୂର୍ବୋକ୍ତ ଚିଠି ଦେଖିଲେ । ଦୀର୍ଘ ୭ ମାସ କାଳ ମଧୁସୂଦନ ଏ ଖବର ଜାଣିପାରି ନଥିବା ଆଶ୍ଚର୍ଯ୍ୟର ବିଷୟ ।

କାରଣ ଓଡ଼ିଶାର କମିଶନରଙ୍କ ଅଫିସ୍ ତ ଥିଲା କଟକରେ ଓ ଏ ସମ୍ପର୍କୀୟ ସମସ୍ତ ଚିଠିପତ୍ରର ଆଦାନପ୍ରଦାନ କମିଶନରଙ୍କ ବାଟଦେଇ ହିଁ ହେଉଥିଲା । ପ୍ରଥମେ କଟକର କମିଶନରଙ୍କ ଅଫିସ୍‌ରେ ଏ ସମ୍ପର୍କରେ କିଛି ନ ବୁଝି ମଧୁସୂଦନ କଲିକତା ଯାଇଥିଲେ ବା କାହିଁକି ?

(ଘ) ସୁରେନ୍ଦ୍ର ବାବୁ ଲେଖିଛନ୍ତି (୧୩), ପୁରୀର କଲେକ୍ଟର "ଆନନ୍ଦ ମୋହନ ବାନାର୍ଜୀ ନାମରେ ଜଣେ ଆଗନ୍ତୁକଙ୍କୁ ଦେୱାନ ରୂପେ ଥାପିଦେଲେ ।" (ପୃ.୩୦୭/ ୨୩୮) । କିନ୍ତୁ ତାଙ୍କର ପ୍ରକୃତ ନାମ ହେଉଛି ଆନନ୍ଦ ମୁଖର୍ଜୀ (ଦ୍ର: Mukherji, P. 1977, pp. 389-90: Jagannath Temple Correspondence, No. 1433) ।

(ଙ) ସେହିପରି ସେ ଅନ୍ୟତ୍ର (୧୩) ଉଆସକରଣ ଦୁଃଖୀଶ୍ୟାମ ପଟ୍ଟନାୟକଙ୍କ ମୁଖରେ କୁହାଇ ଅଛନ୍ତି, "... ଦରଖାସ୍ତ ସବୁ କମିଶନର ମେଟ୍‌କାଫ୍ ସାହେବ ପାଖରେ" ଇତ୍ୟାଦି (ପୃ.୩୨୨/୨୪୯) । ୧୨-୭-୧୮୮୩ରୁ ୩୦-୭-୧୮୮୩ ମଧ୍ୟରେ କମିଶନର ମେଟ୍‌କାଫ୍ ଥିଲେ ନାଁ ସ୍ମିଥ୍ ଥିଲେ ?

(୧୭) କେନ୍ଦୁଝରର ପ୍ରଜା-ବିଦ୍ରୋହରେ ମଧୁସୂଦନଙ୍କ ଭୂମିକା ବିଷୟରେ ଉଲ୍ଲେଖ କରି (୧୮ଶ ପରିଚ୍ଛେଦ) ସେ ଧାରଣା ଦେଇଛନ୍ତି ଯେ ମଧୁସୂଦନ ଭୂୟାଁମାନଙ୍କୁ ବୁଝାଇ ଦେବା ପରେ ବିଦ୍ରୋହର ଅବସାନ ହେଲା (ପୃ.୫୨୭/୪୦୭) । କିନ୍ତୁ ପ୍ରକୃତପକ୍ଷେ ତାହା ଠିକ୍ ନୁହେଁ । ତା' ପରେ ବିଦ୍ରୋହର ଅବସାନ ହୋଇନଥିଲା । ତା'ପରେ ମଧ୍ୟ ବିଦ୍ରୋହ ବେଶ୍ କିଛିଦିନ ଧରି ଚାଲିଥିଲା ।

(୧୮) ସମ୍ବଲପୁରରୁ ଓଡ଼ିଆ ଭାଷାଉଚ୍ଛେଦ ପ୍ରସଙ୍ଗରେ 'ଶତାବ୍ଦୀର ସୂର୍ଯ୍ୟ'ରେ (୧୯ଶ ପରିଚ୍ଛେଦରେ) ଲେଖକ ଦୁଇ ସ୍ଥାନରେ ଷ୍ଟିଭେନ୍‌ସନ୍‌ଙ୍କୁ କଲେକ୍ଟର ବୋଲି ଉଲ୍ଲେଖ କରିଥିଲେହେଁ (ପୃ.୫୪୫ ଓ ୫୬୦/୪୨୨ ଓ ୪୩୪) ଅନ୍ୟ ଏକ ସ୍ଥାନରେ ତାଙ୍କୁ କମିଶନର୍ ବୋଲି କୁହାଯାଇଛି (ପୃ. ୫୫୫/୪୨୯) । ଏ ମଧ୍ୟରୁ କେଉଁଟା ଠିକ ?

(୧୯) ପୂର୍ବାପର ସଙ୍ଗତିକୁ ବିଚାରକୁ ନେଲେ 'ଶତାବ୍ଦୀର ସୂର୍ଯ୍ୟ'ରେ ଦିଆଯାଇଥିବା 'ଉତ୍କଳ ଦୀପିକା' ସମ୍ପର୍କୀୟ କେତୋଟି ସୂଚନା ଭ୍ରମାତ୍ମକ ବୋଲି ମନେହୁଏ ଯଥା:

(କ) ଉତ୍କଳ ଦୀପିକା ୭-୮-୧୮୭୧ (ପୃ.୬୩/୫୧, ପାଦଟୀକା) ।

(ଖ) ଉତ୍କଳ ଦୀପିକା ୨୦-୯-୧୮୮୪ (ପୃ.୩୬୬/୨୮୨) । ଏହା ବୋଧହୁଏ ହେବ ୨୦-୧୨- ୧୮୮୪ ।

(ଗ) ଉତ୍କଳ ଦୀପିକା ୮-୧-୧୮୮୯ (ପୃ. ୪୧୧/୩୧, ପାଦଟୀକା)

(୨୦) 'ଶତାବ୍ଦୀର ସୂର୍ଯ୍ୟ'ରେ ବାଲେଶ୍ୱରର କଲେକ୍ଟର ବିଜ୍‌ନୋଲ୍‌ଡ଼ଙ୍କ ଯେଉଁ କବିତାଟି ଉଦ୍ଧାର କରାଯାଇଛି (୪/୬) ତାହାର ତୃତୀୟ ଚରଣଟି "The crack Collector, man of equal right" ବୋଲି ଦିଆଯାଇଛି (ପୃ.୮୪/୬୭) । ପ୍ରକୃତରେ ତାହାର ତୃତୀୟ ଚରଣଟି ହେବ "The crack Collector, man of equal might." (Beames, John, 1961, p.200)

(ଘ)

ପରିଶେଷରେ ସୁରେନ୍ଦ୍ରବାବୁ ଜଣେ ଅତି ପ୍ରତିଭାଶାଳୀ ସାହିତ୍ୟିକ । 'ଶତାବ୍ଦୀର ସୂର୍ଯ୍ୟ' ତାଙ୍କର ଏକ ମହାନ୍ କୃତି । ସେଥିରେ ଥିବା ତଥ୍ୟଗତ ତ୍ରୁଟିଗୁଡ଼ିକୁ ଯଦି ପରବର୍ତ୍ତୀ ସଂସ୍କରଣରେ ସଜାଡ଼ି ଦିଆଯାଇପାରନ୍ତା ତାହାର ମୂଲ୍ୟ ଆହୁରି ବୃଦ୍ଧି ପାଆନ୍ତା । ସୁରେନ୍ଦ୍ର ବାବୁଙ୍କ ପାଖରେ ଏ ଦାବି ସମଗ୍ର ଓଡ଼ିଆ ଜାତିର ।

## ଉପାଦାନ ପଞ୍ଜିକା

(କ) ଅପ୍ରକାଶିତ

Jagannath Temple Correspondance ବା ଜଗନ୍ନାଥ ମନ୍ଦିର ପତ୍ରାବଳୀ । (Board of Revenueରେ ସଂରକ୍ଷିତ Jagannath Temle Correspondance. Typed copy prepared by Orissa/German Research Project I.)

(ଖ) ପ୍ରକାଶିତ

ଦାସ, ନୀଳକଣ୍ଠ, ୧୯୬୭, ନୀଳକଣ୍ଠ ଗ୍ରନ୍ଥାବଳୀ, ୩ୟ ଖଣ୍ଡ । କଟକ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ।

ପଟ୍ଟନାୟକ, ସୁଧାକର, ୧୯୭୨, ସମ୍ବାଦପତ୍ରରୁ ଓଡ଼ିଶାର କଥା, ୧ମ ଖଣ୍ଡ । କଟକ, ଗ୍ରନ୍ଥମନ୍ଦିର ।

ବନ୍ଦ୍ୟୋପାଧ୍ୟାୟ, ବ୍ରଜେନ୍ଦ୍ର ନାଥ, ୧୯୫୪, ବଙ୍ଗୀୟ ନାଟ୍ୟଶାଳା (ବିଶ୍ୱଭାରତୀ, ବିଶ୍ୱବିଦ୍ୟାସଂଗ୍ରହ-୧୫) ।

ବନ୍ଦ୍ୟୋପାଧ୍ୟାୟ, ବ୍ରଜେନ୍ଦ୍ର ନାଥ,୧୯୫୫, ମଧୁସୂଦନ ଦତ୍ତ (ସାହିତ୍ୟସାଧକ ଚରିତମାଳା-୨୩), କଲିକାତା, ବଙ୍ଗୀୟ-ସାହିତ୍ୟ-ପରିଷଦ ।

ବନ୍ଦ୍ୟୋପାଧ୍ୟାୟ, ବ୍ରଜେନ୍ଦ୍ର ନାଥ, ୧୩୭୭ ସାଲ୍, ସମ୍ବାଦପତ୍ରେ ସେ କାଳେର୍ କଥା, ୧ମ ଖଣ୍ଡ, କଲିକାତା, ବଙ୍ଗୀୟ-ସାହିତ୍ୟ-ପରିଷତ ।

ବାଗଲ୍, ଯୋଗେଶଚନ୍ଦ୍ର, ୧୯୫୭, ରାଧାକାନ୍ତଦେବ (ସାହିତ୍ୟ ସାଧକ ଚରିତମାଳା–୨୦), କଲିକାତା, ବଙ୍ଗୀୟ- ସାହିତ୍ୟ-ପରିଷତ ।

ବାଗଲ୍, ଯୋଗେଶଚନ୍ଦ୍ର, ୧୩୮୩ ସାଲ୍, ରାଧାକମଳ ସେନ, କୃଷ୍ଣମୋହନ ବନ୍ଦ୍ୟୋପାଧ୍ୟାୟ (ସାହିତ୍ୟସାଧକ ଚରିତମାଳା-୭୨), କଲିକାତା, ବଙ୍ଗୀୟ-ସାହିତ୍ୟ-ପରିଷତ ।

ମୁଖୋପାଧ୍ୟାୟ, ପ୍ରଭାତ କୁମାର, ୧୯୭୦, ରବୀନ୍ଦ୍ର ଜୀବନୀ, ୧ମ ଖଣ୍ଡ, ବିଶ୍ୱଭାରତୀ

ସେନ, ନବୀନଚନ୍ଦ୍ର, ୧୯୫୯, ନବୀନଚନ୍ଦ୍ର ରଚନାବଳୀ, ୨ୟ ଖଣ୍ଡ, 'ଆମାର ଜୀବନ', ୩ୟ ଭାଗ, କଲିକାତା, ବଙ୍ଗୀୟ-ସାହିତ୍ୟ-ପରିଷତ ।

Beames, John,1870, On the Relation of Uriya to the Other Modern Aryan Languages. in : Proceedings of Asiatic Society, pp. 192-216 1966.

Beames, John, 1961, Memoir of a Bengal Civilian. London, Chatto & Windus.

Beames, John, 1966/1970, A Comparative Grammar of the Modern Aryan Languages of India. (Three volumes now published in one format) New Delhi, Munshiram

De, S.K. 1962, Bengali Litereature in the Nineteenth Century. Calcutta, Firma K. L. M.

Kopf, David, (1969), British Orientalism & the Bengal Renaissance. Calcutta, Firma K. L. M.

Mukherjee, P. (1964), Utkal University History of Orissa Vol. VI.

Mukherjee, P. (1977), History of Jagannath Temple in the 19th Century. Calcutta, Firma K. L. M.

The Dictionary of National Biography Vol. VI & Vol. XII (1973) by Stephen, S. & Lee. S. .

[ ଏହି ପ୍ରବନ୍ଧର ଦ୍ୱିତୀୟ ଭାଗଟି ପ୍ରଥମେ ୧୯୮୪ରେ 'ଝଙ୍କାର'ର ୩୬/୭ ଅକ୍ଟୋବର ସଂଖ୍ୟାରେ 'ଶତାବ୍ଦୀର ସୂର୍ଯ୍ୟ ଓ ଊନବିଂଶ ଶତାବ୍ଦୀ' ଶିରୋନାମା ତଳେ, ସାମାନ୍ୟ ପରିମାଣରେ ଖଣ୍ଡିତ ଭାବରେ, ପ୍ରକାଶ ପାଇଥିଲା (ଓ ମୁଁ ଜାଣିବାରେ ତାହା ପ୍ରକାଶ ପାଇବା ପରେ ଓଡିଆ ସାହିତ୍ୟପ୍ରେମୀ ବୁଦ୍ଧିଜୀବୀ ମହଲରେ ଏକ ଆଲୋଡନ ସୃଷ୍ଟି ହୋଇଥିଲା) ଓ ପ୍ରଥମ ଭାଗଟି ତାର ପରେ (ପ୍ରଥମେ 'ଝଙ୍କାର'କୁ ପଠାଯାଇଥିଲେ ମଧ୍ୟ ସେଥିରେ ପ୍ରକାଶ ନ ପାଇବାରୁ ପରେ) ୧୯୮୬ର ଅକ୍ଟୋବରରେ, 'ଇସ୍ତାହାର'-୩୬ରେ 'ଶତାବ୍ଦୀର ସୂର୍ଯ୍ୟ-ଏକ ଦୃଷ୍ଟିପାତ' ଶିରୋନାମା ତଳେ ପ୍ରକାଶ ପାଇଥିଲା। କିନ୍ତୁ ବର୍ତ୍ତମାନ ଉଭୟ ଭାଗକୁ ସଂଯୁକ୍ତ କରାଯାଇ - ବିଶେଷ ଭାବରେ ଉଭୟର ପ୍ରକାଶନ-କ୍ରମ ପରିବର୍ତ୍ତନ କରାଯାଇ - ମାତ୍ର ଗୋଟିଏ ପ୍ରବନ୍ଧ ରୂପରେ ତାହାକୁ ଉପସ୍ଥାପନ କରାଯାଉଛି ଓ ସେ ହେତୁ ଏଥିରେ କେତେକ ଆବଶ୍ୟକୀୟ ପରିବର୍ତ୍ତନ ସହ ଆଉ କେତେକ ପରିବର୍ତ୍ତନର ସ୍ପର୍ଶ ଦିଆଯାଇଛି। ୧୯୮୪ରେ ମୋର 'ଶତାବ୍ଦୀର ସୂର୍ଯ୍ୟ ଓ ଊନବିଂଶ ଶତାବ୍ଦୀ' ପ୍ରବନ୍ଧ ପ୍ରକାଶ ପାଇବା ପରେ ସୁରେନ୍ଦ୍ରବାବୁ ମତେ ଏକ ବ୍ୟକ୍ତିଗତ ପତ୍ର ଲେଖି ପୁସ୍ତକରେ ଥିବା ତଥ୍ୟଗତ ପ୍ରମାଦକୁ ସଂଶୋଧନ କରିଦେବାପାଇଁ ଅନୁରୋଧ କରିଥିଲେ। କିନ୍ତୁ ସେପରି ମହାନ ସାହିତ୍ୟକୃତିରେ ହାତ ମାରିବା ମୋ ପକ୍ଷରେ ଧୃଷ୍ଟତା ହେବ ଭାବି ମୁଁ ତାହା କରିନଥିଲି। ତେବେ ୧୯୮୬ରେ ମଧ୍ୟ 'ଶତାବ୍ଦୀର ସୂର୍ଯ୍ୟ'ର ତୃତୀୟ ସଂସ୍କରଣ ପ୍ରକାଶ ପାଇଥିଲା, ଯାହାର ଭୂମିକା ସୁରେନ୍ଦ୍ର ମହାନ୍ତି ଲେଖିଥିଲେ ୧୯୮୬ର ସେପ୍ଟେମ୍ବର ୨୫ ତାରିଖରେ। ସେଥିରେ ସେ ଲେଖିଥିଲେ, "ଇତି ମଧ୍ୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡିଆ ଅଧ୍ୟାପକ ଶ୍ରୀ ଗଗନେନ୍ଦ୍ର ନାଥ ଦାସ ଏହି ପୁସ୍ତକର ପ୍ରଥମ ସଂସ୍କରଣରେ ଥିବା କେତେକ ତ୍ରୁଟି ସମ୍ପର୍କରେ ୧୯୮୪ ମସିହା ପୂଜାସଂଖ୍ୟା 'ଝଙ୍କାର'ରେ ଆଲୋଚନା କରି, ଏକ ଦୀର୍ଘ ପ୍ରବନ୍ଧ ଲେଖିଥିଲେ। ପରେ ଏହି ପ୍ରବନ୍ଧ ସମ୍ପର୍କରେ ମୁଁ ତାଙ୍କ ସହିତ ବ୍ୟକ୍ତିଗତ ଭାବରେ ଆଲୋଚନା କରିଥିଲି। ସେ ଦର୍ଶାଇଥିବା ପ୍ରତ୍ୟେକଟି ତ୍ରୁଟି ମୁଁ ପରୀକ୍ଷା କରି ଦେଖିଛି। ସେଥି ମଧ୍ୟରୁ ଯେଉଁ କେତୋଟି ତଥ୍ୟର ସଂଶୋଧନ ମୁଁ ଆବଶ୍ୟକ ମନେ କରିଛି, ତାହାକୁ ଏହି ସଂସ୍କରଣରେ ମାର୍ଜିତ କରିଦେଇଛି। ଗଗନେନ୍ଦ୍ର ବାବୁ ଏଥିପାଇଁ ଯେଉଁ କଷ୍ଟ ସ୍ୱୀକାର କରିଛନ୍ତି, ସେଥିପାଇଁ ସେ ପ୍ରକୃତରେ ଧନ୍ୟବାଦାର୍ହ।" ତେବେ ସୁରେନ୍ଦ୍ରବାବୁ ମୁଁ ଦର୍ଶାଇଥିବା ଆଉ କେତେକ ତଥ୍ୟଗତ ପ୍ରମାଦକୁ ସଂଶୋଧନ କରିନାହାଁନ୍ତି ଓ ତା ବ୍ୟତୀତ ୧୯୮୪ରେ ମୁଁ ଦର୍ଶାଇନଥିବା ଆଉ କେତେକ ତଥ୍ୟଗତ ପ୍ରମାଦ ମଧ୍ୟ 'ଶତାବ୍ଦୀର ସୂର୍ଯ୍ୟ'ରେ ରହିଯାଇଛି। ଓଡିଆ ଭାଷାସୁରକ୍ଷା ଆନ୍ଦୋଳନ ସମ୍ପର୍କରେ ପରେ ମୁଁ ବିସ୍ତାରିତ ଆଲୋଚନା କରିଛି। ସେଥିପାଇଁ ମୋର 'ଓଡିଆ

ଭାଷା-ସୁରକ୍ଷା ଆନ୍ଦୋଳନ' ପୁସ୍ତକ (୧୯୯୩) ଓ ୨୦୧୪ରେ ପ୍ରକାଶିତ 'ପୁନଶ୍ଚ ଜନଶ୍ରୁତି କାଞ୍ଚିକାବେରୀ' ପୁସ୍ତକରେ ସ୍ଥାନିତ 'ଗୌରୀଶଙ୍କର ଓ ଓଡିଆ ଭାଷା-ସୁରକ୍ଷା ଆନ୍ଦୋଳନ' ପ୍ରବନ୍ଧ ଦ୍ରଷ୍ଟବ୍ୟ । ଓଡିଆ ପୁରୀ ରାଜବଂଶ ସମ୍ପର୍କରେ ତଥା ଜଗନ୍ନାଥ ଜୋନାମଣିଙ୍କୁ ପୁରୀର ରାଜା ପଦବୀ ପ୍ରାପ୍ତିରେ ମଧୁସୂଦନଙ୍କ ଭୂମିକା ସମ୍ପର୍କରେ ବିସ୍ତୃତ ବିବରଣୀ ମୁଁ 'ପତିତପାବନ ଜଗନ୍ନାଥ' ନାମକ ପ୍ରବନ୍ଧରେ ('ଝଙ୍କାର' ୩୭/୬, ୧୯୮୫) ଆଲୋଚନା କରିଥିଲି, ତାହା ଏହି ସଙ୍କଳନରେ ମଧ୍ୟ ଅନ୍ତର୍ଗତ ହୋଇଛି । ସେହିପରି କେନ୍ଦୁଝରର ପ୍ରଜାବିଦ୍ରୋହ ବା ଭୂୟାଁମେଳି ସମ୍ପର୍କିତ ବିସ୍ତାରିତ ବିବରଣୀପାଇଁ ମୋର 'ସରସ୍ୱତୀ ଫକୀରମୋହନ : ସାହିତ୍ୟ ଓ ବ୍ୟକ୍ତିତ୍ୱ' ପୁସ୍ତକ ଦ୍ରଷ୍ଟବ୍ୟ ।]



# ସ୍ୱାଧୀନତା ପରବର୍ତ୍ତୀ କାଳରେ ସାହିତ୍ୟିକ ଭାଷାର ପରିବର୍ତ୍ତନ ଓ କଥିତ ଭାଷା ସହ ସାହିତ୍ୟିକ ଭାଷାର ସମ୍ପର୍କ

ଭାଷା ପରିବର୍ତ୍ତନଶୀଳ । ଆଉ ଏ ପରିବର୍ତ୍ତନ ଧୀରେ ଧୀରେ ହୁଏ । ଆଗରୁ ଏ ତତ୍ତ୍ୱ ମୋଟାମୋଟି ଜଣାଇଥିଲେ ମଧ୍ୟ ମାତ୍ର ଗତ ୧୯ଶ ଶତାବ୍ଦୀରେ ଭାଷାବିଜ୍ଞାନୀମାନେ ଏ ସମ୍ପର୍କରେ ବିଶେଷ ଭାବରେ ସଚେତନ ହେଲେ ଓ ବୈଜ୍ଞାନିକ ରୀତିରେ ଏ ପରିବର୍ତ୍ତନକୁ ମାପିବାପାଇଁ ଚେଷ୍ଟାକଲେ । ଏ ପରିବର୍ତ୍ତନ ଆହୁରି ଧୀରେ ଧୀରେ ହୁଏ ଲିଖିତ ଭାଷାରେ । ପରିବର୍ତ୍ତନ ଧୀରେ ଧୀରେ ହେଉଥିବାରୁ ଏ ପରିବର୍ତ୍ତନକୁ ମାପିବା ଓ ତାର ସ୍ୱରୂପ କଳନା କରିବା ସହଜ ନୁହେଁ । କାଳଗତ ବ୍ୟବଧାନର କଷଟି ପଥର ଉପରେ ହିଁ ଏ ପରିବର୍ତ୍ତନ ଧରାପଡ଼େ; ଫୁଟି ଉଠେ । ତେଣୁ ଏ ପରିବର୍ତ୍ତନକୁ ମାପିବା ପାଇଁ ସମୟର ବେଶ୍ କିଛି ବ୍ୟବଧାନକୁ ମାନି ନେବାକୁ ହେବ । ତା' ନହେଲେ ପରିବର୍ତ୍ତନ ସ୍ପଷ୍ଟ ଭାବରେ ଧରା ପଡ଼ିବ ନାହିଁ; ଜଣାପଡ଼ିବ ନାହିଁ, ତାକୁ ମାପିବା ବା ତାର ସ୍ୱରୂପ କଳନା କରିବା ତ ଦୂରର କଥା ।

ଓଡ଼ିଆ ଭାଷାକ୍ଷେତ୍ର(speech area)ର ଦକ୍ଷିଣ ସୀମାନ୍ତରୁ ଆରମ୍ଭ କରି ଉତ୍ତର ସୀମାନ୍ତଯାଏ ପାଖାପାଖି ଯେ କୌଣସି ଦୁଇଟି ଗାଁର ଲୋକଙ୍କ ଭାଷା ମଧ୍ୟରେ ଥିବା ପାର୍ଥକ୍ୟ ହଠାତ୍ ଧରାପଡ଼େ ନାହିଁ ବା ଜଣାପଡ଼େ ନାହିଁ । କିନ୍ତୁ ଦକ୍ଷିଣାଞ୍ଚଳୀୟ ଓଡ଼ିଆ ଓ ଉତ୍ତରାଞ୍ଚଳୀୟ ଓଡ଼ିଆ ମଧ୍ୟରେ ଥିବା ପାର୍ଥକ୍ୟ ସହଜରେ ଧରାପଡ଼େ । ଗଞ୍ଜାମ ବା କୋରାପୁଟ ଜିଲ୍ଲାର ଯେକୌଣସି ଗାଁ ଲୋକଙ୍କ ଭାଷା ସହ ବାଲେଶ୍ୱର ବା ମୟୂରଭଞ୍ଜ ଜିଲ୍ଲାର ଯେକୌଣସି ଗାଁ ଲୋକଙ୍କ ଭାଷାର ତୁଳନା କଲେ ପାର୍ଥକ୍ୟଟା ସହଜରେ ଜଣାପଡ଼ିଯାଏ । ସେହିପରି ୧୯୪୭ ଅଗଷ୍ଟ ୧୪ ତାରିଖର ସାହିତ୍ୟିକ ଭାଷା ସହ ସେହି ବର୍ଷର ଅଗଷ୍ଟ ୧୫ ତାରିଖର ସାହିତ୍ୟିକ ଭାଷାର ତୁଳନା କଲେ ଭାଷାରେ

ପରିବର୍ତ୍ତନ ହେଉଥିବା ଜଣାପଡ଼ିବ ନାହିଁ । କିନ୍ତୁ ସ୍ୱାଧୀନତାର ୨୫ ବର୍ଷ ପୂର୍ବବର୍ତ୍ତୀ ଅର୍ଥାତ୍ ୧୯୨୨ର ସାହିତ୍ୟିକ ଭାଷା ସହ ସ୍ୱାଧୀନତାର ୨୫ବର୍ଷ ପରବର୍ତ୍ତୀ ଅର୍ଥାତ୍ ୧୯୭୨ର ସାହିତ୍ୟିକ ଭାଷାର ତୁଳନା କଲେ ହିଁ ସାହିତ୍ୟିକ ଭାଷାରେ କିପରି ପରିବର୍ତ୍ତନ ହେଉଛି ତା କିଛି ପରିମାଣରେ ସ୍ପଷ୍ଟ ହୋଇଯିବ । ମୋଟ ଉପରେ ସ୍ଥାନଗତ ବ୍ୟବଧାନ ପରି କାଳଗତ ବ୍ୟବଧାନକୁ କଷଟି ପଥର କରି ତା ଉପରେ ଏ ପରିବର୍ତ୍ତନକୁ କଷିବା ଦରକାର ।

ଜଣେ ଓଡ଼ିଆ ଭାଷାଭାଷୀ ମଧ୍ୟ ସବୁ ସମୟରେ ଭାଷାର ଗୋଟିଏ ସ୍ୱରୂପ ବା ଏକ ପ୍ରକାରର ଓଡ଼ିଆ ଭାଷା ବ୍ୟବହାର କରେ ନାହିଁ । ଘରେ ସ୍ତ୍ରୀ ସହ କଥାବାର୍ତ୍ତା କରିବାର ଭାଷାର ରୂପ ସଭାରେ ଭାଷଣ ଦେବାର ଭାଷାର ରୂପଠାରୁ ଅଲଗା ହୋଇଥାଏ । ବାପା, ମା' ଓ ଅନ୍ୟାନ୍ୟ ଗୁରୁଜନମାନଙ୍କ ସହ କଥାବାର୍ତ୍ତା କରିବାର ଭାଷା, ସାଙ୍ଗସାଥୀଙ୍କ ସହ କଥାବାର୍ତ୍ତା କରିବାର ଭାଷା ସହ ମିଳେ ନାହିଁ । ବ୍ୟକ୍ତି ତା ଜୀବନରେ ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହେବା ସହ ଭାଷାର ଭିନ୍ନ ଭିନ୍ନ ରୂପର ବ୍ୟବହାର କରେ । କେବଳ ସେତିକି ନୁହେଁ, ଜଣେ ଲୋକର ବାଲ୍ୟ, କୈଶୋର, ଯୌବନ, ପ୍ରୌଢ଼ ଓ ବୃଦ୍ଧାବସ୍ଥାର ଭାଷାର ରୂପ ମଧ୍ୟ ଏକ ନୁହେଁ । ସେଥିପାଇଁ ଭାଷାବିଜ୍ଞାନୀ J.R. Firth କହିଛନ୍ତି, "The social person collects a varied repertory of interlocking roles without conflict or serious dishormony. .... For purpose of linguistics, such a person would be regarded as being in command of a constellation of restricted languages."

ସେହିପରି ଜଣେ ସାହିତ୍ୟିକ ମଧ୍ୟ ସାହିତ୍ୟ ସାଧନାର ବିଭିନ୍ନ ପ୍ରସଙ୍ଗରେ ତଥା ବିଭିନ୍ନ ସ୍ତରରେ ଗୋଟିଏ ଭାଷାର ବିଭିନ୍ନ ରୂପର ବ୍ୟବହାର କରିଥାଏ ।

ପୁଣି ଲିଖିତ ଭାଷାର ବିଶେଷ ଭାବରେ ସାହିତ୍ୟିକ ଭାଷାର ବହୁ ଭେଦ ଥାଇପାରେ । ଗଦ୍ୟର ଭାଷା ଓ ପଦ୍ୟର ଭାଷା ମଧ୍ୟରେ ଭେଦ ରହେ; ଉପନ୍ୟାସ ଓ କବିତାର ଭାଷା ସମାନ ନ ହୋଇପାରେ; ପୁଣି କବିତାର ଭାଷାଠାରୁ ନାଟକର ଭାଷା ଅଲଗା ହୁଏ; ଆହୁରି ମଧ୍ୟ ନାଟକର ଭାଷା ଓ ପ୍ରବନ୍ଧ/ସମାଲୋଚନା ଲେଖିବାର ଭାଷା ମଧ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କରାଯାଇପାରେ । ସେଥିରେ ପୁଣି ଐତିହାସିକ ନାଟକର ଭାଷା ସମସାମୟିକ ପୃଷ୍ଠଭୂମିରେ ରଚିତ ନାଟକର ଭାଷାଠାରୁ ଐତିହାସିକ ଗଳ୍ପ/ଉପନ୍ୟାସ ଭାଷାର ଅଧିକ ନିକଟବର୍ତ୍ତୀ ହୋଇଥାଏ । ସେହିପରି ଆଦିବାସୀ ସମାଜର ପୃଷ୍ଠଭୂମିରେ ରଚିତ ଗଳ୍ପ/ଉପନ୍ୟାସ/ନାଟକର ଭାଷାଠାରୁ ମହାନଗରୀର ପୃଷ୍ଠଭୂମିରେ ରଚିତ ଗଳ୍ପ/ଉପନ୍ୟାସ/ନାଟକର ଭାଷା ଭିନ୍ନ ହୁଏ । ବୀର ବା ଶୃଙ୍ଗାର ରସ ସୃଷ୍ଟିରେ ଯେଉଁ ଭାଷା ବ୍ୟବହୃତ ହୁଏ ହାସ୍ୟରସ ସୃଷ୍ଟିପାଇଁ ବେଳେବେଳେ ସେଇ ଭାଷାକୁ ବିକୃତ କରିଦେବାକୁ

ପଡ଼େ । ସାହିତ୍ୟର କୌଣସି ବିଭାଗ ଯଥା କବିତା କ୍ଷେତ୍ରରେ ପରିବର୍ତ୍ତନର ଗତି ଦ୍ରୁତ ହେବାବେଳେ ସାହିତ୍ୟର ଅନ୍ୟ କୌଣସି ବିଭାଗ ଯଥା ନାଟକ ବା ପ୍ରବନ୍ଧ କ୍ଷେତ୍ରରେ ପରିବର୍ତ୍ତନର ଗତି ଧୀର ଓ ମନ୍ଥର ହୋଇପାରେ ।

ଶେଷରେ ଯେ କୌଣସି ଦୁଇଜଣ ସାହିତ୍ୟିକଙ୍କର ଭାଷା ପ୍ରାୟ ସମାନ ହୁଏ ନାହିଁ । ସେଥିରେ ସାହିତ୍ୟିକର ପୃଷ୍ଠଭୂମି ଅର୍ଥାତ୍ ଯେଉଁ ପରିବେଶରେ ସେ ଜନ୍ମ ହୋଇଥାଏ, ବଢ଼ିଥାଏ, ତା'ର ଶିକ୍ଷାଦୀକ୍ଷା ଓ ସାହିତ୍ୟାଦର୍ଶ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ ।

ମୋଟ ଉପରେ କୌଣସି ସାହିତ୍ୟିକ ଭାଷାର ପରିବର୍ତ୍ତନ ମାପିବା, ତା'ର ଯଥାର୍ଥ ସ୍ୱରୂପ କଳନା କରିବା ଓ ତା'ର ଗତି ନିର୍ଦ୍ଦେଶ କରିବା ବଡ଼ କଠିନ କାମ, ସମୟସାପେକ୍ଷ ଓ ବହୁ ଲୋକଙ୍କର କାମ (team work) । ବୈଜ୍ଞାନିକ ରୀତିରେ ସାହିତ୍ୟିକ-ଓଡ଼ିଆ (literary Odia)ର ଏ ପରିବର୍ତ୍ତନ ଅନୁଶୀଳନର ପ୍ରଚେଷ୍ଟାର ଅୟମାରମ୍ଭ ହୋଇନାହିଁ କହିଲେ ଚଳେ । ବର୍ତ୍ତମାନର ପରିସ୍ଥିତି ମଧ୍ୟ ସେଥିପାଇଁ ବିଶେଷ ଅନୁକୂଳ ନୁହେଁ । ତେଣୁ ଏଠାରେ ସେ ସମ୍ପର୍କରେ ସାମାନ୍ୟ ସାଧାରଣ ସୂଚନା ପ୍ରଦାନ କରିବା ଛଡ଼ା ବୈଜ୍ଞାନିକ ରୀତିରେ ଅନୁଶୀଳନ କରି ସୁଚିନ୍ତିତ ମତାମତ ଦିଆଯିବାର ପ୍ରଚେଷ୍ଟା କରାଯିବ ନାହିଁ ।

ସାହିତ୍ୟିକ ଭାଷାର ପରିବର୍ତ୍ତନ କଳନା କରିବାର ବହୁ ମାପକାଠି ରହିଛି । ଭାଷାର ଶବ୍ଦ ଭଣ୍ଡାରର ଅନୁଶୀଳନ ସେହି ମାପକାଠି ମଧ୍ୟରୁ ଗୋଟିଏ ।

ସ୍ୱାଧୀନତା ପରବର୍ତ୍ତୀ ସାହିତ୍ୟିକ-ଓଡ଼ିଆର ଶବ୍ଦ ଭଣ୍ଡାରର ଅନୁଶୀଳନ କଲେ ଦେଖାଯିବ ଓଡ଼ିଆ-ସାହିତ୍ୟକୁ ବହୁ ନୂତନ ଶବ୍ଦର ଆମଦାନୀ ହୋଇଛି । ସ୍ୱାଧୀନତାର ଠିକ୍ ପୂର୍ବେ ବା ଠିକ୍ ପରେ ସଙ୍କଳିତ ଯେ କୌଣସି ଓଡ଼ିଆ ଅଭିଧାନରେ ବର୍ତ୍ତମାନର ସାହିତ୍ୟିକ-ଓଡ଼ିଆରେ ବ୍ୟବହୃତ ବହୁ ଶବ୍ଦ ମିଳିବ ନାହିଁ । ଆଉ ଏପରି ଶବ୍ଦର ସଂଖ୍ୟା କିଛି କମ୍ ନୁହେଁ, ଅନୁମାନ ବେଶ୍ କେତେ ହଜାର ହେବ ।

ଓଡ଼ିଆ ସାହିତ୍ୟକୁ ନବାଗତ ଏଇ ଶବ୍ଦଗୁଡ଼ିକୁ ମୋଟାମୋଟି ନିମ୍ନଲିଖିତ ଭାବରେ ବିଭକ୍ତ କରାଯାଇପାରେ:

(କ) ଅନ୍ୟାଗତ ବା ଅନ୍ୟ ଭାଷାରୁ ଆହୃତ

(ଖ) ଅନ୍ୟ ଭାଷାରୁ ଅନୁଦିତ

(ଗ) ନୂତନ-ସୃଷ୍ଟି

(ଘ) କଥିତ-ଓଡ଼ିଆରୁ ସାହିତ୍ୟିକ-ଓଡ଼ିଆକୁ ଏବେ ପ୍ରବେଶର ଅଧିକାର ପାଇଥିବା କେତେକ ଶବ୍ଦ ।

ଏ ମଧ୍ୟରୁ ପ୍ରଥମେ ଅନ୍ୟ ଭାଷାରୁ ଆହୃତ ଶବ୍ଦଗୁଡ଼ିକର ବିଚାର କରାଯାଉ ।

ଏ ମଧ୍ୟରେ ରହିଛି ଇଂରେଜୀ ଶବ୍ଦ ତଥା ଇଂରାଜୀ ଭାଷା ମାଧ୍ୟମରେ ଆହୃତ ଅନ୍ୟାନ୍ୟ ପାଶ୍ଚାତ୍ୟ ଭାଷାର ଶବ୍ଦସବୁ, ଦ୍ରାବିଡ଼ ଓ ଅଷ୍ଟ୍ରୋଏସିଆଟିକ୍ ଭାଷା ପରିବାରର ଅନ୍ତର୍ଗତ ଆଦିବାସୀମାନଙ୍କଦ୍ୱାରା କଥିତ କେତେକ ଭାଷାର, ହିନ୍ଦୀ, ବଙ୍ଗଳା ପରି ନବ୍ୟ ଭାରତୀୟ ଆର୍ଯ୍ୟ ଭାଷାର ଓ ପାର୍ଶୀ, ଆରବୀ ପ୍ରଭୃତି ଭାଷାର ଶବ୍ଦ ।

ଏଇ ଶବ୍ଦଗୁଡ଼ିକ ମଧ୍ୟରେ ଇଂରାଜୀ ଭାଷାରୁ ଆହୃତ ଶବ୍ଦଗୁଡ଼ିକର ସଂଖ୍ୟା ବେଶି । ଇଂରାଜମାନଙ୍କଠାରୁ ଆମେ ରାଜନୀତିକ ସ୍ୱାଧୀନତା ହାସଲ କରିବା ପରେ ବିଭିନ୍ନ କାରଣରୁ ଇଂରାଜୀ ଭାଷାରୁ ଅଧିକରୁ ଅଧିକ ଶବ୍ଦ ଆହରଣ କରିବାର ପ୍ରବଣତା ଆମର କମିବା ପରିବର୍ତ୍ତେ ବଢ଼ିଛି ବୋଲି ମନେହୁଏ । ନିମ୍ନରେ କେତୋଟି ଉଦାହରଣ ଦିଆଗଲା:

(୧) ସୁରେନ୍ଦ୍ର ମହାନ୍ତିଙ୍କ କ୍ଷୁଦ୍ରଗଳ୍ପରୁ: "ଓଁକାର, ତୁମେ ଗୋଟାଏ ବୋରିଙ୍ଗ୍ ଥିଓରିଷ୍ଟ । ତୁମର ସେ ସବୁ ତତ୍ତ୍ୱ ଶୁଣିବାରେ ମୋର ଆପତ୍ତି ନାହିଁ; କିନ୍ତୁ ସେମାନେ ଏତେ ଡେରି କରୁଛନ୍ତି କାହିଁକି କହି ପାରିବ ?" xxx xxx ପ୍ରଣବର ଆକ୍ଷେପ ପ୍ରତି ସମ୍ପୂର୍ଣ୍ଣ ନିରୁଦ୍‌ବିଗ୍ନ କଂଠରେ ଓଁକାରନାଥ କହିଲା, "ଆଜିର କ୍ରାଇସିସ୍‌ର ପ୍ରକୃତ ସ୍ୱରୂପଟା କ'ଣ ନ ବୁଝିଲେ ସଂଗ୍ରାମର କି ପ୍ରସ୍ତୁତି ବା କରିବ ତମେ ପ୍ରଣବ ? ଆକ୍‌ଟିଭିଜମ୍ ଭଲ, ମାତ୍ର ସେଥି ସହିତ ପରସ୍‌ପେକ୍‌ଟିଭ ଥିବା ମଧ୍ୟ ଦରକାର । ... ଏଇ କଲେଜ ଆଜିକୁ ଶଏ ବର୍ଷ ତଳେ ତିଆରି ହେଲା ବେଳେ ଏହା ବୁର୍ଜୋୟା-ଗୋଷ୍ଠୀର ସନ୍ତାନମାନଙ୍କ ପାଇଁ ଥିଲା ଉଦ୍ଦିଷ୍ଟ, ଔପନିବେଶକ ଶାସନର ଛୋଟ ବଡ଼ ବ୍ୟୁରୋକ୍ରାଟ୍ ଗଢ଼ିବା ପାଇଁ ।" ୧୯୭୩ (କମନରୁମ୍, ଓଃ ! କାଲକାଟା । ୨୧-୨୨)

(୨) ସୀତାକାନ୍ତ ମହାପାତ୍ରଙ୍କ କବିତାରୁ: "ବୀରବାବୁ, ବିରାଟ ଖଣିମାଲିକ ବିଜିନେସ୍ ଲଞ୍ଚ ପରେ କାଡିଲାକ୍ ଘଣ୍ଟାରେ ନବେମାଇଲ ଗତିରେ 'ବାରବିଚୁରେଟ୍', 'ବୋମାଇଡ୍', ଛାଇର ଗହଳ ସ୍ୱପ୍ନରେ ନିଷିଦ୍ଧ ସୁଖ, ରବିବାର ଗୀର୍ଜାର ସମନ ଅନେକ ହିଡ଼ ଓ ଟେଲା, ଖରା ଧାସ, ଗୋଡ଼ା ବିଲ ବଣ ।।

ଡିକ୍‌ଟେସନ ପରେ ଡିକ୍‌ଟେସନ
ଲିଲି ରଥ ଝାଳ ପୋଛେ କହୁଣୀରେ
ବୀରବାବୁ ବସି ଭାବେ ଦେହରେ ତୁଷାର ତାର
ପାଇନ୍ ଓ ସଂକୀର୍ଣ୍ଣ ପାହାଡ଼
ଝରଝର ଝରଣାର କଳତାନ, କଅଁଳିଆ ଘାସର ଚାଦର ।
ମିଟିଂ ଓ କନ୍‌ଫରେନ୍‌ସ, ଏରୋପ୍ଲେନ୍ ଜେଟ ଓ ବେତାର
ଆକାଶର ଛାୟାପଥ ନୀହାରିକା ଡେଇଁ ଡେଇଁ

ଭୂତ ଓ ପ୍ରେତର ଦଳ କେଣେ ଯାଏ ଖୋଜି ନିଜ ଘର ।।" ୧୯୬୩ (ତ୍ରିଶଙ୍କୁର ମଧ୍ୟସ୍ୱର୍ଗ, ଅଷ୍ଟପଦୀ, ୪୯-୫୦)

(ଘ) ଗୋବିନ୍ଦ ଦାସଙ୍କ ଉପନ୍ୟାସରୁ: "ହୋଇପାରେ, ବୋତଲ ନ ହେଲେ କାଚ ଗିଲାସଟା । ମୁଣ୍ଡପାଖରେ, ସାନ ଟେବୁଲ ଉପରୁ ହଠାତ୍ ତଳେ ପଡ଼ିଗଲା । ଟେବୁଲ ଲ୍ୟାମ୍ପର ନାଇଲନ୍ ଝାଡ଼ଣଟା ଥରି ଉଠିଲା । ଗୋଲ୍ଡ ଏମ୍ବ୍ରୟଡରୀକରା ଡ୍ରାପିଙ୍ଗ ଟିକିଏ ହଲିଗଲା । କାନ୍ଥର ଅଏଲ ପେଣ୍ଟିଂ, ଟେବୁଲ ଉପରୁ ବାଇବେଲ, କଣରେ ରେଡିଓଗ୍ରାମ ସମସ୍ତେ ଆଘାତ ପାଇଲେ ।" ୧୯୬୪ (ଅମାବାସ୍ୟାର ଚନ୍ଦ୍ର, ୧୩)

ଉପରୋକ୍ତ ଉଦାହରଣ ଗୁଡ଼ିକରେ ଥିବା ଅଧିକାଂଶ ଇଂରାଜୀ ଶବ୍ଦ ଓଡ଼ିଆ ଅଭିଧାନରେ ମିଳିବ ନାହିଁ, ଅବଶ୍ୟ ଓଡ଼ିଆ ଅଭିଧାନ ମଧ୍ୟ ଭାଷା ପରିବର୍ତ୍ତନ ସହ ପାଦ ମିଳାଇବାପାଇଁ ସକ୍ଷମ ହୋଇପାରି ନାହିଁ ।

ଅନ୍ୟ ଭାଷାରୁ ଶବ୍ଦ ଆହରଣ କରିବାର ଗୋଟିଏ ପ୍ରଧାନ କାରଣ ହେଉଛି, ଭାବପ୍ରକାଶପାଇଁ ଭାଷାରେ ଶବ୍ଦର ଅଭାବ । ଭାଷାଭାଷୀ ଲୋକଙ୍କ ସମାଜ, ସଂସ୍କୃତି, ଅର୍ଥନୀତି ଆଦି କ୍ଷେତ୍ରରେ ପରିବର୍ତ୍ତନ ଚାଲିରହିଥାଏ ଓ ଭାଷା ସେ ପରିବର୍ତ୍ତନ ସହ ପାଦ ମିଳାଇ ଚାଲିଥାଏ । ଯେତେବେଳେ ଏ ପରିବର୍ତ୍ତନ ଭିତରୁ ନ ହୋଇ ବାହାରୁ ଆସେ, ସେତେବେଳେ ପରିବର୍ତ୍ତିତ ତଥା ପରିବର୍ତ୍ତନଶୀଳ ସାମାଜିକ, ସାଂସ୍କୃତିକ, ରାଜନୀତିକ, ଆର୍ଥନୀତିକ ସ୍ଥିତି ସହ ତାଳ ମିଳାଇବାପାଇଁ ଭାଷା ବାହାରୁ ଆହରଣ କରେ । ବାହାରର ଭାବ ବ୍ୟକ୍ତ କରିବାପାଇଁ ବାହାରୁ ଭାଷାର ଅଭିବ୍ୟକ୍ତି ଆହରଣ କରିବା ଅପରିହାର୍ଯ୍ୟ ହୋଇପଡ଼େ । ଏହିପରି ଆହରଣ ଭିତର ଦେଇ ଭାଷା ତା'ର ଶକ୍ତି ବୃଦ୍ଧି କରିବାର ସୁଯୋଗ ପାଏ । ଏ କାରଣରୁ କଥିତ ଭାଷା ତ ଶବ୍ଦ ଆହରଣ କରେ, ସାହିତ୍ୟରେ ମଧ୍ୟ ଏଇ କଥିତ ଭାଷା ବାଟଦେଇ, ବିଶେଷ ଭାବରେ ଗଳ୍ପ/ଉପନ୍ୟାସ ନାଟକର ଚରିତ୍ରମାନଙ୍କ ଭାଷା ଓ ସଂଳାପ ଭିତରଦେଇ, ବହୁ ଶବ୍ଦ ପ୍ରବେଶ କରିଥାଏ । ଇଂରାଜୀରୁ ଆହୃତ ବହୁ ଶବ୍ଦ ଏହିପରି କଥିତ-ଓଡ଼ିଆ ବାଟ ଦେଇ ସାହିତ୍ୟିକ-ଓଡ଼ିଆ ଭିତରକୁ ପ୍ରବେଶ କରିଛି ।

କିନ୍ତୁ ଇଂରାଜୀରୁ ଆହୃତ ସବୁ ଶବ୍ଦ କଥିତ-ଓଡ଼ିଆ ବାଟ ଦେଇ ସାହିତ୍ୟିକ-ଓଡ଼ିଆରେ ପ୍ରବେଶ କରିନାହିଁ । ସାହିତ୍ୟିକ-ଓଡ଼ିଆ ମଧ୍ୟ ସିଧାସଳଖ ବହୁ ଇଂରାଜୀ ଶବ୍ଦର ଆହରଣ କରିଅଛି । ଭାବଚିନ୍ତା, ଦର୍ଶନ ଓ ବିଜ୍ଞାନ ସମ୍ପର୍କିତ ବହୁ ଶବ୍ଦ ତା' ମଧ୍ୟରେ ପ୍ରଧାନ । ପରେ ସେ ସବୁ ସାହିତ୍ୟିକ-ଓଡ଼ିଆ ବାଟ ଦେଇ କ୍ରମେ କଥିତ-ଓଡ଼ିଆରେ ପ୍ରବେଶ କରିବାରେ ଲାଗିଛି ।

କିନ୍ତୁ ବେଳେବେଳେ ଭାବପ୍ରକାଶପାଇଁ ଓଡ଼ିଆ ଭାଷାରେ, ଶବ୍ଦର ଅଭାବ ନ ଥିଲେ ସୁଦ୍ଧା ଇଂରାଜୀ ଭାଷାରୁ ଶବ୍ଦର ଆହରଣ କରାଯାଏ । କଥାକଥାକେ ଇଂରାଜୀ ଶବ୍ଦ ବ୍ୟବହାର କରି ଆମ ଭିତରୁ ଅନେକ ଇଂରାଜୀ ଭାଷା ଓ ଆଧୁନିକ ଜୀବନ-ଚର୍ଯ୍ୟା ସହ ଆମର ବିଶେଷ ପରିଚିତି ଅଛି ବୋଲି ଦେଖାଇ ଦେବାକୁ ଚାହାଁନ୍ତି; ଦେଖାଇ ଆତ୍ମପ୍ରସାଦ ଅନୁଭବ କରନ୍ତି । ଏହି ପ୍ରବୃତ୍ତି ଇଂରାଜୀ ଭାଷାରୁ ଶବ୍ଦ ଆହରଣର ପ୍ରଚୁର ସୁଯୋଗ ଦେଇଅଛି । ପୁଣି ଗଳ୍ପ/ଉପନ୍ୟାସ/ନାଟକ ଆଦିରେ ଏଇ ଲୋକଙ୍କ ଯଥାର୍ଥ ଚିତ୍ର ଆଙ୍କିବା ବେଳେ ଏମାନଙ୍କ ଭାଷା ଓ ସଂଳାପ ଭିତର ଦେଇ ସେହି ଆହୃତ ଇଂରାଜୀ ଶବ୍ଦସବୁ ସାହିତ୍ୟିକ ଓଡ଼ିଆରେ ପ୍ରବେଶ କରିଅଛି ।

ପୁଣି ବେଳେବେଳେ ସୁଭାଷଣ (euphemism) ପ୍ରସଙ୍ଗରେ କଥିତ-ଓଡ଼ିଆ ବହୁ ଇଂରାଜୀ ଶବ୍ଦ ଆହରଣ କରିଛି । ଭ୍ରୂଣହତ୍ୟା ନା ଗର୍ଭପାତପାଇଁ abortion, ସନ୍ତାନ ଜନ୍ମପାଇଁ delivery, ଗର୍ଭବେଦନା ବା ଗର୍ଭକଷ୍ଟପାଇଁ pain, ଶଳାପାଇଁ brother-in-law, ଆଦି ଏପରି ଶବ୍ଦର ଉଦାହରଣ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ଚରିତ୍ରମାନଙ୍କ ମୁହଁର ଭାଷା ଭିତର ଦେଇ ଏ ସବୁ ମଧ୍ୟ ସାହିତ୍ୟର ଅଙ୍ଗୀଭୂତ ହେବାରେ ଲାଗିଛି ।

ସାହିତ୍ୟରେ ଅନ୍ୟ ଭାଷାଭାଷୀ ଲୋକଙ୍କ ଜୀବନ ଓ ସଂସ୍କୃତିର ଚିତ୍ର ଆଙ୍କିବା ବେଳେ ମଧ୍ୟ ଅନ୍ୟ ଭାଷାରୁ ଶବ୍ଦ ଆହରଣ ଆବଶ୍ୟକତା ଉପଲବ୍ଧି କରାଯାଏ ।

ତେବେ ଏ ଶବ୍ଦସବୁ ଅଧିକାଂଶ କ୍ଷେତ୍ରରେ କଥିତ ଭାଷା ବାଟ ଦେଇ ସାହିତ୍ୟିକ ଭାଷାରେ ପ୍ରବେଶ ନ କରି ବରଂ ସେହି ସେହି ଭାଷାରୁ ସିଧାସଳଖ ସାହିତ୍ୟିକ ଭାଷାରେ ପ୍ରବେଶ କରିଥାଏ । ସ୍ୱାଧୀନତା ପରବର୍ତ୍ତୀ କାଳରେ ଲିଖିତ ବହୁ ଗଳ୍ପ/ଉପନ୍ୟାସ/ନାଟକରେ ଓଡ଼ିଶାର ଆଦିବାସୀ ଜୀବନ ଓ ସମାଜର ଚିତ୍ର ଅଙ୍କାଯାଇଛି । ସେହି ପ୍ରସଙ୍ଗରେ ଆଦିବାସୀମାନଙ୍କ ଭାଷାରୁ ବହୁ ଶବ୍ଦ ଆହରିତ ହୋଇ ସାହିତ୍ୟରେ ସ୍ଥାନ ପାଇଛି । ସାହିତ୍ୟିକ-ଭାଷାରୁ ସେହି ଶବ୍ଦଗୁଡ଼ିକ ମଧ୍ୟରୁ କେତୋଟି କଥିତ-ଭାଷାକୁ ମଧ୍ୟ ସଂକ୍ରମିତ ହୋଇଛି । ଧାଙ୍ଗଡ଼ା, ଧାଙ୍ଗଡ଼ୀ, ଗୋତି କଥିତ ଓଡ଼ିଆରେ ବହୁ ବ୍ୟବହୃତ ସେହି ଶବ୍ଦଗୁଡ଼ିକ ମଧ୍ୟରୁ କେତେଗୋଟି ।

ଏହା ପରେ ଅନୂଦିତ ଶବ୍ଦ । ବେଳେବେଳେ ଅନ୍ୟ ଭାଷାରୁ ଶବ୍ଦର ଆହରଣ କରା ନ ହୋଇ ସେ ସବୁ ଶବ୍ଦର ଅନୁବାଦ କରାଯାଏ । ବହୁ ଆହରିତ ଶବ୍ଦର ଏକତ୍ର ସମାବେଶରେ ଭାଷା ଶ୍ରୁତିକଟୁ ଓ ଦୁର୍ବୋଧ ହେଉଥିବାରୁ ଏପରି ଅନୁବାଦର ଆବଶ୍ୟକତା ପଡ଼େ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ଇଂରାଜୀ ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ଭାଷାରୁ ଅନୂଦିତ ବହୁ ଶବ୍ଦର ସାକ୍ଷାତ ମିଳେ । ତେବେ ଏ ସବୁ ଅନୂଦିତ ଶବ୍ଦ ସାହିତ୍ୟିକ-ଓଡ଼ିଆକୁ

ଆସିଛି କଥିତ-ଓଡ଼ିଆ ବାଟ ଦେଇ ନୁହେଁ- ଆସିଛି ସିଧା ସଳଖ । ସବୁଠାରୁ ମଜାର କଥା ହେଉଛି କେତେକ କ୍ଷେତ୍ରରେ କଥିତ-ଓଡ଼ିଆରେ ମୂଳ ଇଂରାଜୀ ଶବ୍ଦଟି ଆହୃତ ହୋଇ ବ୍ୟବହୃତ ହେଉଥିବାବେଳେ ସାହିତ୍ୟିକ-ଓଡ଼ିଆରେ ଶବ୍ଦଟିର ଅନୁବାଦ ପ୍ରଚଳିତ । ହଂସଗୀତି (Swan song), ନୀଳ ଜ୍ୟୋସ୍ନା (Blue moon), ଅଭୟାରଣ୍ୟ (reserve forest) ଆଦି ଏ ପ୍ରକାର ଶବ୍ଦର ଉଦାହରଣ । ମାନ (Standard), ଭତ୍ତା (allowances, stipend), କୁଳପତି (vice-chancellor) ମଧ୍ୟ ଏହି ଶ୍ରେଣୀର ଶବ୍ଦ ।

ତେବେ ଅଧିକାଂଶ କ୍ଷେତ୍ରରେ ଏହି ଶବ୍ଦସବୁ ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନା ପ୍ରସଙ୍ଗରେ ବ୍ୟବହୃତ ହୁଏ । ପୁଣି ଗୋଟିଏ ଗୋଟିଏ ଶବ୍ଦର ଏକାଧିକ ଅନୁବାଦ ମଧ୍ୟ କରାଯାଇଛି । ମନ୍ମୟ, ବ୍ୟକ୍ତିନିଷ୍ଠ, ତନ୍ମୟ, ବସ୍ତୁନିଷ୍ଠ, ସ୍ୱୈରବାଦ, ବିହଙ୍ଗାବଲୋକନ, ଶୂନ୍ୟସଞ୍ଚାରୀ ଦୃଷ୍ଟି, ବୈଣିକ-କବିତା, ସର୍ଜନଶୀଳ ସାହିତ୍ୟ, ସର୍ଜନାତ୍ମକ ସମୀକ୍ଷା, ଗୀତି-କବିତା ଆଦି ଏହି ଶ୍ରେଣୀର ଶବ୍ଦ ।

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ବହୁ ନୂତନ-ସୃଷ୍ଟ ଶବ୍ଦର ସମାବେଶ ମଧ୍ୟ ଘଟିଛି । ଭାଙ୍ଗଣ (ଗଢ଼ଣର ଅନୁକରଣରେ), ଦୁର୍ମିଳ, ଶବ୍ଦ-ମୈଥୁନ, ଓଷ୍ଠ-ମୈଥୁନ ଆଦି ଏ ପ୍ରକାରର ଶବ୍ଦର ଉଦାହରଣ । ପୁଣି ଏ ସବୁ ଶବ୍ଦ କଥିତ-ଭାଷାରୁ ଆସି ନାହିଁ । ସାହିତ୍ୟିକ-ଓଡ଼ିଆରୁ ଏ ସବୁ ଶବ୍ଦ କ୍ରମେ କଥିତ-ଓଡ଼ିଆକୁ ସଂକ୍ରମିତ ହେଉଛି । 'ସ୍ୱାଧୀନୋତ୍ତର', 'ଆଙ୍ଗିକ' ଓ 'ମୂଲ୍ୟାୟନ' ଆଦି ବ୍ୟାକରଣ ଦୃଷ୍ଟିରୁ ଅଶୁଦ୍ଧ ବୋଲି ବିବେଚିତ ହେଉଥିବା କେତେକ ନୂତନ ସୃଷ୍ଟ ଶବ୍ଦ ।

ଶେଷରେ କଥିତ-ଓଡ଼ିଆରୁ ସାହିତ୍ୟିକ-ଓଡ଼ିଆକୁ ପ୍ରବେଶର ଅଧିକାର ପାଇଥିବା କେତେକ ଶବ୍ଦ । ଏ ସବୁ ଶବ୍ଦ କଥିତ-ଓଡ଼ିଆରେ ପ୍ରଚଳିତ ଥିଲା । କିନ୍ତୁ ବିଭିନ୍ନ କାରଣରୁ ସାହିତ୍ୟିକ-ଓଡ଼ିଆ ଭାଷାକୁ ପ୍ରବେଶର ଅଧିକାର ପାଉ ନ ଥିଲା ବା ବିଶେଷ ବ୍ୟବହୃତ ହେଉ ନ ଥିଲା । ସ୍ୱାଧୀନତା ପରବର୍ତ୍ତୀ କାଳରେ, ସେସବୁ ସାହିତ୍ୟରେ ସ୍ଥାନ ପାଇଛି ।

ଏ ମଧ୍ୟରୁ କେତେକ ଶବ୍ଦ ଅଶୁଦ୍ଧ ବିବେଚିତ ହେଉଥିବାରୁ ସାହିତ୍ୟରେ ପଶି ମଧ୍ୟ ପଶି ପାରୁ ନ ଥିଲା । ଧୂମ୍ର, ନିକ୍ଷେଧ, ଏକତ୍ରିତ, ନିର୍ଦ୍ଦୋଷୀ ଆଦି ତାହାର ଉଦାହରଣ ।

ଆଉ କେତେକ ଶବ୍ଦ ଅଶ୍ଳୀଳ/ଗ୍ରାମ୍ୟ/ନିମ୍ନରୁଚିର ପରିଚାୟକ ବୋଲି ମଧ୍ୟ ସାହିତ୍ୟରେ ପ୍ରବେଶାଧିକାରରୁ ବଞ୍ଚିତ ହୋଇଥିଲା ବା କଦବା କ୍ୱଚିତ ବ୍ୟବହୃତ ହେଉଥିଲା । ସେ ସବୁର ବହୁଳ ବ୍ୟବହାର ଏବେ ଲକ୍ଷ୍ୟ କରାଯାଉଛି ।

ଆଉ କେତେକ ଶବ୍ଦ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ, ପେଶା, ଅନୁଷ୍ଠାନ ସହ ସମ୍ପର୍କାନ୍ୱିତ । ସ୍ୱାଧୀନତା ପରବର୍ତ୍ତୀ କାଳରେ ସାହିତ୍ୟିକ ଦିଗ୍‌ବଳୟ ବିସ୍ତାରିତ ହେବାରେ ଲାଗିଛି । ଫଳରେ ସାହିତ୍ୟରେ ସେହି ସେହି ଅଞ୍ଚଳ, ପେଶା ଓ ଅନୁଷ୍ଠାନ ସ୍ଥାନ ପାଇବା ସଙ୍ଗେ

ସଙ୍ଗେ ତତ୍ ସମ୍ପର୍କିତ ଶବ୍ଦ ସବୁ ମଧ୍ୟ ସାହିତ୍ୟରେ ସ୍ଥାନ ପାଇଛି । ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ' ଓ 'ନୀଳାଦ୍ରି ବିଜୟ'ରେ ପୁରୀ ସହରରେ ପ୍ରଚଳିତ ବିଶେଷ ଭାବରେ ଜଗନ୍ନାଥଙ୍କ ସମ୍ପର୍କିତ ବହୁ ନୂଆ ଶବ୍ଦ ସ୍ଥାନ ପାଇଛି । ପରେ ଏହି ସବୁ ଶବ୍ଦ ମଧ୍ୟ ଧୀରେ ଧୀରେ କଥିତ ଭାଷାକୁ ସଂକ୍ରମିତ ହେଉଛି ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ସାହିତ୍ୟିକ-ଭାଷାରେ ବହୁ ନୂତନ ଶବ୍ଦର ଆମଦାନୀ ଯେପରି ହୋଇଛି ସେହିପରି କେତେକ ପୁରାତନ ଶବ୍ଦ ମଧ୍ୟ କ୍ରମେ ଖୁବ୍ କମ୍ ବ୍ୟବହୃତ ହେଉଛି ବା ଆଦୌ ବ୍ୟବହୃତ ହେଉ ନାହିଁ ।

ପରିସ୍ଥିତିର, ବିଶେଷ ଭାବରେ ସାମାଜିକ ପରିସ୍ଥିତିର, ପରିବର୍ତ୍ତନ ଫଳରେ କେତେକ ଶବ୍ଦର ଅର୍ଥ ମଧ୍ୟ ପରିବର୍ତ୍ତିତ ହୋଇଛି । ଗୋଟିଏ ଉଦାହରଣ ହେଉଛି, 'ପ୍ରୌଢ' ଶବ୍ଦ । ସ୍ୱାଧୀନତା ପୂର୍ବରୁ ୧୯୩୧ରେ ପ୍ରଥମେ ପ୍ରକାଶିତ (ଦ୍ର:କାହ୍ନୁଚରଣ ଗ୍ରନ୍ଥାବଳୀ, ପ୍ରଥମ ଖଣ୍ଡ, ୧ମ ମୁଦ୍ରଣ ୧୯୬୬,ପୃ.୨୪୯) କାହ୍ନୁଚରଣଙ୍କ 'ବାଲିରାଜା' ଉପନ୍ୟାସରେ ତିରିଶ ବର୍ଷ ବୟସ୍କ ବ୍ୟକ୍ତି ଅର୍ଥରେ 'ପ୍ରୌଢ' ଶବ୍ଦଟି ବ୍ୟବହୃତ ହୋଇଛି ଯଥା: "ଉପସ୍ଥିତ ନୌକାରୁ ପ୍ରଥମେ କେତେଜଣ ନାବିକ ଓହ୍ଲାଇ ଆସିଲେ; ତତ୍ପରେ ବହୁମୂଲ୍ୟ ବସ୍ତ୍ର ପରିହିତ ଜଣେ ପ୍ରୌଢ ଧୀରେ ଧୀରେ ଅବତରଣ କରି ଆଗକୁ ଚାଲିଲେ । ... ... ପ୍ରକୃତରେ ପ୍ରୌଢ ଜଣେ ବିଖ୍ୟାତ ବଣିକ । ... ... ... ବଣିକଙ୍କର ବୟସ ତିରିଶ ବର୍ଷରୁ ଅଧିକ ନୁହେ ।"(ତତ୍ରୈବ, ପୃ.୨୬୭) । ସେଇ ସ୍ୱାଧୀନତା ପୂର୍ବେ ସଙ୍କଳିତ 'ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ' ଅନୁଯାୟୀ ପୁରୁଷର ୩୦ରୁ ୪୫ ବର୍ଷ ଓ ନାରୀର ୩୦ରୁ ୫୫ ବର୍ଷ ବୟସ ପର୍ଯ୍ୟନ୍ତ ସମୟ ହେଉଛି ପ୍ରୌଢାବସ୍ଥା । କିନ୍ତୁ ଏବେ ତିରିଶ ବର୍ଷ ବୟସ୍କ ବ୍ୟକ୍ତି ଆମ ସମାଜରେ ଯୁବକ ବୋଲି ହିଁ ପରିଗଣିତ ହୁଅନ୍ତି ଓ ସେମାନଙ୍କ ମଧ୍ୟରୁ କେତେକ ଅଦ୍ୟାପି ବିବାହ ବି କରିନାହାଁନ୍ତି ।

କଥିତ ଭାଷା ସହ ସାହିତ୍ୟିକ ଭାଷାର ବ୍ୟବଧାନ କେତେକ କ୍ଷେତ୍ରରେ କମିଯିବା ସଙ୍ଗେ ସଙ୍ଗେ ଆଉ କେତେକ କ୍ଷେତ୍ରରେ ବଢ଼ି ଚାଲିଛି । ତେବେ ମୋଟାମୋଟି ସାହିତ୍ୟିକ ଭାଷା ଓ କଥିତ-ଭାଷା ପରସ୍ପରର ନିକଟବର୍ତ୍ତୀ ହେଉଛନ୍ତି ବୋଲି ମନେ ହେଉଛି । ନୂତନ ପ୍ରଚଳିତ ଶବ୍ଦର ପ୍ରାଥମିକ ଅନୁଶୀଳନରୁ ଦେଖାଯାଉଛି ଉଭୟେ ଉଭୟଙ୍କୁ ପ୍ରଭାବିତ କରୁଛନ୍ତି । କଥିତ ଭାଷା ସାହିତ୍ୟିକ ଭାଷାରୁ ଶବ୍ଦ ସଂଗ୍ରହ କରି ଓ ସାହିତ୍ୟିକ ଭାଷା କଥିତ ଭାଷାରୁ ଶବ୍ଦ ସଂଗ୍ରହ କରି ଆପଣାକୁ ପୁଷ୍ଟ କରୁଛନ୍ତି ।

[୧୯୮୩ ଏପ୍ରିଲରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଆୟୋଜିତ ବିଷୁବମିଳନ ଅବକାଶରେ ଏକ ପାଠଚକ୍ରରେ ପଠିତ । ପ୍ରଥମ ପ୍ରକାଶ ୧୯୮୩; ଝଙ୍କାର, ୩୫/୯]



# ପରିଶିଷ୍ଟ-୧

## 'Baharistan-i-Ghayabi' as a source of Odishan History

The 17th century Persian work '*Baharistan-i-Ghayabi*', the only extant manuscript of which is in the possession of Bibliotheque National of Paris, was first brought to the notice of the scholars by Sir Jadunath Sarkar.(1) It professes to be the history of Bengal and Odisha under Islam Khan, Qasim Khan and Ibrahim Khan Fath Jang, the three Mughal subahdars during the reign of Jahangir and during the usurption on the government byPrince Sahajahan. It furnishes the details of the complete subjugations of the Zamindars of Bengal and Odisha whom Akbar's subahdars had let off with only a nominal submission to the imperial power.(2) Its author Alaud-Din Isfashani alias Mirja Nathan was a contemporary Mughal General who took a leading part in all the campaigns in Bengal and Assam during Jahangir's reign and also during the rebellion of Sahajahan during his temporary occupation of Bengal. The title Shitab Khan was conferred upon him by the emperor in recognition of his splendid services in N. E. India for the expansion of Mughal empire.(3) Since *Baharistan*'s discovery its authenticity as a source of Odishan history has never been questioned.

'*Baharistan-i-Ghayabi*' and the *Masnavi* composed by Mawlana Shaykh Mubark which was incorporated into *Baharistan* record in some detail the siege of the Jagannath Temple at Puri by Raja Keshodas Maru, a Rajpur chieftain in

Mughal service. Sir Jadunath Sarkar first translated a portion of the manuscript in the year 1921 and the narrative regarding the siege was included in it.[4] Subsequently the work has been published, translated completely by Dr. M. I. Borah in the year 1936.

Since its discovery and the publication of Sir Jadunath's paper on Keshodas Maru's siege of Jagannath Temple at Puri scholars such as Krupasindhu Mishra, R.D. Banerjee and H. K. Mahatab have mentioned the incident in their respective works.[5] These scholars following Sir Jadunath have strictly adhered to the *Baharistan* narrative in giving an account of the incident. It is interesting to note that none of these scholars have ever attempted to scrutinize the account given in *Baharistan* (and also in the *Masnavi*) either on the basis of the Jagannath Temple Chronicle, the *Madala Panji* or otherwise.

The following is an extract from *Baharistan* translated by Dr. Borah:

"I shall write a short account of Hashim Khan and other officers of Orissa. At the appearance of rainy season Hashim Khan, the governor of the province, and all the officers of the state thought that at the rise of the Canopus, when Islam Khan and officers of Bengal would lead their campaign against Masnad-i-Ala Musa Khan and famous twelve Bhuyan chief of Bengal they would also march against Raja Purushottam Dev and other zamindars of Orissa, and either force them to offer voluntary submission or take them prisoner and send them to imperial court. But ocurred to the mind of Keshodas Maru that it would be cowardice on his part to wait for the help of others and therefore he should carry on the expedition himself. From his personal fief, Cuttack, he started for the temple of Jagannath with the pretext of performing worship at the temple. After a performance of worship, he converted that temple to a strongly fortified place for himself. Then occupied the temple which contained properties worth more than two to three crores of

Rupees and scourged the Brahmins to produce the rest. This news reached Raja Purushottam Dev. He thought that before the end of the rainy season and arrival of the imperial officers, he would chastise Raja Keshodas Maru and produce such effect that no one else ever dare commit such an act of sacrilege. He planned to march from Khurdah with a force of ten thousand cavalry, three to four thousand infantry and a large number of raths (chariots) to besiege the temple and thus put the Raja into a very sad plight. Accordingly, he made five hundred to one thousand men ride on each rath which was pulled by two to three thousand men, and thus, carrying the raths in tens twenties, he pushed them on to the outer wall of the temple and put the inmates into a very serious plight. Raja Keshodas Maru took out long poles from under the roofs of the houses, and wrapping with canopies, canvas, and clothes of the Farrash Khana (store room) soaked them with mustered oil and ghee, set fire to them and threw them in the midst of the raths which were close to the temple. All on a sudden people, who were at the top of the raths were burned in hundreds, and many others in groups of two hundred to three hundered, were killed by being trodden under each other's feet. The Uriyas, unable to fight any longer, took to flight and left the raths in that burning conditions. It reminded to the people of the Days of Resurrection and made the market of the angel of death very brisk. The Uriyas began to admire the valiant fight offered by Raja Keshodas Maru and his Rajputs. Mawlana Shaykh Mubark composed a *Masnavi* at the time describing the battle of the aforesaid Raja."(6)

Dr. Borah has not undertaken the pains to translate the *Masnavi* of Mawlana Shaykh Mubark. But he remarks that it contains very little new information except that "the negotiation for peace were carried on at the advice of Bajadhar (Brajadhar?) the minister of Purushottam Dev."(7) Sir Jadunath has also left the *Masnavi* untranslated. But he mentions that

Mawlana Sheikh Mubark ascribes "more than 500 raths" to the Raja of Khurda ("an incredible number" comments Sir Jadunath) and according to him, "Each rath was made of wood, looked like a tall house, had 1000 legs (wheels) and was pushed forward by 1000 men."[8] Further, he adds that, "Keshodas and his rajputs defended heroically. But many of his followers were slain in the struggle and only 400 soldiers were left with him in the temple enclosure." Besides, he reads the name of Purusottam Dev's minister, mentioned in the *Masnavi*, as "Bijadhar" or "Bidyadhar" or "Gajadhar", at whose advice the peace negotiation was carried out.[9]

The Odia source *Madala Panji*, the Jagannath Temple Chronicle also records the incident.[10] But at places the language of the Panji is so obscure and unintelligible that it is very difficult to find out what the chronicle intended to record. It is also very brief.

*Madala Panji* corroborates the *Baharistan* narrative on the following points:

a) That 'Keshu Maru' came on the pretext of pilgrimage.
b) That he occupied two temples.
c) That it was rainy season then (as he came to see the *Gundicha Yatra* or car festival which falls in rainy season.)
d) That the Raja of Khurda had a minister named Dasa Vidyadhara.

The new informations that the *Panji* furnishes are:

a) 'Keshu Maru' came on the pretext seeing the car festival.
b) He had an engagement near the Gundicha Ghara (temple) where he killed many people.

But the *Panji* contradicts the account given in the Persian work when it states that the three chariots of the three

deities made on the occasion of car festival (and not the war chariots) were made to burn by Keshodas. However, from the accounts given by the authors of *Baharistan* and also of the *Masnavi* it is quite clear that they meant only the 'war chariots' which were specifically brought by king Purushottam Dev from Khurda.

In this regard the *Panji* seems to be more authentic in comparison with the Persian works for the following reasons:

1) All the scholars on the Indian war-fare are unanimous in the opinion that the use of war-chariots was obsolete by that time.

Mr. Bimal Kanti Majumdar says, "The non-employment of war chariots in the various campaigns of Harsa mentioned by Banabhatta would suggest that the chariots as one of the offensive arms of Ancient India was coming to ........... play only as insignificant role in the 7th century A.D. and was about to be eliminated soon altogether. But it would be in correct to aver that its use stopped with the close of 7th century."(11)

Though he admits that the war-chariots were found in the composition of armies of the Pala kings of Bengal still he believes that its use became less and less in the post-Mauryan period, a fact based on carefully collected evidence both literary and epigraphic.(12) The cause of its disappearance from military arena seems to be its own unsuitability for employment in every field and the growing usefulness of the cavalry and mobile horsemen realised from experience.(13)

Mr. V. R. R. Dikhitar observes, "... gradually the use of chariots in the war declined, as we have no mention of it in Bana's Harsacarita (in the 7th century) in his description of Harsa's army. Nor was it seen in the army of Pulakesin II (641 A.D.), if we may rely on the authenticity of Yuan Chwang. Again in the Kuram Pallava grant about 650 A.D. ... only elephants, horses and footmen were mentioned and not chariots.

Further in the history of Chola Kings of South India, during the succeeding centuries mention is only made of the other three divisions of army. The chariots as instruments of war, are not mentioned- a clear indication that they must have become obsolete by that time.[14]

Dr. P.C. Chakravarti says, "The final disappearance of chariots from India's Military system probably came about in the eighth century A.D.[15]

If the opinions of these scholars are taken into consideration the statement of *Madala Panji* only stands sound and that of *Baharistan* and *Masnavi* falls.

2) the description and size of chariots given by both *Baharistan* and the *Masnavi* clearly shows that those were not war-chariots. Rather the description surprisingly fits into the three chariots of the three deities constructed on the occasion of car festival. So the statement of *Madala Panji* seems to be authentic and that of *Baharistan* and the *Masnavi* erroneous.

3) Again it would have been very difficult, rather impossible, on the part of Purushottam Dev to bring such huge chariots from Khurda especially in rainy season which clearly indicates that the fact put forward by *Baharistan* and the *Masnavi* is not true but fictitious.

4) It can again be added that a warrior like Keshodas must have chosen the car festival as the most opportune time for his purpose, and so it must be assumed that he might have made to burn the chariots (cars) specially constructed for car festival.

5) Lastly the contradiction between *Baharistan* and the *Masnavi* regarding the number of chariots (the former says ten to twenty chariots whereas the latter says more than five-hundred chariots) makes ample room for doubt. It is sure that the author of *Baharistan* was not present on the spot at the time as it was not mentioned in it which is a semi-autobiographical work.

But the number of chariots given by the author of the

*Masnavi* had been rejected by the author of *Baharistan* who has given a completely different number. In all probabilities to him (author of *Baharistan*) it (number of chariots given in the *Masnavi*) seemed to be of poetical exaggeration. It leads to the conviction that neither *Baharistan* nor the *Masnavi* is highly authentic though the author of the *Masnavi* might have been present on the spot at the time.

It is probable that Purushottam Dev might have used the three chariots (cars) of the three deities when Keshodas converted the temple to a fort for himself, either to cross the temple wall or to fight the Rajput soldiers of Keshodas inside by sending piercing arrows to them. So Keshodas must have wished to get rid off these chariots and made them to burn.

That chariots (cars) meant for the car festival and not war-chariots brought by Purushottam Dev were burned by Keshodas is confirmed by the fact that later the deities were carried to the temple by chowdalas as stated by *Madala Panji.*

The *Madala Panji* has nothing more to say in this regard except that the confusion continued for a period of 8 months and Keshodas made peace with the king and they became friends.

But *Baharistan* records much more and states that the king (Purushottam) was forced to make peace with Keshodas. The other fresh informations which the Persian work furnishes are:

a) The peace terms agreed upon by Purusottam Dev which includes:
   i) sending his daughter to imperial harem.
   ii) paying 3 lakhs of rupees as tribute.
   iii) giving his sister in marriage with Keshodas,
   iv) paying him (Keshodas) and his men one lakh of rupees as present.

b) Keshodas' marriage with the sister of Prushottam Dev at Khurda.

c) His escape with six of the elephants of Prushottam Dev from Khurda and his heroic fight on the way.

d) His letter to Purushottam Dev demanding the fulfilment of the conditions which were honoured.

e) His promotion to the rank of 4000 horses on Islam Khan's recommendation.

Regarding his promotion the Persian work records, "The Emperor accepted all the recommendations of Islam Khan and promoted the Raja (Keshodas) to the rank of 4000 horses and honoured him by conferring upon him a standard, robe of honour, a bejewelled sword and a sword belt, a horse, and a bejewelled saddle and a rein, in order to draw the attention of others (to such deeds of valour)."[16]

From *Tuzuki-i-Jahangiri* or the Memoir of Jahangir we come to know that in the 2nd year of Jahangir's reign Hashim Khan was appointed as governor of Odisha[17] and in the 6th year of his reign he was transferred to Kashmir.[18] Naturally we come to conclusion that during this period (i.e. from 1607 to 1611 A.D.) the incident occurred consequently Keshodas was honoured and promoted. Dr. Borah has fixed the date as 1609 A.D.[19]

However, *the same Tuzuki-i-Jahangiri* also records that in the 12th year of Jahangir's reign 200 horses were added to the *mansab* of Keshodas Maru so that it came, original and increased to 2000 personal and 1200 horse.[20]

Therefore it is, at least, clear that before 1617-8 A.D.(i.e. 12th year of Jahangir's reign) Keshodas was not promoted to the rank of 4000 horse as mentioned by *Baharistan*. Of course, the '*Tuzuk*' records that in the 5th year of Jahangir's reign (i.e. 1610-11 A.D.) a special horse was sent to Bengal for Keshodas Maru but nothing more.[21]

So it seems that there is little truth in the description of *Baharistan* regarding the honour and reward given to Keshodas

for his valour.

At present we don't have any other authority at our disposal to challenge the historical authenticity of the terms of peace etc. as mentioned in *Baharistan*. However, in view of the exaggerated and erroneous description regarding the burning of the war-chariots by Keshodas Maru and the promotion of Keshodas Maru to the rank of 4000 horse for his valour, we may conclude that the terms of peace etc. are also much exaggerated and may be rejected provisionally unless corroborated by any other source of information.

**References:**


1. Journal Bihar & Orissa Research Society (J.B. & O.R.S) Vol. VII, pp. 1-8.
2. Ibid.
3. *Baharistan-i-Ghayabi* translated by Dr. M.I. Borah (1936, Gauhati, Govt. of Assam) Introduction, pp. XVIII-XIX.
4. J.B. & O.R.S. Vol. VII, pp. 53-6.
5. a) *Utkal Itihasa* (Odia) by Krupasindhu Mishra (1926, Cuttack, Cuttack Trading Company), pp. 241-2;
   b) History of Orissa by R.D. Banerjee, Vol. II (1931, Calcutta, R. Chatterjee), pp. 33-4;
   c) *Odisha Itihasa* (Odia) by Dr. H. K. Mahatab 1st edition (1948, Cuttack) p. 107, 2nd edition (1964) Vol. II, p.316.
6. *Baharistan-i-Ghayabi*, Vol. I translated by Dr. M.I.Borah, pp. 35-7.
7. Ibid.
8. J.B. & O.R.S. Vol. VII, p.54 foot note.
9. Ibid, p.55.
10. *Madala Panji*, (*Prachi* edition, 1940) p.65.

11. Military System of Ancient India by Bimal Kanti Majumdar, (1955, Calcutta, The World Press Ltd.) pp. 127-8.
12. Ibid, pp. 128-9, 173-4.
13. Ibid, p. 134.
14. War in Ancient India by V.R.R. Dikhitar, (1944, Macmillan & Co. Ltd.) pp. 165-6.
15. The Art of War in Ancient India by Dr. P. C. Chakravarti, (1941, University of Decca) p.26.
16. *Baharistan-i-Ghayabi*, Vol. I, p.38.
17. *Tuzuk-i-Jahangir* or Memoir of Jahangiri, translated by A. Rogers and edited by H. Beveridge, Vol. I (1909), p.127.
18. Ibid, p. 199.
19. *Baharistan-i-Ghayabi*, Vol. II, p.806.
20. *Tuzuk-i-Jahangiri*, Vol.I, p.390.
21. Ibid.


[First published July 1979 in Berhampur University Research Journal, Vol. IV.]



# ପରିଶିଷ୍ଟ-୨
# Madala Panji: Raj Bhog

**Introduction:**

Raj Bhog is a name given to a section of Madala Panji. The records of Jagannath Temple in Puri are known as Madala Panji. In Oriya Panji means records or almanac. Nobody really knows what is meant by the word "Madala" although several explanations have been given by various scholars.

According to the late M. M. Chakravarti the word "Madala" has been derived from the word "Mudala" which means sealed with "Mudi" or "Ring". He has compared it with the words "Mudalena", "Mudale" found in inscriptions and "Mudrasta" (mudra and hasta) the seal-handed, an officer in the Jagannath Temple in support of his theory. According to him, the Madala Panji will mean "a chronicle of (royal) orders."[1]

According to R. P. Chanda the word "Madala" means drum and the palm leaf records of the Jagannath Temple are so called because they are tied together in the form of big round bundles resembling the Indian drum.[2]

In 1964, I stated that most probably the word "Madala" has been derived either from the Telugu word "Modaluga" meaning from the beginning, or "Modali" meaning the first. Then, the phrase "Madala Panji" would mean either the record in which information are given from the very beginning or a record

that has been maintained from the very beginning.[3] I am not so sure at the moment, taking into account the use of

the word "Madala" in Chakara Pothi[4], most probably meaning "King" or "Chief".

It is significant that nowhere in the original records the phrase "Madala Panji" is written. It is simply known like that. As it has been mentioned already only a section of the Madala Panji is known as Raj Bhog. The literal translation of Raj Bhog is "the period of a king's reign", or annals of kings as suggested by R.P. Chanda. Alternatively it is also known as "Rajamananka rajya bhoga"[5] or Kali yuga rajamananka bhoga kala"[6] or "Rajacaritra"[7]. It appears that several versions of Raj Bhog either exist or once existed.

In 1825, A. Stirling brought Raj Bhog to the notice of the scholars while reconstructing the history of Orissa. Afterwards several scholars have made good use of it. So far the study of Raj Bhog has taken the following directions:

1) What is the meaning of the name Madala Panji?

2) When was the writing of Raj Bhog commenced?

3) The historical authenticity of Raj Bhog.

4) The reconstruction of the history of Orissa, especially the political history of Orissa on the basis of Raj Bhog.

5) Editing and publishing some of the versions of Raj Bhog.

**Objective:**

As a member of the Orissa Research Project my first and foremost objective was to make a thorough study of the Raj Bhog

